# ଶ୍ରୀ ଧୂର୍ଜଟୀ ଫକୀରମୋହନ

## (ଫକୀରମୋହନଙ୍କ ସାରସ୍ୱତ ସଂପର୍କ)

ଡକ୍ଟର୍ ଅରବିନ୍ଦ ଗିରି




ଫକୀରମୋହନ ବିଶ୍ୱବିଦ୍ୟାଳୟ, ବାଲେଶ୍ୱର

"ଫକୀରମୋହନଙ୍କ ଜୀବନୀ-ଲେଖ୍ୟକୁ ଆଧାର କରି ତାଙ୍କର ବହୁମୁଖୀ ବ୍ୟକ୍ତିତ୍ୱର ଅନାଲୋକିତ ଦିଗ୍‌ବଳୟକୁ ଜାଣିବା ପାଇଁ ଏହା ଏକ ପ୍ରଚେଷ୍ଟା । ତାଙ୍କ ସୃଷ୍ଟିକୁ ନେଇ ବହୁ ଆଲୋଚନା ଗ୍ରନ୍ଥ, ଗବେଷଣା ନିବନ୍ଧ ରଚିତ ହୋଇଛି । ମାତ୍ର ତାଙ୍କ ଜୀବନ ସ୍ରୋତସ୍ୱିନୀର ପ୍ରବାହିତ ଧାରାରେ ଭେଟ ହୋଇଥିବା ମଣିଷମାନଙ୍କ ସହିତ ତାଙ୍କର ଗଢ଼ି ଉଠିଥିବା ସମ୍ପର୍କର କଥା ଏକତ୍ର କୌଣସି ପୁସ୍ତକରେ କୁହାଯାଇ ନାହିଁ, ଯେଉଁ ପ୍ରୟାସ ସେ ନିଜେହିଁ ସ୍ୱରଚିତ 'ଉତ୍କଳ ଭ୍ରମଣଂ' ପୁସ୍ତକରେ କରିଛନ୍ତି । ଉତ୍କଳର ବରପୁତ୍ର, କୃତୀ ସନ୍ତାନ, ଉତ୍କଳହିତୈଷୀ ରାଜା ମହାରାଜାମାନଙ୍କ ଯଶ ଗାନକରି ସେମାନଙ୍କୁ ଶତମୁଖରେ ସେ ପ୍ରଶଂସା କରିଛନ୍ତି । ଏହି ପୁସ୍ତକଟି ଫକୀରମୋହନଙ୍କ ସହ ତାଙ୍କ ସମୟର କେତେକ ମହାନ ଚରିତ୍ରଙ୍କ ଅନ୍ତରଙ୍ଗ ସମ୍ପର୍କର ଏକ ସେତୁବନ୍ଧ ମାତ୍ର ।"

ଲେଖକ

# ଶ୍ରୀ ଧୂର୍ଜଟୀ ଫକୀରମୋହନ

(ଫକୀରମୋହନଙ୍କ ସାରସ୍ୱତ ସମ୍ପର୍କ)

ଡ. ଅରବିନ୍ଦ ଗିରି



ଫକୀରମୋହନ ବିଶ୍ୱବିଦ୍ୟାଳୟ
ବାଲେଶ୍ୱର

# ଶ୍ରୀ ଧୂର୍ଜଟୀ ଫକୀରମୋହନ

(ଫକୀରମୋହନଙ୍କ ସାରସ୍ୱତ ସମ୍ପର୍କ)

ଡ. ଅରବିନ୍ଦ ଗିରି

*ପ୍ରକାଶକ :*
ଫକୀରମୋହନ ବିଶ୍ୱବିଦ୍ୟାଳୟ
ବ୍ୟାସବିହାର, ବାଲେଶ୍ୱର

*ପ୍ରଚ୍ଛଦ :* ବିଜୟ କୁମାର ପ୍ରଧାନ
*ମୁଦ୍ରଣ :* ସୁବର୍ଣ୍ଣଶ୍ରୀ ପ୍ରକାଶିନୀ
ମୋତିଗଞ୍ଜ, ବାଲେଶ୍ୱର

ପ୍ରଥମ ସଂସ୍କରଣ : ୨୦୦୮
ମୂଲ୍ୟ : ଟ.୧୦୦/- (ଏକଶତ ଟଙ୍କା ମାତ୍ର)

---

# SHREEDHURJATEE FAKIRMOHAN

(Essays on Fakirmohan Senapati)

**by :**
**DR. ARABINDA GIRI**

**Publisher :**
**Fakirmohan University**
**Vyasavihar, Balasore**

**Cover Design :** Bijay Kumar Pradhan
**Printed by: Subarnashree Prakashini**
Motiganj, Balasore

**First Edition** : 2008
**Price : Rs. 100 /-** (Rupees One Hundred Only)



# ଉତ୍ସର୍ଗ

ତୁମ ଜାଲବୁଣା ଛଡ଼ିର ଦାଗ ଏବେବି ଦେହରେ ଅଛି । ତୁମ ଶାସନ କରିବା ଚାହାଣିର ଅର୍ଥ ଆଜି ବେଶ୍ ବୁଝିପାରୁଛି । ବହୁ ଅଭାବ ଅସୁବିଧା ଭିତରେ ମଣିଷ କରିବାର ଅଦମ୍ୟ ବାସନା, ଏବେ ଅନୁଭବ କରୁଛି । ଦୁଇଦିନ ପୂର୍ବରୁ ତୁମ ଔଷଧପତ୍ର ନେଇ ଦେଇ ଆସିଥିଲି । ଘରୁ ଆସିଲା ବେଳେ ତୁମେ କାନ୍ଦିଥିଲ । ବେଶ୍ ସୁସ୍ଥ ଥିଲ । ହଠାତ୍ ଚାଲିଯିବ ବୋଲି ବିଶ୍ୱାସ ନଥିଲା । ବହୁ ଆଶା କରିଥିଲି 'ଶ୍ରୀଧୂର୍ଜଟୀ ଫକୀରମୋହନ' ପୁସ୍ତକଟି ତୁମ ଜୀବିତାବସ୍ଥାରେ ତୁମରି ହାତରେ ଅର୍ପଣକରି ନିଜକୁ ଭାଗ୍ୟବାନ୍ ମଣିଥାନ୍ତି । ତା'ବି ଭାଗ୍ୟରେ ଜୁଟିଲା ନାହିଁ । ତୁମ ଅବର୍ତ୍ତମାନରେ ତୁମ ସ୍ମୃତି ଉଦ୍ଦେଶ୍ୟରେ ପୁସ୍ତକଟିକୁ ଉତ୍ସର୍ଗ କଲି । ତୁମ ଆଦର୍ଶ, ତୁମ ପ୍ରେରଣା, ତୁମ ଭାବନା ଓ ତୁମ ହୃଦୟର ଭାଷାକୁ ସାର୍ଥକ କରିବା କ୍ଷେତ୍ରରେ ବରାବର ଆଶିଷ ଦେଉଥିବ, ଏତିକି ମାଗୁଣି ।

ତୁମର ସ୍ନେହର
ଅରବିନ୍ଦ

# ଆଦ୍ୟ କଥନ

ଓଡ଼ିଆ ଭାଷା ସାହିତ୍ୟର ରକ୍ଷକ, କଥାସମ୍ରାଟ ବ୍ୟାସକବି ଫକୀରମୋହନ ସେନାପତି ଯେତେଯେତେ ପୁରୁଣା ହେଉଥିବେ, ତାଙ୍କର ସାରସ୍ୱତ ସୃଷ୍ଟି ତଥା ତାଙ୍କର ଘଟଣାବହୁଳ କର୍ମମୟ ଜୀବନ ପ୍ରତି ଏ ଜାତିର ଉତ୍ତର ଦାୟାଦଙ୍କ ସେତେ ସେତେ ଆଗ୍ରହ ବଢୁଥିବ । ଏ ଜାତି ପାଇଁ ତାଙ୍କର ଆବିର୍ଭାବ ଥିଲା ଏକ ଶୁଭାଶୀର୍ବାଦ । ଓଡ଼ିଆ ଭାଷା-ସାହିତ୍ୟର ଉନ୍ନତି, ଓଡ଼ିଆ ସାମାଜିକ ଜୀବନର ବିକାଶ ତଥା ଓଡ଼ିଆର ନିଜସ୍ୱ ପରିଚୟ ସୃଷ୍ଟି ପାଇଁ ଆଜୀବନ ସେ ସଂଗ୍ରାମ କରିଥିଲେ । ଘାତ-ସଂଘାତମୟ ସମଗ୍ର ଜୀବନକାଳ ମଧ୍ୟରେ ସେ ଓଡ଼ିଆ ଭାଷା, ଓଡ଼ିଆ ଜାତୀୟ ଜୀବନର ବିକାଶ ପାଇଁ ଜୀବନକୁ ଉତ୍ସର୍ଗ କରିଥିଲେ । କୌଣସି ଶିକ୍ଷିତ ଓଡ଼ିଆ ଯୁବକକୁ ଦେଖିଲା ମାତ୍ରେ ତାଙ୍କ ପ୍ରାଣରେ ଦେଶମାତୃକାର ଉନ୍ନତି ପାଇଁ ଅସଂଖ୍ୟ ଆଶା ସଂଚାର ହେଉଥିଲା । ସେ ଥିଲେ ଆଜୀବନ ଆଶାବାଦୀ । ସାମାଜିକ ଜୀବନରେ ବିଭିନ୍ନ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ ମଧ୍ୟ କେତେବେଳେ କୌଣସି ପରିସ୍ଥିତିରେ ସେ ନିରାଶାବାଦୀ ହୋଇ ନଥିଲେ, ବରଂ ପ୍ରତିଟି ଆଶା-ନିରାଶା, ମଧ୍ୟରେ ନିଜର କର୍ମନିଷ୍ଠା ଦ୍ୱାରା ସଫଳତା ଲାଭକରି ଦେଶବାସୀଙ୍କ ପ୍ରାଣରେ ଗଭୀର ଆଶା ଓ ଆତ୍ମବିଶ୍ୱାସ ସୃଷ୍ଟି କରିଥିଲେ ।

ସେ ଥିଲେ ଏକାଧାରରେ କୃତୀ ଶିକ୍ଷକ, ପାଠ୍ୟପୁସ୍ତକ ରଚୟିତା, ପତ୍ରିକା ସଂପାଦକ, ପ୍ରଶାସକ ତଥା ସାହିତ୍ୟ ସ୍ରଷ୍ଟା । ଏକ ବିଚକ୍ଷଣ ଧୀସମ୍ପନ୍ନ ବ୍ୟକ୍ତିତ୍ୱହିଁ ତାଙ୍କର ବହୁମୁଖୀ ଜୀବନର ପ୍ରତିନିଧି । ଏ ଜାତିପାଇଁ ସେ ଥିଲେ ଅନେକ କ୍ଷେତ୍ରରେ ପ୍ରଥମ ଆଦର୍ଶ । ପ୍ରଥମ ଶିକ୍ଷକ, ପ୍ରଥମ ପାଠ୍ୟ ପୁସ୍ତକ ରଚୟିତା ("ଜୀବନ ଚରିତ" ଅନୁବାଦ - ୧୮୬୬), ପ୍ରଥମ ବୟାକରଣ, ପ୍ରଥମ ଇତିହାସ ପ୍ରଣେତା, ପ୍ରଥମ ସାମ୍ବାଦିକ, ପ୍ରଥମ ପ୍ରଶାସକ (ଦେୱାନ), ପ୍ରଥମ କଥାକାର, ପ୍ରଥମ ରମ୍ୟ ରଚନାକାର, ପ୍ରଥମ ଆତ୍ମଚରିତ ଲେଖକ ଏବଂ ନିଜର ପ୍ରତିମୂର୍ତ୍ତି ନିଜେ ଗଢ଼ି ବାର ପ୍ରଥମ ପ୍ରବର୍ତ୍ତକ ।

ପାଠ୍ୟପୁସ୍ତକ ଅନୁବାଦ, ମୌଳିକ ପାଠ୍ୟପୁସ୍ତକ ରଚନା, ରାମାୟଣ, ମହାଭାରତ, ହରିବଂଶ, ଉପନିଷଦ, ଶ୍ରୀମଦ୍ ଭଗବତ୍ ଗୀତାର ଅନୁବାଦ, କାବ୍ୟ, କବିତା, ଗଳ୍ପ,

ଉପନ୍ୟାସ, ପ୍ରବନ୍ଧ ଓ ଜୀବନଚରିତ ଆଦି ରଚନା କରି ଉତ୍କଳ ଭାଷା ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ମୌଳିକ ଚିନ୍ତା, ମୌଳିକ ସୃଷ୍ଟି, ଉତ୍କଳ ଜନଜୀବନର ବାସ୍ତବ ଚିତ୍ର, ଚରିତ୍ର ଓ ଭାଷାକୁ ସାଉଁଟି ଉତ୍କଳୀୟ ମର୍ଯ୍ୟାଦାରେ ଏପରି ପରିବେଷଣ କରିଛନ୍ତି, ଯେଉଁଥିପାଇଁ ଏ ଜାତି ପାଖରେ ସେ ସବୁଦିନ ନମସ୍ୟ ଓ ପୂଜ୍ୟ । ସେ ଥିଲେ ସର୍ବଧର୍ମ ସମନ୍ୱୟ ଭାବନାର ମୂର୍ତ୍ତିମନ୍ତ ପ୍ରତୀକ । ଏ ଜାତିର ଉତ୍ତରଦାୟାଦ ତାଙ୍କ ସାହିତ୍ୟ ପ୍ରତି ଯେତିକି ଆଗ୍ରହ ପ୍ରକାଶ କରିଛନ୍ତି, ବିଶ୍ୱ ସାହିତ୍ୟ କ୍ଷେତ୍ରରେ ତାଙ୍କର ସାହିତ୍ୟ ଓ ବ୍ୟକ୍ତିତ୍ୱର ଖ୍ୟାତି ସେତିକି ବଢ଼ିବଢ଼ି ଚାଲିଛି ।

ଉକ୍ତ ପୁସ୍ତକଟିରେ ସନ୍ନିବିଷ୍ଟ ପ୍ରବନ୍ଧଗୁଡ଼ିକ ବିଭିନ୍ନ ସମୟରେ ସମକାଳୀନ ଡଗର, ଆସନ୍ତାକାଲି, ସପ୍ତର୍ଷି, ବାର୍ତ୍ତାଉର୍ମି, ଅମୃତାୟନ, ଗୋକର୍ଣ୍ଣିକା ତଥା ସଂକଳନା ବିଭିନ୍ନରେ ପ୍ରକାଶିତ । ଫକୀରମୋହନଙ୍କ ଘଟଣାବହୁଳ ଜୀବନଧାରା ସହିତ ସମ୍ପର୍କରେ ଆସିଥିବା ବ୍ୟକ୍ତି, ସାରସ୍ୱତ ସ୍ରଷ୍ଟା ତାଙ୍କ ସାଧନାପୀଠ ଶାନ୍ତିକାନନ ତଥା ତାଙ୍କର ଅଭିଭାଷଣ ଓ ଅଭିମତକୁ ଇତ୍ୟାଦିକୁ, ନେଇ ପ୍ରବନ୍ଧ ଗୁଡ଼ିକ ରଚିତ । ଫକୀରମୋହନଙ୍କ ଜୀବନାଲେଖ୍ୟକୁ ଆଧାର କରି ତାଙ୍କର ବହୁମୁଖୀ ବ୍ୟକ୍ତିତ୍ୱର ଅନାଲୋକିତ ଦିଗ୍‌ବଳୟକୁ ଜାଣିବାପାଇଁ ଏହା ଏକ ପ୍ରଚେଷ୍ଟା । ଫକୀରମୋହନଙ୍କ ସାହିତ୍ୟ ସୃଷ୍ଟିକୁ ନେଇ ବହୁ ଆଲୋଚନା ଗ୍ରନ୍ଥ, ଗବେଷଣା ନିବନ୍ଧ ରଚିତ ହୋଇଛି । ମାତ୍ର ତାଙ୍କ ଜୀବନ ସ୍ରୋତସ୍ୱିନୀର ପ୍ରବାହିତ ଧାରାରେ ଭେଟ ହୋଇଥିବା ମଣିଷ ମାନଙ୍କ ସହିତ ତାଙ୍କର ଗଢ଼ିଉଠିଥିବା ସମ୍ପର୍କର କଥା ଏକତ୍ର ଭାବରେ କୌଣସି ପୁସ୍ତକରେ କୁହାଯାଇନାହିଁ । ଯେଉଁ ପ୍ରୟାସ ଫକୀରମୋହନ ନିଜେ ହିଁ ସ୍ୱରଚିତ "ଉତ୍କଳ ଭ୍ରମଣ" ପୁସ୍ତକରେ କରିଛନ୍ତି । ଉତ୍କଳର ବରପୁତ୍ର, କୃତି ସନ୍ତାନ, ଉତ୍କଳହିତୈଷୀ ତଥା ରାଜା ମହାରାଜା ମାନଙ୍କ ଯଶଗାନ କରି ସେମାନଙ୍କୁ ଶତ ମୁଖରେ ସେ ପ୍ରଶଂସା କରିଚନ୍ତି । ଏହି ପୁସ୍ତକଟି ଫକୀରମୋହନଙ୍କ ସହ ତାଙ୍କ ସମୟର କେତେକ ମହାନ ଅନ୍ତରଙ୍ଗ ଚରିତ୍ରର ମାନଙ୍କ ମଧୁର ସମ୍ପର୍କର ଏକ ସେତୁବନ୍ଧ ମାତ୍ର । ଆଶା, ଏଭଳି ପୁସ୍ତକଟି ପ୍ରକାଶ ପାଇଲେ ଫକୀରମୋହନଙ୍କ ବହୁବର୍ଣ୍ଣିଳ ଜୀବନ-ସମ୍ପର୍କର ମଧୁର ସ୍ମୃତି ଓଡ଼ିଶାର ଅଗଣିତ ପାଠକ ମାନଙ୍କ ପାଇଁ ପ୍ରେରଣା ଦାୟକ ହେବ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଫକୀରମୋହନଙ୍କ ସାରସ୍ୱତ ଜୀବନ ସହିତ ସଂପର୍କିତ ଗୌରୀଶଙ୍କର ରାୟ, ରାଧାନାଥ ରାୟ, ମଧୁସୂଦନ ରାଓ, ମଧୁସୂଦନ ଦାସ, ଗୋପାଳ ଚନ୍ଦ୍ର ପ୍ରହରାଜ, ନନ୍ଦକିଶୋର ବଳ, ବିଶ୍ୱନାଥ କର, ଶଶୀଭୂଷଣ ରାୟ, ନୀଳମଣି ବିଦ୍ୟାରତ୍ନ, ନାରୀ କବି ଅନ୍ନପୂର୍ଣ୍ଣା, ଅସରଫ୍ ଅଲ୍ଲି ଖାଁ, ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ, ନନ୍ଦକିଶୋର ଦାସ, ବ୍ରଜସୁନ୍ଦର

ଦାସ, ଗୋବିନ୍ଦ ରଥ, ବ୍ରଜମୋହନ ପଣ୍ଡା, ପ୍ରଭୃତି ଚରିତ୍ରମାନଙ୍କୁ ଏହି ଗ୍ରନ୍ଥରେ ସ୍ଥାନୀତ କରିବା ନିର୍ଦ୍ଦିଷ୍ଟ କଳେବର ମଧ୍ୟରେ ସମ୍ଭବ ହୋଇନାହିଁ । ଏଥିପାଇଁ ଅନ୍ୟଏକ ପୁସ୍ତକ ପ୍ରକାଶ କରିବାର ଇଚ୍ଛା ଅଛି ।

ଫକୀରମୋହନଙ୍କ ଜୀବନ ଆଧାରିତ ପ୍ରବନ୍ଧ ଗୁଡ଼ିକୁ ଏକତ୍ର ପୁସ୍ତକ ଭାବରେ ପ୍ରକାଶ କରିବାର ପ୍ରଥମ ପ୍ରସ୍ତାବକ ଥିଲେ ବୟୋଜ୍ୟେଷ୍ଠ ବରେଣ୍ୟ କବି ଶ୍ରୀଯୁକ୍ତ ବ୍ରଜନାଥ ରଥ । ଏଥିପାଇଁ କଟକର ଏକ ପ୍ରକାଶନ ସଂସ୍ଥା ସହିତ ମଧ୍ୟ କଥାବାର୍ତ୍ତା କରିଥିଲେ । ଅନେକ ଦିନ ପରେ ପ୍ରବନ୍ଧ ଗୁଡ଼ିକର ଏକତ୍ର ପାଣ୍ଡୁଲିପି ଫକୀରମୋହନ ବିଶ୍ୱ ବିଦ୍ୟାଳୟର କୁଳପତି ପ୍ରଫେସର ଡ. ଶୁକଦେବ ନନ୍ଦ ଏବଂ କୁଳସଚିବ ଡ଼ଁ. ଅମୂଲ୍ୟ ଚନ୍ଦ୍ର କରଙ୍କ ଦୃଷ୍ଟିକୁ ଅଣାଯାଇ ସିଣ୍ଡିକେଟ୍‌ରେ ଅନୁମୋଦନ ପାଇଁ ଦାଖଲ କରାଯାଇଥିଲା । ଫକୀରମୋହନ ବିଶ୍ୱ ବିଦ୍ୟାଳୟ ଗ୍ରନ୍ଥଟିକୁ ପ୍ରକାଶ କରିଥିବାରୁ ଏହି ଅବସରରେ ଉଭୟଙ୍କୁ କୃତଜ୍ଞତା ଜଣାଉଛି ।

ପୁସ୍ତକଟି ପାଇଁ ଶ୍ରୀଯୁକ୍ତ ରଥ ଏକ ମୁଖବନ୍ଧ ଲେଖିଥିବାରୁ ଏବଂ ପ୍ରକାଶକାଳରେ ସତର୍କ ଦୃଷ୍ଟିଦେଇ ଆବଶ୍ୟକ ସ୍ଥଳେ ପରିବର୍ତ୍ତନ ଓ ସଂଶୋଧନ କରିବାର ଦାୟିତ୍ୱ ବହନ କରିଥିବାରୁ ତାଙ୍କଠାରେ ଚିରକୃତଜ୍ଞ । ମୋର ଅଗ୍ରଜ ପ୍ରତିମ ବିଶିଷ୍ଟ ଗବେଷକ, ସମାଲୋଚକ ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ ଫକୀରମୋହନଙ୍କ ଜୀବନ ଆଧାରିତ ବହୁ ନିର୍ଭୁଲ ତଥ୍ୟ ଯୋଗାଇଥିବାରୁ ତାଙ୍କୁ ଆନ୍ତରିକ ସାଧୁବାଦ ଜଣାଉଅଛି ।

'ସୁବର୍ଣ୍ଣଶ୍ରୀ' ଭଳି ଏକ ନିର୍ଭରଯୋଗ୍ୟ ବିଶ୍ୱସ୍ତ ଏବଂ ବହୁ ଲୋକପ୍ରିୟ ମୁଦ୍ରଣ ସଂସ୍ଥା ପୁସ୍ତକଟି ମୁଦ୍ରଣ କରିବାରେ ଯତ୍ନବାନ ହୋଇଥିବାରୁ ଏବଂ ଏହାର ପ୍ରତିଷ୍ଠାତା ଶ୍ରଦ୍ଧେୟ କାଳୀପଦ ପଣ୍ଡା ସବୁ କ୍ଷେତ୍ରରେ ଧୈର୍ଯ୍ୟର ସହିତ ସହଯୋଗ କରିଥିବାରୁ, ତାଙ୍କୁ ଆନ୍ତରିକ ଶୁଭେଚ୍ଛା ଜଣାଉଛି । ପିତୃ ବିୟୋଗ ଜନିତ ଦୁଃଖଦ ସମୟରେ ପୁସ୍ତକଟି ପ୍ରକାଶ ପାଇଥିବାରୁ, ଏଥିରେ ଅଜାଣତରେ କିଛି ତ୍ରୁଟି ବିଚ୍ୟୁତି ରହିଥାଇପାରେ । ବିଜ୍ଞ ପାଠକ, ଆଲୋଚକ ଉଦାର ଗୁଣରେ ସଂଶୋଧନ କରିବାର ସୁପରାମର୍ଶ ଦେବାସହିତ ଓଡ଼ିଶାର ଫକୀରମୋହନ ପ୍ରେମୀ ଅଗଣିତ ଛାତ୍ର ଛାତ୍ରୀ ଓ ପାଠକ ପାଠିକା ମାନଙ୍କ ପାଇଁ ଫକୀରମୋହନଙ୍କ ଜୀବନର ଏକ ଅନାଲୋଚିତ ନୂତନ ଦିଗ୍‌ବଳୟର ସନ୍ଧାନ ଦେବାରେ ଏହା ସାମାନ୍ୟ ସହାୟକ ହେଲେ ମୋର ଶ୍ରମ ସାର୍ଥକ ହେବ ।

# 'ଶ୍ରୀ ଧୂର୍ଜଟୀ ଫକୀରମୋହନ' ସଂପର୍କରେ

ଜଣେ ସ୍ୱନାମଧନ୍ୟ ଯୁବ ଗବେଷକ ତଥା ଓଡ଼ିଆ ଭାଷା-ସାହିତ୍ୟର ଅଧ୍ୟାପକ ଡ.ଅରବିନ୍ଦ ଗିରିଙ୍କ ଏକ ଆଲୋଚନା ଗ୍ରନ୍ଥ 'ଶ୍ରୀଧୂର୍ଜଟୀ ଫକୀରମୋହନ' ଫକୀରମୋହନ ବିଶ୍ୱବିଦ୍ୟାଳୟ ପକ୍ଷରୁ ପ୍ରକାଶ ପାଉଛି । ଏହା ଅତ୍ୟନ୍ତ ଆନନ୍ଦର କଥା । କାରଣ ଏହି ବିଶ୍ୱବିଦ୍ୟାଳୟ ଯେଉଁ ମହାନ୍ ଉତ୍କଳପୁତ୍ରଙ୍କ ନାମରେ ନାମିତ ତାଙ୍କ ସଂପର୍କରେ ଏହି ଗବେଷଣାତ୍ମକ ପୁସ୍ତକ ପ୍ରକାଶ କରିବା ଏକ ନୈତିକ କର୍ତ୍ତବ୍ୟ ଓ ଜାତୀୟ କାର୍ଯ୍ୟ । ଫକୀରମୋହନ ଥିଲେ ଊନବିଂଶ ଶତକର ଅନ୍ୟତମ ଶ୍ରେଷ୍ଠ ଉତ୍କଳୀୟ, ଯିଏ ଏହି ମରଣୋନ୍ମୁଖୀ ଓଡ଼ିଆ ଭାଷାକୁ କେବଳ କିଛି ଚକ୍ରାନ୍ତକାରୀଙ୍କ କବଳରୁ ରକ୍ଷାକରି ନୂତନ ଜୀବନ୍ୟାସ ଦେଇନଥିଲେ, ଓଡ଼ିଆ ସାହିତ୍ୟକୁ, ବିଶେଷକରି କଥାସାହିତ୍ୟକୁ ଦେଇଥିଲେ ଏକ ନୂଆ ଦିଗ୍‌ବଳୟର ସନ୍ଧାନ । ତାଙ୍କରି କଲମମୁନରେ ଓଡ଼ିଆ ଗଦ୍ୟ ନୂଆ ଭାଷା, ନୂଆ ଶିଳ୍ପ ପ୍ରକରଣରେ ମହିମାମଣ୍ଡିତ ହେବା ସଙ୍ଗେସଙ୍ଗେ ସାଧାରଣ ଚରିତ୍ରମାନଙ୍କୁ ନେଇ ଲୋକାଭିମୁଖୀ ହୋଇ କି ବିଦଗ୍ଧ, କି ସାଧାରଣ ସବୁଶ୍ରେଣୀର ପାଠକଙ୍କ ଚିତ୍ତଜୟ କରିପାରିଥିଲା । ଆଜି ଆମେ ଯେଉଁ ଓଡ଼ିଶା ପ୍ରଦେଶର ଅଧିବାସୀ ହୋଇପାରିଛୁ ଏବଂ ଉତ୍କଳୀୟ ବୋଲି ଗର୍ବ ଅନୁଭବ କରୁଛୁ, ତାହା ସମ୍ଭବ ହୋଇପାରିଥିଲା ଫକୀରମୋହନ ଓ ତାଙ୍କର ଅନ୍ୟ କେତେକ ସହସାଥୀଙ୍କ ଅକ୍ଳାନ୍ତ ସଂଗ୍ରାମ ଓ ନିଃସ୍ୱାର୍ଥ କର୍ତ୍ତବ୍ୟନିଷ୍ଠା ଯୋଗୁଁ ।

ଫକୀରମୋହନଙ୍କ ଜୀବନ ଓ ସାହିତ୍ୟ ସଂପର୍କରେ ଆଜିସୁଦ୍ଧା ଓଡ଼ିଆରେ ଯେତେ ଆଲୋଚନା, ପ୍ରବନ୍ଧ, ନିବନ୍ଧ ଓ ଗବେଷଣା ଗ୍ରନ୍ଥ ପ୍ରକାଶ ପାଇଲାଣି, ବୋଧହୁଏ ଅନ୍ୟ କୌଣସି ଓଡ଼ିଆ ସାରସ୍ୱତ ସ୍ରଷ୍ଟାଙ୍କ ସଂପର୍କରେ ତାହା ସମ୍ଭବ ହୋଇପାରିନାହିଁ ।

ଏବେ 'ଶ୍ରୀ ଧୂର୍ଜଟୀ ଫକୀରମୋହନ' ଗ୍ରନ୍ଥ ସେହି ତାଲିକାରେ ଅନ୍ୟଏକ ସଦ୍ୟତମ ସଂଯୋଜନ । ଏହା ଫକୀରମୋହନଙ୍କ ସାରସ୍ୱତ ସୃଷ୍ଟି ସମ୍ପର୍କୀୟ ବା ତାଙ୍କ କାଳଜୟୀ ସାହିତ୍ୟ ସଂପର୍କୀୟ ବିଦଗ୍ଧ ଆଲୋଚନା ସମ୍ବଳିତ ଗ୍ରନ୍ଥ ନୁହେଁ । ଏହା ଏକ ଭିନ୍ନ ଧରଣର ଗ୍ରନ୍ଥ । ଉନବିଂଶ ଶତାବ୍ଦୀର ଯେଉଁ ସାରସ୍ୱତ ବ୍ୟକ୍ତି ଓ ଜାତିପ୍ରାଣ ମହାନ୍ ଉତ୍କଳୀୟ ଗଣଙ୍କ ସଂପର୍କରେ ଫକୀରମୋହନ ଆସିଥିଲେ ଏବଂ ସେମାନଙ୍କ ସାହାଯ୍ୟ ସହଯୋଗରେ ଓଡ଼ିଆ ଭାଷା-ସାହିତ୍ୟ-ଶିକ୍ଷା-ସାମ୍ବାଦିକତା-ଜାତୀୟତାର ଅଭ୍ୟୁତ୍‌ଥାନ ପାଇଁ ସଂଗ୍ରାମ କରିଥିଲେ, ସେଭଳି କିଛି ବ୍ୟକ୍ତିଙ୍କ ବିଷୟରେ ଡ. ଗିରି ଏହି ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି । ସେଭଳି ପ୍ରମୁଖ ବ୍ୟକ୍ତିମାନେ ହେଲେ ଦାମୋଦର ଦାସ, ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ, ରାଜା ବୈକୁଣ୍ଠନାଥ ଦେ, ମହାରାଜା ଶ୍ରୀରାମ ଚନ୍ଦ୍ର ଭଞ୍ଜ, ଚନ୍ଦ୍ରମୋହନ ମହାରଣା, କବି ଗଂଗାଧର ମେହେର, କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ଜନ୍ ବିମସ୍, ହାଲମ୍ ସାହେବ, ପୂର୍ଣ୍ଣଚନ୍ଦ୍ର ଦାସ ଇତ୍ୟାଦି । ଏହା ବ୍ୟତୀତ ଫକୀରମୋହନଙ୍କ ପ୍ରିୟ ଉଦ୍ୟାନ ତଥା ଶେଷ ଜୀବନରେ ସାରସ୍ୱତ ସାଧନାର ସ୍ଥଳ 'ଶାନ୍ତିକାନନ', ଓଡ଼ିଶାର ପ୍ରାଚୀନ ସାହିତ୍ୟାନୁଷ୍ଠାନ 'ଉତ୍କଳ ସାହିତ୍ୟ ସମାଜ' ସହ ତାଙ୍କର ସଂପର୍କ, ତାଙ୍କର କେତେକ ଦୁର୍ଲଭ ଅଭିଭାଷଣ, ଅଭିମତ, ଚିଠିପତ୍ର ଓ ସ୍ୱର୍ଣ୍ଣପଦକ ବିଷୟ ମଧ୍ୟ ଏହି ଗ୍ରନ୍ଥରେ ସ୍ଥାନ ପାଇଛି । ଶେଷରେ ଫକୀରମୋହନଙ୍କ ଅନ୍ତିମ ଶଯ୍ୟାର ସ୍ଥଳ (ଦାହସ୍ଥଳ) ନିରୂପଣ ଓ ସମାଧି ମନ୍ଦିର ନିର୍ମାଣ ସଂପର୍କରେ ବର୍ଣ୍ଣନା କରାଯାଇଛି । ବ୍ୟାସକବିଙ୍କ ସାରସ୍ୱତ ପ୍ରେରଣାର ଉତ୍ସ ତାଙ୍କ ଦ୍ୱିତୀୟା ପତ୍ନୀ କୃଷ୍ଣକୁମାରୀଙ୍କ ଅବଦାନ ବିଷୟରେ ମଧ୍ୟ ଆଲୋଚକ ଡ. ଗିରି ଉଲ୍ଲେଖ କରିଛନ୍ତି । ଶେଷ ଜୀବନରେ ଫକୀରମୋହନ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ । ବାଲେଶ୍ୱରସ୍ଥ ଆଦି ବ୍ରାହ୍ମସମାଜର ସଦସ୍ୟ ହୋଇ ୧୯୧୪ରେ ଗଠିତ ଟ୍ରଷ୍ଟବୋର୍ଡ଼ର ଅଧ୍ୟକ୍ଷ ଭାବେ ଏହାକୁ ପଞ୍ଜୀକରଣ କରାଇଥିଲେ । 'ଫକୀରମୋହନ ଓ ବ୍ରାହ୍ମଧର୍ମ' ସଂପର୍କରେ ଲେଖାଟିଏ ଲେଖି ଫକୀରମୋହନଙ୍କ ଜୀବନର ଅନ୍ୟଏକ ଦିଗ ସଂପର୍କରେ ଡ. ଗିରି ଆଲୋକପାତ କରିଛନ୍ତି ଏହି ଗ୍ରନ୍ଥରେ । ମୋଟ ଉପରେ ଫକୀରମୋହନଙ୍କ ସଂପର୍କରେ ଏହା ଏକ ପ୍ରାମାଣିକ ଗ୍ରନ୍ଥ, ଯେଉଁଥିରେ ସାଧାରଣରେ କିଛି ଅଜ୍ଞାତ, ଅଳ୍ପଜ୍ଞାତ ବା

ଅନାଲୋଚିତ ତଥ୍ୟ ପ୍ରଦାନ କରାଯାଇଛି । ବିଭିନ୍ନ ସ୍ଥାନରେ, ବିଭିନ୍ନ ଲେଖକ ବା ଗବେଷକଙ୍କ ଲେଖାରେ ବର୍ଣ୍ଣନା କରାଯାଇଥିବା ତଥ୍ୟ ସଂଗ୍ରହ କରି ଏହି ଗୋଟିଏ ଗ୍ରନ୍ଥରେ ସ୍ଥାନିତ କରି ଡ. ଗିରି ଜଣେ ସଫଳ ସୂତ୍ରଧର ବା ସଂଯୋଜକର ଭୂମିକା ନିର୍ବାହ କରିଛନ୍ତି ।

ପୂର୍ବରୁ ଡ. ଗିରି 'ଫକୀରମୋହନଙ୍କ ଦୁର୍ଲଭ ରଚନାବଳୀ' (ଓଡ଼ିଶା ସାହିତ୍ୟ ଏକାଡେମୀ, ପ୍ରକାଶିତ - ୨୦୦୦), ଚନ୍ଦ୍ରମୋହନ ଗ୍ରନ୍ଥାବଳୀ (୧୯୯୧), ଚନ୍ଦ୍ରମୋହନ ପରିକ୍ରମା, ଗୋଲକ ସ୍ମୃତି ସମ୍ଭାର (୧୯୯୨), 'ଉତ୍କଳ ଦର୍ପଣ' (ପ୍ରକାଶକ - ପ୍ରଗତି ଉତ୍କଳ ସଂଘ, ରାଉରକେଲା - ୨୦୦୬) ଇତ୍ୟାଦି ସଂପାଦନା କରି ନିଜ ଗବେଷଣାତ୍ମକ ମନୋବୃତ୍ତିର ପରିଚୟ ଦେଇଛନ୍ତି । ଏବେ ଫକୀରମୋହନଙ୍କ ସାରସ୍ୱତ ସଂପର୍କ ବିଷୟରେ ଆଲୋକପାତ କରି ଆପଣାର ଗବେଷଣା ମୂଳକ ସାରସ୍ୱତ ଦକ୍ଷତାର ଅନ୍ୟଏକ ନଜିର ସୃଷ୍ଟିକଲେ । ସେପାଇଁ ସେ ଅବଶ୍ୟ ଧନ୍ୟବାଦର ପାତ୍ର । କିନ୍ତୁ ଫକୀରମୋହନଙ୍କ ସମସାମୟିକ ଅନ୍ୟକିଛି ବିଶିଷ୍ଟ ବ୍ୟକ୍ତି ଯଥା - ମଧୁସୂଦନ ଦାସ, ମଧୁସୂଦନ ରାଓ, ନନ୍ଦକିଶୋର ବଳ, ଗୌରୀଶଙ୍କର ରାୟ, ବିଶ୍ୱନାଥ କର, ବ୍ରଜସୁନ୍ଦର ଦାସ, ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ, ଚିନ୍ତାମଣି ମହାନ୍ତି, ରାଧାନାଥ ରାୟ, ଗୋପବନ୍ଧୁ ଦାସ, ଗୋଦାବରୀଶ ମିଶ୍ର, ଲକ୍ଷ୍ମୀନାରାୟଣ ସାହୁ, ଶଶୀଭୂଷଣ ରାୟ, ନୀଳମଣି ବିଦ୍ୟାରତ୍ନ, ଗୋପାଳ ଚନ୍ଦ୍ର ପ୍ରହରାଜ, ବ୍ରଜମୋହନ ପଣ୍ଡା, ଗୋବିନ୍ଦ ରଥ ଇତ୍ୟାଦିଙ୍କ ସହ ତାଙ୍କର ସଂପର୍କ ବିଷୟ ଭବିଷ୍ୟତରେ ବିଶଦ ଭାବରେ ଆଲୋକକୁ ଆଣି ପାରିଲେ ଡ. ଗିରିଙ୍କ ଗବେଷଣାର ଉତ୍କର୍ଷ ଅଧିକ ପ୍ରତିପାଦିତ ହୋଇ ପାରିବ ।

'ବ୍ରଜମୋହନ'ରୁ ନାମାନ୍ତରିତ ହୋଇଥିବା 'ଫକୀରମୋହନ' 'ଶ୍ରୀ ଧୂର୍ଜଟୀ' ଛଦ୍ମନାମରେ କିଛି ଲେଖା ଲେଖି ଚହଳ ସୃଷ୍ଟି କରିଥିଲେ । ଏହା ସେତେବେଳେ ଅନେକଙ୍କ ପାଖରେ ଅଜ୍ଞାତ ଥିଲା । ଡ. ଗିରି ସେହି ଛଦ୍ମନାମକୁ ଅଧିକ ଗୁରୁତ୍ୱ ଦେବାପାଇଁ ବୋଧହୁଏ ଏହି ଗ୍ରନ୍ଥର ନାମକରଣ କରିଛନ୍ତି 'ଶ୍ରୀ ଧୂର୍ଜଟୀ ଫକୀରମୋହନ' । ଧୂର୍ଜଟୀ ବା ଶିବ ହେଉଛନ୍ତି 'ଲୋକଦେବତା' । ଅତି ସାଧାରଣ

ହୋଇବି ସେ ଅସାଧାରଣ । ସେହିଭଳି ଫକୀରମୋହନ ହେଉଛନ୍ତି - 'ଲୋକ ସାହିତ୍ୟିକ' । ସାଧାରଣରୁ ସେ ଅନନ୍ୟ ସାଧାରଣରେ ରୂପାନ୍ତରିତ ହୋଇଯାଇଛନ୍ତି । ଜୀବଦ୍ଦଶାରେ ଯେତିକି, ଲୋକାନ୍ତରିତ ହେବାପରେ ତତୋଽଧିକ । ଯାହାହେଉ 'ଶ୍ରୀ ଧୂର୍ଜଟୀ ଫକୀରମୋହନ' ଶୀର୍ଷକ ଏହି ଆଲୋଚନା ଗ୍ରନ୍ଥ ପ୍ରଣୟନ କରି ଶ୍ରଦ୍ଧାସ୍ପଦ ଡ. ଅରବିନ୍ଦ ଗିରି ଯେଉଁ ମହତ୍ ସାରସ୍ୱତ କର୍ତ୍ତବ୍ୟ ସଂପାଦନ କରିଛନ୍ତି, ସେଥିପାଇଁ ତାଙ୍କୁ ଅଜସ୍ର ଧନ୍ୟବାଦ ଦେବା ସଙ୍ଗେସଙ୍ଗେ, ଫକୀରମୋହନ ବିଶ୍ୱବିଦ୍ୟାଳୟର ପ୍ରାକ୍ତନ କୁଳପତି ଡ. ଶୁକଦେବ ନନ୍ଦ ସିଣ୍ଡିକେଟ୍‌ର ଅନୁମୋଦନ କ୍ରମେ ଏଭଳି ଏକ ଗ୍ରନ୍ଥ ବିଶ୍ୱବିଦ୍ୟାଳୟ ପକ୍ଷରୁ ପ୍ରକାଶ ପାଇଁ ଉଦ୍ୟମ କରିଥିବାରୁ ଏବଂ କୁଳସଚିବ ଡ. ଅମୂଲ୍ୟ କୁମାର କର ମହୋଦୟ ଏ ଦିଗରେ ଯତ୍ନବାନ୍ ହୋଇଥିବାରୁ ଅବଶ୍ୟ ଧନ୍ୟବାଦାର୍ହ ।

# ବିଷୟ କ୍ରମ

# ଫକୀରମୋହନ ଓ ଦାମୋଦର
# ଏକ ସାରସ୍ୱତ ବନ୍ଧୁତ୍ୱର ବନ୍ଧନ

ପ୍ରକୃତରେ ଦେଖିବାକୁ ଗଲେ ବଙ୍ଗଭାଷା ସାହିତ୍ୟରେ ଉନ୍ନତିର ଶୁଭାରମ୍ଭ ଘଟେ ୧୮୫୭ ପରବର୍ତ୍ତୀ ସିପାହୀ ବିଦ୍ରୋହ ପରେପରେ । ମହାନ୍ ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ଭୂଦେବ ମୁଖାର୍ଜୀ, ଅକ୍ଷୟ କୁମାର ଦତ୍ତ, ତାରିଣୀ ଚରଣ ଚଟ୍ଟୋପାଧ୍ୟାୟ, ପ୍ରସନ୍ନ କୁମାର ସର୍ବାଧିକାରୀ ପ୍ରଭୃତି ବିଖ୍ୟାତ ପାଠ୍ୟ ପୁସ୍ତକ ରଚୟିତାମାନଙ୍କ ଦ୍ୱାରା ଉଭୟ ବଙ୍ଗ ଓ ଓଡ଼ିଶା ପ୍ରଦେଶର ସ୍କୁଲସମୂହରେ ପାଠ୍ୟପୁସ୍ତକ ଅଭାବ ଦୂର ହୋଇପାରିଥିଲା ।

ଉନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ବାଲେଶ୍ୱରରେ ଓଡ଼ିଆ ଭାଷା ସାହିତ୍ୟ-ସୁରକ୍ଷା ଆନ୍ଦୋଳନର ନେତୃତ୍ୱ ନେଇଥିଲେ ଫକୀରମୋହନ ସେନାପତି । ଓଡ଼ିଶାର ସ୍କୁଲ ଓ କଚେରିରୁ ଓଡ଼ିଆ ଭାଷା ଉଚ୍ଛେଦ ପାଇଁ ବଙ୍ଗାଳି ମାନଙ୍କର ହୀନୀଚକ୍ରାନ୍ତକୁ ସେ ବେଶ୍ ହୃଦୟଙ୍ଗମ କରିଥିଲେ । ଏହାର ପ୍ରତିବାଦ ସ୍ୱରୂପ ସଭାସମିତି, ସମ୍ବାଦପତ୍ର ପ୍ରକାଶନ ଏବଂ ଓଡ଼ିଆ ଭାଷା ସଂକଟ ନେଇ ବିବିଧ ସମ୍ବାଦ ପରିବେଷଣ ତଥା ସମୃଦ୍ଧ ଓଡ଼ିଆ ଭାଷାର ପ୍ରାଚୀନତା ଓ ମୌଳିକତା ପ୍ରତିପାଦନପାଇଁ ବଳିଷ୍ଠ ଓ ଯୁକ୍ତିନିଷ୍ଠ ଓ ବୌଦ୍ଧିକ ପ୍ରବନ୍ଧମାନ ପ୍ରକାଶକରି ସମଗ୍ର ଓଡ଼ିଶାରେ ଜନ ସଚେତନତା ସୃଷ୍ଟି କରାଇଥିଲେ । ବିଶେଷ କରି ଓଡ଼ିଆ ଭାଷା ଆଲୋଚନା ବେଳେ ବଙ୍ଗୀୟ ଶିକ୍ଷକ ଓ ବଙ୍ଗବାବୁ ମାନଙ୍କର ବୈମାତୃକ ମନୋଭାବ ଏବଂ ତାଚ୍ଛଲ୍ୟ ପୂର୍ଣ୍ଣ ମନ୍ତବ୍ୟ ଫକୀରମୋହନଙ୍କ ପ୍ରାଣରେ ବଡ଼ ଆଘାତ ଦେଇଥିଲା । ସେତେବେଳେ ସେ ୧୯/୨୦ ବର୍ଷର ଯୁବକ । ସ୍ୱୀୟ ମାତୃଭାଷା ପ୍ରତି ଅବଜ୍ଞା ଭାବ ଶୁଣି ଆପଣାର ମାତାକୁ ଅପମାନ କଲାପରି ନିନ୍ଦାକାରୀ ମାନଙ୍କ ପ୍ରତି ବିଷମ କ୍ରୋଧ ଏବଂ ପ୍ରାଣରେ ବଡ଼ ଆଘାତ ଲାଗେ ।" (ଫକୀରମୋହନ ଗ୍ରନ୍ଥାବଳୀ (୨ୟଙ୍ଗ-୧୯୩୬) କଟକ

ଷ୍ଟୁଡେ଼ଣ୍ଟଷ୍ଟୋରର୍ସ-ପୃ୪୧ )

ଓଡ଼ିଆ ଭାଷା ସଙ୍କଟ କାଳରେ ଫକୀରମୋହନଙ୍କୁ ବିଶେଷ ପ୍ରେରଣାଦେଇଥିଲେ ବାବୁ ଦାମୋଦର ପ୍ରସାଦ ଦାସ । ସେଥିଲେ ଜଣେ ଉତ୍ସାହୀ କରଣ ଯୁବକ । ଘର ସୁନହଟ । ସିରସ୍ତାଦାର ପୁରୁଷୋତ୍ତମ ଦାସଙ୍କର ଏକ ମାତ୍ର ପୁତ୍ର ଦାମୋଦର ଥିଲେ ରାଧାନାଥଙ୍କର ସ୍କୁଲ ସହପାଠୀ । ବାଲେଶ୍ୱରର ପ୍ରଥମ ପୁସ୍ତକାଳୟର ପ୍ରତିଷ୍ଠାତା । ଏଥିପାଇଁ ସେ ବହୁଅର୍ଥ ବ୍ୟୟକରି ବିଭିନ୍ନ ଭାଷାର ମୂଲ୍ୟବାନ ପୁସ୍ତକମାନ କ୍ରୟକରି ସ୍ୱଗୃହସ୍ଥ ପୁସ୍ତକାଗାରରେ ସର୍ବ ସାଧାରଣଙ୍କ ପଠନ ଉଦ୍ଦେଶ୍ୟରେ ରଖୁଥିଲେ । ସେ ଥିଲେ ଏକ ପ୍ରକାର ଜ୍ଞାନ-ପାଗଳ । ବିଭିନ୍ନ ଭାଷାରେ ପ୍ରକାଶିତ ପୁସ୍ତକ ସଂଗ୍ରହ କରିବା ତାଙ୍କ ଜୀବନର ମୁଖ୍ୟ ସଉକ ଥିଲା । ବିଭିନ୍ନ ଭାଷାରେ ପ୍ରକାଶିତ ଦୁର୍ଲଭ ପୁସ୍ତକ ଗୁଡ଼ିକ ନିଜେ ଅଧ୍ୟୟନ କରି ଜ୍ଞାନ ଆହରଣ କରିବା ସହିତ ଅନ୍ୟମାନଙ୍କୁ ପଢ଼ିବାର ସୁଯୋଗ ସୃଷ୍ଟି କରିବାରେ ପରମ ତୃପ୍ତି ଲାଭ କରୁଥିଲେ । ବିଶେଷକରି ଇଂରାଜୀ ଓ ବଙ୍ଗଳା ଭାଷାରେ ପ୍ରାୟ ଦେଢ଼ହଜାର ଉତ୍କୃଷ୍ଟ ପୁସ୍ତକ ତାଙ୍କ ପୁସ୍ତକାଳୟରେ ଗଚ୍ଛିତ ଥିଲା । ସେତେବେଳେ ବାଲେଶ୍ୱରରେ ଜ୍ଞାନ ଆହରଣର ଏକମାତ୍ର ସୁଯୋଗ ସ୍ଥଳୀ ଥିଲା ଏହି ପୁସ୍ତକାଳୟ । ସହରର ବହୁ ବିଶିଷ୍ଟ ଜ୍ଞାନୀ, ଗୁଣୀ, ଜ୍ଞାନ ପିପାସୁ ଯୁବକ ଓ ବୟସ୍କ ବ୍ୟକ୍ତି ନିୟମିତ ଏହି ପୁସ୍ତକାଳୟକୁ ଆସି ଅଧ୍ୟୟନ କରୁଥିଲେ । ପାଟନାର ଖୋଦାବକ୍ସ ଲାଇବ୍ରେରୀ ପରି ଏହା ସେତେବେଳେ ଏକ ବିଶିଷ୍ଟ ଗ୍ରନ୍ଥଶାଳା ଭାବରେ ଖ୍ୟାତି ଅର୍ଜନ କରିଥିଲା ।

ବଙ୍ଗଭାଷାରେ ପ୍ରକାଶିତ 'ବିବିଧାର୍ଥ ସଂଗ୍ରହ', 'ସୋମପ୍ରକାଶ' ଆଦି ପତ୍ରିକା ଗୁଡ଼ିକ ଦାମୋଦର ବାବୁ ତାଙ୍କ ଲାଇବ୍ରେରୀକୁ ମଧ୍ୟ ଆଣୁଥିଲେ । ରାଧାନାଥ ଓ ଫକୀରମୋହନ ନିୟମିତ ଏହି ପୁସ୍ତକାଳୟକୁ ଯାଇ ବିବିଧ ପୁସ୍ତକ ଓ ପତ୍ରିକା ପାଠକରୁଥିଲେ । ଫକୀରମୋହନ ଲେଖିଛନ୍ତି, "ସେ ସମୟରେ ବଙ୍ଗଭାଷାରେ ପ୍ରତି ମାସରେ ନାନା ବିଷୟରେ କ୍ଷୁଦ୍ର ବୃହତ୍ ଅନେକ ପୁସ୍ତକ ବାହାରୁଥାଏ । ମୁଁ କେତେକ ପୁସ୍ତକ ନିଜ ବ୍ୟୟରେ କିଣି, କେତେକ ବାଲେଶ୍ୱର ସହରସ୍ଥ ସୁନହଟ ଗ୍ରାମନିବାସୀ ବାବୁ ଦାମୋଦର ପ୍ରସାଦଙ୍କ ପୁସ୍ତକାଳୟରୁ ଆଣି ପଢେ । ଦାମୋଦରବାବୁ ନିଜେ ପଢ଼ନ୍ତୁ ବା ନ' ପଢ଼ନ୍ତୁ, ଆମ୍ଭମାନଙ୍କ ଅଧ୍ୟୟନ ସକାଶେ ସମସ୍ତ ପ୍ରକାର ପୁସ୍ତକ କ୍ରୟକରି ରଖୁଥିଲେ ।" (ଫକୀରମୋହନ ଗ୍ରନ୍ଥାବଳୀ-୨ୟଙ୍ଗ, ୧୯୬୩), କଟକ ଷ୍ଟୁଡେ଼ଣ୍ଟସ୍ ଷ୍ଟୋର-ପୃ ୪୧ )

ସହପାଠୀ ରାଧାନାଥ ଏବଂ ଫକୀରମୋହନଙ୍କୁ ପାଇ ଦାମୋଦରଙ୍କର ସାହିତ୍ୟ ଚର୍ଚ୍ଚା ପ୍ରତି ଖୁବ୍ ଅନୁରାଗ ବଢ଼ିଯାଇଥିଲା । ଓଡ଼ିଆ ଓ ବଙ୍ଗଳା ଭାଷା ଏବଂ ସାହିତ୍ୟର ନାନା ବିଷୟରେ ନାନା କଥା ଆଲୋଚନା କରି ପରସ୍ପର ପରମ ସୁଖ ଲାଭ କରୁଥିଲେ । କାଳକ୍ରମେ ଦାମୋଦର ବାବୁଙ୍କ ଗ୍ରନ୍ଥାଳୟ ସ୍ୱଗୃହଟି ବାଲେଶ୍ୱର ସହରର ସାହିତ୍ୟ ଚର୍ଚ୍ଚାର ପ୍ରାଣକେନ୍ଦ୍ର ପାଲଟିଗଲା । ସହରର ବହୁ ବିଶିଷ୍ଟ ବ୍ୟକ୍ତି, ଶିକ୍ଷିତ ଯୁବକ ଓ ସାହିତ୍ୟପ୍ରେମୀ ପ୍ରତିଦିନ ସନ୍ଧ୍ୟାର ସାହିତ୍ୟ ଆଲୋଚନା ଆସରରେ ଉପସ୍ଥିତ ହେବାକୁ ଲାଗିଲେ । ଅନ୍ୟମାନଙ୍କ ମଧ୍ୟରେ ରାଧାନାଥଙ୍କ ସହପାଠୀ ବନ୍ଧୁ କୁମାର ବୈକୁଣ୍ଠ ନାଥ ଦେ, ରାଧାନାଥଙ୍କ ସଙ୍ଗାତ ରସିକଚାନ୍ଦ ଦେ, ଜୟକୃଷ୍ଣ ଚୌଧୁରୀ, ଭୋଳାନାଥ ସାମନ୍ତରାୟ ଓ ଗୋବିନ୍ଦ ପ୍ରସାଦ ଦାସ ନିୟମିତ ଏହି ସାରସ୍ୱତ ଆସରରେ ଯୋଗ ଦେଉଥିଲେ ।

ଦାମୋଦରବାବୁ ଆସର ଶେଷରେ ବନ୍ଧୁମାନଙ୍କୁ ଯଥାମାନ୍ୟ ଆତିଥ୍ୟ ପ୍ରଦାନ କରୁଥିଲେ । ସ୍ୱଗୃହରେ ପ୍ରତିଦିନ କିପରି ସାହିତ୍ୟ ଆସର ଅନୁଷ୍ଠିତ ହେବ, ବିବିଧ ବିଷୟ ଚର୍ଚ୍ଚାହେବ, ଯୁବକମାନେ ସାହିତ୍ୟ ପ୍ରତି କିପରି ଆକୃଷ୍ଟ ହେବେ ଏବଂ ନୂତନ ସାହିତ୍ୟ ସୃଷ୍ଟିରେ ବ୍ରତୀହେବେ, ସର୍ବୋପରି ମାତୃଭାଷା ସାହିତ୍ୟର କିପରି ଉନ୍ନତି ସାଧିତ ହେବ, ଏଥିପ୍ରତି ସର୍ବଦା ସେ ଯତ୍ନବାନ ଥିଲେ । ଓଡ଼ିଶାର ପ୍ରାଚୀନ ସାହିତ୍ୟ- ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ, କବିସୂର୍ଯ୍ୟ ବଳଦେବଙ୍କର କାବ୍ୟ ଓ ସଙ୍ଗୀତ ବିଷୟରେ ନାନା ଆଲୋଚନା ହେଉଥିଲା । ଓଡ଼ିଆ ସାହିତ୍ୟର ଉନ୍ନତି ଏବଂ ପ୍ରଚାର ଉଦ୍ଦେଶ୍ୟରେ ସାହିତ୍ୟ ଆସରର କତିପୟ ସଭ୍ୟଙ୍କୁ ନେଇ ଏକ 'ସାହିତ୍ୟ ସଭା' ଗଠନ କରାଯାଇଥିଲା । ଦାମୋଦର ପ୍ରସାଦ ଦାସ ଥିଲେ ଉକ୍ତ ସଭାର ସମ୍ପାଦକ ଏବଂ କୋଷାଧ୍ୟକ୍ଷ । ଅନ୍ୟ ସଭ୍ୟମାନେ ହେଲେ, ଭୋଳାନାଥ ସାମନ୍ତରାୟ, ଜୟକୃଷ୍ଣ ଚୌଧୁରୀ, ଗୋବିନ୍ଦ ପ୍ରସାଦ ଦାସ, ଫକୀରମୋହନ ସେନାପତି ଏବଂ ରାଧାନାଥ ରାୟ । ଓଡ଼ିଆ ସାହିତ୍ୟର ବିକାଶ ଓ ପ୍ରସାର ପାଇଁ ଉକ୍ତ ସଭାର ବିଭିନ୍ନ ଆଭିମୁଖ୍ୟ ମଧ୍ୟରୁ ସର୍ବ ପ୍ରଥମେ ସ୍ଥିର ହୋଇଥିଲା 'ଉତ୍କଳର ସମସ୍ତ ପ୍ରାଚୀନ କାବ୍ୟ ଛାପାଯାଉ । ପ୍ରଥମେ ରସକଲ୍ଲୋଳଠାରୁ କାର୍ଯ୍ୟାରମ୍ଭ କରାଯିବା ଆବଶ୍ୟକ । ଏହାର ବିକ୍ରୟ ଲବ୍ଧ ଅର୍ଥରେ ଅନ୍ୟାନ୍ୟ ପୁସ୍ତକ ଛପାଯିବ । ରସକଲ୍ଲୋଳର ଛାପାଖର୍ଚ୍ଚ ସଂଗ୍ରହ ସକାଶେ ଗୋଟିଏ କମ୍ପାନୀ ସ୍ଥାପିତ ହେବା ଆବଶ୍ୟକ । ଏହାର ଏକ ଅଂଶର ମୂଲ୍ୟ ଯୋଡ଼ିଏ ଟଙ୍କା । ତିନି ଚାରିମାସ ପରିଶ୍ରମରେ ଅଢ଼େଇ ଶତ ଟଙ୍କା ମୂଳଧନ ସଂଗ୍ରହ କରାଗଲା ।

ତତ୍‌ପରେ ଆମ୍ଭେମାନେ ରସକଲ୍ଲୋଳର ଟୀକା କରିବାକୁ ଆରମ୍ଭ କଲୁଁ । ପ୍ରତିଦିନ ରାତ୍ର ୭ଟା ଠାରୁ ୯ଟା ପର୍ଯ୍ୟନ୍ତ ଟୀକା ଲେଖାକାର୍ଯ୍ୟ ଚାଲେ । ଟୀକାଲେଖା ସରିନାହିଁ, ସଭା ବିଚାରିଲା ଯେ, ଯଦି ନିଜର ଗୋଟିଏ ପ୍ରେସ ନଥାଏ 'ରସକଲ୍ଲୋଳ' ଛାପା ହେଲାପରେ ଉକ୍ତ ପୁସ୍ତକ ସମ୍ପୂର୍ଣ୍ଣରୂପେ ବିକ୍ରି ନହେବା ପର୍ଯ୍ୟନ୍ତ, ଅନ୍ୟ ପୁସ୍ତକ ଛାପା ହେବା ପାଇଁ ଅର୍ଥ ମିଳିବ ନାହିଁ । ସେଥିପାଇଁ ଅନେକ କାଳ ଅପେକ୍ଷା କରିବାକୁ ହେବ; କିନ୍ତୁ ନିଜର ଯଦି ଗୋଟିଏ ପ୍ରେସ ଥାଏ, ଏକ ସାଙ୍ଗରେ ଅନେକ ପୁସ୍ତକ ଛାପା ହୋଇପାରିବ । ଏଥିପୂର୍ବେ କଟକରେ ପ୍ରିଣ୍ଟିଂ କୋମ୍ପାନୀର ଆଦର୍ଶରେ ବାଲେଶ୍ୱରରେ ଗୋଟିଏ ପ୍ରିଣ୍ଟିଂ କମ୍ପାନୀ ସ୍ଥାପନ କରାଯିବ । 'ରସକଲ୍ଲୋଳ'ର ଟୀକା କାର୍ଯ୍ୟ ରହିତ ହେଲା । ତାହାର ଛାପା ପାଇଁ ଯେଉଁ ଅର୍ଥ ସଂଗୃହୀତ ହୋଇଥିଲା; ତାହା ଆଉ କୋଷାଧ୍ୟକ୍ଷ ଫେରାଇ ଦେଇନାହାନ୍ତି ।

୧୮୬୮ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱରରେ ପ୍ରେସ୍ କମ୍ପାନୀ ସ୍ଥାପନ କରିବାର କଥା ସ୍ଥିରହେଲା । ସେହି ଛାପାଖାନାର ନାମ ହେଲା ପି.ଏମ୍. ସେନାପତି ଏଣ୍ଡକୋ ଉତ୍କଳ ପ୍ରେସ୍ । ଏକ ଅଂଶର ମୂଲ୍ୟ ପାଞ୍ଚଟଙ୍କା । ସଭାର ଚାରିଜଣ ସଭ୍ୟ କମ୍ପାନୀର ମୂଳଧନ ସଂଗ୍ରହ ସକାଶେ ପଦାକୁ ବାହାରି ପଡ଼ିଲେ । କେହି ପ୍ରେସର ଉପକାରିତା ବୁଝି, କେହି ଲାଭ ପ୍ରତ୍ୟାଶାରେ, କେହିବା ଆମ୍ଭମାନଙ୍କ ପୁନଃପୁନଃ ପ୍ରାର୍ଥନାରେ ପ୍ରେସ୍ କୋମ୍ପାନୀର ଅଂଶ କିଣିବାକୁ ସମ୍ମତ ହେଲେ । ଚାରିପାଞ୍ଚ ମାସ ଅବିଶ୍ରାନ୍ତ ପରିଶ୍ରମରେ ବାରଶତ ଟଙ୍କା ସଂଗୃହୀତ ହୋଇ କୋଷାଧ୍ୟକ୍ଷଙ୍କ ସମୀପରେ ଗଚ୍ଛିତ ହେଲା । (ଆତ୍ମଜୀବନ ଚରିତ-ଫକୀରମୋହନ ଗ୍ରନ୍ଥାବଳୀ-୨ୟ, ୧୯୬୩,କଟକ ଷ୍ଟୁଡେଣ୍ଟଷ୍ଟୋର, ୧୯୬୩ ପୃ- ୪୬)

ଛାପା ପ୍ରେସ୍ ବିଷୟରେ ସଭ୍ୟମାନଙ୍କର କାହାରି ପ୍ରତ୍ୟକ୍ଷ ଜ୍ଞାନ ନଥିବାରୁ ପ୍ରଥମେ ମେଦିନାପୁର ମିସନାରୀ ମାନଙ୍କର ଏକ ଅକର୍ମଣ୍ୟ ପ୍ରେସକୁ କିଣି ବହୁତ ଲଣ୍ଡଭଣ୍ଡ ଅବସ୍ଥା ଭୋଗ କରିବାକୁ ପଡ଼ିଥିଲା । ପରେ କଲିକତାରୁ ସୁପର ରଏଲ କଲମ୍ବିଆନ୍ ପ୍ରେସଟି ଆଣି ଉଭୟ ଓଡ଼ିଆ ଓ ଇଂରାଜୀ ଅକ୍ଷର ସୁନ୍ଦର ଭାବରେ ଛାପା ହୋଇଥିଲା । ଛାପାକାର୍ଯ୍ୟ ଆରମ୍ଭ ହେବାଠାରୁ ଦୁଇତିନି ମାସ ପର୍ଯ୍ୟନ୍ତ ମଫସଲ ଓ ସହରରୁ ଲୋକମାନେ ଦଳଦଳ ଆସି ପ୍ରେସ୍ ଦେଖିବା ପାଇଁ ଭିଡ଼ ଜମାଇ ଥିଲେ । ତତ୍‌ପରେ କୋମ୍ପାନୀର କାର୍ଯ୍ୟ ନିର୍ବାହିକା ସମିତିର ନିଷ୍ପତ୍ତି କ୍ରମେ ଉକ୍ତ ପ୍ରେସ୍‌ରୁ 'ବୋଧଦାୟିନୀ' ଏବଂ 'ବାଲେଶ୍ୱର ସମ୍ବାଦ ବାହିକା' ନାମକ ଖଣ୍ଡିଏ ମାସିକ (ପରେ

ସାପ୍ତାହିକ) ପତ୍ରିକା ପ୍ରକାଶ ପାଇଥିଲା । 'ବୋଧଦାୟିନୀ ରେ ସାହିତ୍ୟ ଅଂଶ ଏବଂ ବାଲେଶ୍ୱର ସମ୍ବାଦ ବାହିକା'ରେ ସମ୍ବାଦ ଅଂଶ ପ୍ରକାଶ ପାଇଥିଲା । ମାତ୍ର ଉପରୋକ୍ତ ପ୍ରେସ୍ ପ୍ରତିଷ୍ଠା ଓ ପତ୍ରିକା ପ୍ରକାଶନ କ୍ଷେତ୍ରରେ ଦାମୋଦର ବାବୁଙ୍କର ବିଶେଷ ତ୍ୟାଗ ଓ ନିଷ୍ଠା ଥିଲା ।

ଉକ୍ତ ସଭାରେ ଅନ୍ୟ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା ଯେ, ଓଡ଼ିଆ ଭାଷାର ବହୁଳ ପ୍ରସାର ନିମନ୍ତେ ମଫସଲରେ ବଡ଼ବଡ଼ ଗ୍ରାମ ମାନଙ୍କରେ ସ୍କୁଲମାନ ସ୍ଥାପନ କରିବା । ହେଲେ ସଭ୍ୟମାନେ ଧନହୀନ ଓ ବିଦ୍ୟାହୀନ ଭଟ୍ଟାଚାର୍ଯ୍ୟ ଥିଲେ । ମାତ୍ର ଦାମୋଦରବାବୁ ଏଭଳି କାର୍ଯ୍ୟପାଇଁ ଖୁବ୍ ଅନୁରାଗୀ ଓ ଯତ୍ନବାନ ଥିଲେ । ସେ ସହପାଠୀ ରାଧାନାଥ ଓ କୁମାର ବୈକୁଣ୍ଠନାଥ ଦେ'ଙ୍କୁ ଏ ଦିଗରେ ପ୍ରବର୍ତ୍ତାଇଥିଲେ । ଫଳରେ ବାଲେଶ୍ୱରଠାରୁ ପଶ୍ଚିମକୁ ତିନିକୋଶ ଦୂରରେ ଅବସ୍ଥିତ ରେମୁଣାର କାୟସ୍ଥ ପଲ୍ଲୀ ନିକଟରେ ଏକ ସ୍କୁଲ ସ୍ଥାପନ କରାଯାଇଥିଲା । ସମସ୍ତ ସଭ୍ୟଙ୍କ ସହିତ ସ୍କୁଲ ଡେପୁଟି ଇନ୍‌ସପେକ୍ଟର ବାବୁ ଶିବ ଦାସ ଭଟ୍ଟାଚାର୍ଯ୍ୟ ମଧ୍ୟ ଉପସ୍ଥିତ ହୋଇଥିଲେ । ନନ୍ଦକୁମାରଙ୍କୁ ଉକ୍ତ ସ୍କୁଲର ପ୍ରଧାନ ଶିକ୍ଷକ ପଦରେ ନିଯୁକ୍ତି କରାଗଲା । ଦୁଇଜଣ ଶିକ୍ଷକ, ଜଣେ ଚାକର ଓ ଅନ୍ୟାନ୍ୟ ବାହାର ଖର୍ଚ୍ଚ ମିଶାଇ ମାସିକ ପଚିଶ ଟଙ୍କା ହାରରେ ବର୍ଷକ ପାଇଁ ଅଗ୍ରିମ ୩୦୦ଟଙ୍କା କୁମାର ବୈକୁଣ୍ଠନାଥ ଦେ ଫକୀରମୋହନଙ୍କୁ ପ୍ରଦାନ କରିଥିଲେ ।

ବାଲେଶ୍ୱରରେ ବ୍ରାହ୍ମଧର୍ମର ଆଦି ପ୍ରଚାରକ ଥିଲେ ପ୍ରସନ୍ନ କୁମାର ଚାଟୁର୍ଯ୍ୟା, ସେ ବଙ୍ଗଦେଶରୁ ବାଲେଶ୍ୱର ନିମକ ମାହାଲକୁ କିରାନୀ ହୋଇ ଆସିଥିଲେ । ଝାଡ଼େଶ୍ୱର ମନ୍ଦିରର ପଶ୍ଚାତ ଭାଗରେ ଥିବା ବସାରେ ରହୁଥିଲେ । ପ୍ରତି ରବିବାର ରାତିରେ ପ୍ରସନ୍ନବାବୁଙ୍କ ବସାରେ ବ୍ରହ୍ମ ଉପାସନା ହେଉଥିଲା । ଉପାସନା ଶେଷରେ ଉପାସକମାନେ ଏକତ୍ର ବସି ମଦ ପାନ କରୁଥିଲେ । 'ଉପାସକ ଆମ୍ଭମାନଙ୍କ ସେହି ସଭାର ସଭ୍ୟ, ଅର୍ଥାତ୍ ଦାମୋଦର ପ୍ରସାଦ ଦାସ, ଗୋବିନ୍ଦ ଦାସ, ଜୟକୃଷ୍ଣ ଚୌଧୁରୀ, ଭୋଳାନାଥ ବାବୁ । ଏମାନଙ୍କୁ ଛାଡ଼ି ସମୟ ସମୟରେ ଅନ୍ୟାନ୍ୟ କେତେଜଣ ସଙ୍ଗୀ ମଧ୍ୟ ଉପାସନାରେ ଯୋଗ ଦିଅନ୍ତି ।' (ଫକୀରମୋହନ ଗ୍ରନ୍ଥାବଳୀ-୨ୟ ସଂ (୧୯୬୩) କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର-ପୃ ୬୫) ଉପାସକମାନେ ପ୍ରକାଶ୍ୟରେ ଗୋଟିଏ ବ୍ରାହ୍ମସମାଜ ସ୍ଥାପନ କରିବାକୁ ସ୍ଥିର କଲେ । ବାଲେଶ୍ୱର ମୋତିଗଞ୍ଜ ବଜାରର ପଶ୍ଚିମ ପାର୍ଶ୍ୱରେ ମୟୂରଭଞ୍ଜ ମହାରାଜାଙ୍କର ଗୋଟିଏ କୋଠା

ଘରଥିଲା । ତାହା ରାଜାକୋଠା ନାମରେ ପରିଚିତ ଥିଲା । ସ୍ୱର୍ଗୀୟ ମହାରାଜା ଶ୍ରୀରାମ ଚନ୍ଦ୍ର ଭଞ୍ଜଦେବ ବ୍ରାହ୍ମ ସମାଜକୁ କୋଠାଟି ଦାନ କରିଥିଲେ । ଫଳରେ ରାଜାଙ୍କ ପୁରାତନ କୋଠାଟି ଭଙ୍ଗାଯାଇ ଗୋଟିଏ ବୃହତ୍ ଉପାସନା ମନ୍ଦିର ସନ ୧୮୬୭-୬୮ ସାଲରେ ନିର୍ମିତ ହୋଇଥିଲା । ବର୍ତ୍ତମାନ ତାହା ସୁଏଲପୁର ଗ୍ରାମରେ ଅବସ୍ଥିତ ।

ଦାମୋଦର ପ୍ରସାଦ ଦାସଙ୍କ ମୃତ୍ୟୁପରେ ତାଙ୍କ ସ୍ୱଗୃହରେ ଅନୁଷ୍ଠିତ ସାହିତ୍ୟ ଆସର ଏବଂ ଗ୍ରନ୍ଥଶାଳାକୁ ପାଠକ ମାନଙ୍କର ଆଗମନ ସମ୍ପୂର୍ଣ୍ଣ ବନ୍ଦ ହୋଇଯାଇଥିଲା । କିଛି ବର୍ଷ ଲାଇବ୍ରେରୀଟି ବନ୍ଦ ହୋଇ ରହିବା ପରେ ରାଜାବାହାଦୁର ବୈକୁଣ୍ଠ ନାଥ ଦେ ଦାମୋଦର ବାବୁଙ୍କ ସ୍ତ୍ରୀଙ୍କଠାରୁ ଉକ୍ତ ଗ୍ରନ୍ଥାଳୟକୁ କ୍ରୟକରି ନେଇଥିଲେ । କେବଳ ସେତିକି ନୁହେଁ, ଅଂଶୀଦାର ମାନଙ୍କ ମଧ୍ୟରେ ମନାନ୍ତର ଘଟିବାରୁ 'ଉତ୍କଳ ପ୍ରେସ୍'ଟିକୁ ମଧ୍ୟ ବୈକୁଣ୍ଠନାଥ ଦେ ବାହାଦୁର ସମସ୍ତଙ୍କ ଠାରୁ କ୍ରୟକରି 'ଦେ'ଙ୍କ ଉତ୍କଳ ପ୍ରେସ୍ ନାମରେ ନାମିତ କରିଥିଲେ ।

ଦୁଃଖର ବିଷୟ ଫକୀରମୋହନ 'ଉତ୍କଳ ଭ୍ରମଣ'ରେ ତାଙ୍କ ବିଷୟରେ କିଛି ଲେଖି ନାହାନ୍ତି । ଅଥଚ ସ୍ୱୀୟ ଜୀବନ ଚରିତରେ କେତେକ ଜାଗାରେ ତାଙ୍କ ପ୍ରସଙ୍ଗରେ କେତେକ କଥା ଲେଖିଛନ୍ତି । ଓଡ଼ିଆ ଭାଷା ସାହିତ୍ୟର ସଂକଟ କାଳରେ ଓଡ଼ିଶାର ସାମାଜିକ ଜୀବନରେ ଶିକ୍ଷାର ପ୍ରସାର ଏବଂ ଭାଷା ସାହିତ୍ୟର ଉନ୍ନତି ପାଇଁ ଦାମୋଦର ପ୍ରସାଦ ଯେଉଁ ଆନ୍ତରିକ ଉଦ୍ୟମ କରିଥିଲେ, ସେଥିପାଇଁ ସେ ଏ ଜାତି ଠାରେ ସ୍ମରଣୀୟ ହୋଇ ରହିବେ, ଏଥିରେ ସନ୍ଦେହ ନାହିଁ ।



# ଫକୀରମୋହନଙ୍କ ସହଯୋଗୀ ବନ୍ଧୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ

ବ୍ୟାସକବି ଫକୀରମୋହନ ସେନାପତି ସ୍ୱୀୟ "ଆତ୍ମଜୀବନ ଚରିତ"ରେ ଲେଖିଛନ୍ତି - "ବାଲେଶ୍ୱର ମିସନ୍‌ସ୍କୁଲର ଦ୍ୱିତୀୟ ଶିକ୍ଷକ ପଦ ଖାଲିହେଲା । ସେଥିରେ ମୋର ପରମ ବନ୍ଧୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ନିଯୁକ୍ତ ହେଲେ । ତାଙ୍କର ମାସିକ ବେତନ ସାତଟଙ୍କା ।" (୧)

ଫକୀରମୋହନ ବାଲେଶ୍ୱର ମିସନ୍ ମିଡିଲ୍ ସ୍କୁଲର ପ୍ରଧାନଶିକ୍ଷକ ଦାୟିତ୍ୱରେ ରହିଥିଲେ (୧୮୬୪-୧୮୭୧) ମସିହା ପର୍ଯ୍ୟନ୍ତ । ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ମିସନ୍ ସ୍କୁଲରେ ଦ୍ୱିତୀୟ ଶିକ୍ଷକ ପଦରେ ନିଯୁକ୍ତି ପାଇବା ପୂର୍ବରୁ ଫକୀରମୋହନଙ୍କ ସହିତ ତାଙ୍କର ପରମ ଆତ୍ମୀୟତା ସୃଷ୍ଟି ହୋଇଥିଲା । ପ୍ରଥମତଃ ଫକୀରମୋହନ ଓ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକଙ୍କ ଘର ଏକା ଗାଁମଲ୍ଲିକାଶ ପୁର, ପାଖାପାଖି ଗୋବିନ୍ଦ ପଟ୍ଟନାୟକଙ୍କ ଘର ଡେଇଁଲେ ଫକୀରମୋହନଙ୍କ ବଗିଚା (ଶାନ୍ତିକାନନ) ଓ ତାଙ୍କ ଉଆସ । ଦ୍ୱିତୀୟତଃ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ (୧୮୩୩-୧୮୯୩) ଫକୀରମୋହନ (୧୮୪୩ -୧୯୧୮)ଙ୍କ ଠାରୁ ବୟସରେ ଯଦିଚ ୧୦ ବର୍ଷ ବଡ଼ ତଥାପି ସମସାମୟିକ । ତୃତୀୟତଃ ଫକୀରମୋହନ ପ୍ରଥମେ ଯେଉଁ ବାରବାଟୀ ବଙ୍ଗୋହଳ ବିଦ୍ୟାଳୟ (ପ୍ରାଇଭେଟ୍ ସ୍କୁଲ)ରେ ଛାତ୍ର ଥିଲେ ଏବଂ ପରେ ଏଠାରେ ତୃତୀୟ ଶିକ୍ଷକ ପଦରେ ନିଯୁକ୍ତି (୧୮୬୩) ପାଇଥିଲେ, ଅନୁରୂପ ଭାବରେ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ମଧ୍ୟ ଉକ୍ତ ସ୍କୁଲରୁ ଛାତ୍ରବୃତ୍ତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଏଠାରେ ଜଣେ ଅଧସ୍ତନ (ତୃତୀୟ ଶିକ୍ଷକ) ପଦରେ ନିଯୁକ୍ତି ପାଇଥିଲେ । ଦେଖିବାକୁ ଗଲେ ଉଭୟ ଫକୀରମୋହନ ଓ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକଙ୍କ ଚାକିରୀ ଜୀବନ ଆରମ୍ଭ ହୋଇଥିଲା ଏହି ଅନୁଷ୍ଠାନରୁ । ଅବଶ୍ୟ ଫକୀରମୋହନ କି ଗୋବିନ୍ଦ ପଟ୍ଟନାୟକଙ୍କ ଉକ୍ତ ସ୍କୁଲର

ଛାତ୍ରଜୀବନର ସଠିକ୍ ତାରିଖ ଓ ମସିହା ଜାଣିବା ଆଜି କଷ୍ଟକର । କେବଳ ଫକୀରମୋହନଙ୍କ ବର୍ଣ୍ଣନା ଅନୁଯାୟୀ ସେ ଉକ୍ତ ଅନୁଷ୍ଠାନରେ ୧୮୬୨ରୁ ୧୮୬୩ର ମାତ୍ର ଚାରିମାସ ପର୍ଯ୍ୟନ୍ତ ଚାରିଅଣା ପଇସା ମାସିକ ବେତନ ନଦେଇ ପାରିବାରୁ ତାଙ୍କୁ ସ୍କୁଲ ଛାଡ଼ିବାକୁ ପଡ଼ିଥିଲା ।

ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ସେତେବେଳେ ଫକୀରମୋହନଙ୍କ ଗ୍ରାମର ପଡ଼ୋଶୀ ହୋଇନଥିଲେ । ଚାକିରୀ ଜୀବନରେ ସହରରେ ଜାଗା କିଣି ସ୍ଥାୟୀ ବାସିନ୍ଦା ହେଲେ । ତାଙ୍କର ପ୍ରକୃତ ଘର ବାଲେଶ୍ୱର ସହରଠାରୁ ଦକ୍ଷିଣ-ପଶ୍ଚିମ କୋଣରୁ ପ୍ରାୟ ତିନି କୋଶ ଦୂରବର୍ତ୍ତୀ ଛଣପୁର ଗ୍ରାମରେ ଥିଲା । ବାଳକ ଗୋବିନ୍ଦଚନ୍ଦ୍ର ପ୍ରତ୍ୟହ ପଦବ୍ରଜରେ ଯିବା ଆସିବା କରି ବାଲେଶ୍ୱରକୁ ପଢ଼ିବାକୁ ଆସୁଥିଲେ । ସେତେବେଳେ ଛଣପୁରରୁ ବାଲେଶ୍ୱରକୁ ଯିବା ଆସିବା ଚଲାବାଟ ଖୁବ୍ ଅଣଓସାରିଆ ଥିଲା । ବଣ ବୁଦା, ନାଳ, ଗୋହୀରି ବିଲ, ହିଡ଼ ବାଡ଼ ଡେଇଁ ଆସିବାକୁ ପଡୁଥିଲା । ତାହା ପୁଣି ହେଟା, ଭାଲୁ, ସର୍ପ ସଙ୍କୁଳ ଥିଲା । ବର୍ଷା ଦିନେ ଚଲାରାସ୍ତା ଏକପ୍ରକାର ବନ୍ଦ ହୋଇଯାଏ କହିଲେ ଚଳେ । ରାସ୍ତାକୁ ଅବରୋଧ କରୁଥିବା ତାଳପତ୍ର ଚିରିଚିରି ଆସିବାକୁ ପଡ଼େ । ତଥାପି ବାଳକ ଗୋବିନ୍ଦ ପାଠପଢ଼ା ନିଶାରେ ରାସ୍ତା ମଧ୍ୟର ସମସ୍ତ ପ୍ରକାର ବିପଦକୁ ଭ୍ରୂକ୍ଷେପ ନକରି ସ୍କୁଲର ଜଣେ ନିୟମିତ ଛାତ୍ର ହୋଇ ପାରିଥିଲେ । କଦବା କେହି ସହରବାସୀଙ୍କ ସାଥୀ ପାଇଲେ ସାଙ୍ଗ ହୋଇ ଆସୁଥିଲେ । ନିଜର ପ୍ରଗାଢ଼ ଅଧ୍ୟବସାୟ, ଐକାନ୍ତିକ ଚେଷ୍ଟା, ଅସୀମ କଷ୍ଟସହିଷ୍ଣୁତା ଏବଂ ଅସାଧାରଣ ଧୀଶକ୍ତି ବଳରେ ସେ ଜଣେ ବୃତ୍ତିଧାରୀ ଛାତ୍ର ହେବାର ଗୌରବ ଅର୍ଜନ କରି ସ୍କୁଲଠାରୁ ସ୍ୱଗ୍ରାମର ସମସ୍ତଙ୍କ ପ୍ରିୟପାତ୍ର ହୋଇପାରିଥିଲେ । ଅତଏବ୍ ଗୋବିନ୍ଦଚନ୍ଦ୍ରଙ୍କ ଭଳି ଜଣେ ବୃତ୍ତିଧାରୀ ମେଧାବୀ ଛାତ୍ରଙ୍କ ପରିଚୟ ଗୁଣଗ୍ରାହୀ ଫକୀରମୋହନ ନିଶ୍ଚୟ ବହୁ ଆଗରୁ ପାଇଥିଲେ । ମିସନ ସ୍କୁଲରେ ଶିକ୍ଷକ ଜୀବନରେ ସେମାନଙ୍କ ଦେଶହିତୈଷୀ ଚିନ୍ତା ଓ କାର୍ଯ୍ୟ ଏକ ଥିଲା । କାର୍ଯ୍ୟଦକ୍ଷତା ଓ ଅନାବିଳ ବୁଝାମଣା ପରସ୍ପରକୁ ବନ୍ଧୁତ୍ୱ ସୂତ୍ରରେ ଗୋଟିଏ ହୃଦୟରେ ବାନ୍ଧିରଖିଥିଲା । ଫକୀରମୋହନ ମିସନ ସ୍କୁଲରୁ ଶିକ୍ଷକତା ଛାଡ଼ିବା (୧୮୭୧) ପରେ ପରେ ଗୋବିନ୍ଦଚନ୍ଦ୍ର ମଧ୍ୟ ଶିକ୍ଷକତା ଛାଡ଼ିଥିଲେ । ବାଲେଶ୍ୱରରେ ଯେତେବେଳେ ନୂତନ କରି ଗୁରୁ ଟ୍ରେନିଂ ସ୍କୁଲ ସ୍ଥାପିତ (୧୮୭୨) ହେଲା, ସେତେବେଳେ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ସେଠାରେ ହେଡପଣ୍ଡିତ ଭାବରେ ନିଯୁକ୍ତି ପାଇଲେ । ଫକୀରମୋହନ ତାଙ୍କ ଆଗରୁ ମିସନ ସ୍କୁଲ ଛାଡ଼ି ନୀଳଗିରିର ଦେୱାନ ପଦରେ ନିଯୁକ୍ତି ପାଇଥିଲେ ।

ଗୋବିନ୍ଦଚନ୍ଦ୍ର ଏହି ଅନୁଷ୍ଠାନରେ ଦୀର୍ଘ ଜୀବନ କଟାଇ ଅନୁଷ୍ଠାନର ବହୁବିଧ ଉନ୍ନତି ମୂଳକ କାର୍ଯ୍ୟକରି ସମସ୍ତଙ୍କ ପ୍ରଶଂସାର ପାତ୍ର ହୋଇପାରିଥିଲେ । ଫକୀରମୋହନଙ୍କ କେଉଁଝର ମେନେଜରୀ ପରେପରେ (୧୮୯୨)ରେ ଗୋବିନ୍ଦଚନ୍ଦ୍ରଙ୍କ ମୃତ୍ୟୁ ହୁଏ ୧୮୯୩ ମସିହାରେ ।" "ଗୋବିନ୍ଦଚନ୍ଦ୍ରଙ୍କ ପରି ଉଦ୍‌ଯୋଗୀ ପରିଶ୍ରମୀ ଓ ମିଷ୍ଟଭାଷୀ ଲୋକ ବିରଳ ଦେଖାଯାଆନ୍ତି ।" (୨)

## ବ୍ରାହ୍ମ ଉପାସନାରେ ଯୋଗଦାନ

ଓଡ଼ିଶାର ପଡ଼ୋଶୀ ରାଷ୍ଟ୍ର ବଙ୍ଗଦେଶରେ ସର୍ବ ପ୍ରଥମେ ବ୍ରାହ୍ମଧର୍ମର ପ୍ରଚାର, ପ୍ରସାର ଘଟି ପ୍ରତିଷ୍ଠା ଲାଭ କରିଥିଲା । ସେଠାରେ ଏହାର ମୁଖ୍ୟ ପ୍ରବର୍ତ୍ତକ ଥିଲେ ବିଶିଷ୍ଟ ସାଧକତ୍ରୟୀ, ସମାଜ ସଂସ୍କାରକ ରାଜା ରାମମୋହନ ରାୟ, ମହର୍ଷି ଦେବେନ୍ଦ୍ର ନାଥ ଓ କେଶବ ଚନ୍ଦ୍ର ସେନ୍ (୩) ମାତ୍ର ଓଡ଼ିଶାରେ ବିଶେଷକରି ବାଲେଶ୍ୱର ହେଉଛି ବ୍ରାହ୍ମଧର୍ମ ପ୍ରଚାରର ଆଦିସ୍ଥଳ । କଲିକତା ଆଦି ବ୍ରାହ୍ମସମାଜର ପ୍ରଚାରକ ଈଶାନ୍ ଚନ୍ଦ୍ର ବସୁ ୧୮୬୫ରେ ବାଲେଶ୍ୱରକୁ ଆସି ଧର୍ମପ୍ରଚାର ସହିତ ଭାଷାଚର୍ଚ୍ଚା କରିବା ବିଷୟ ଫକୀରମୋହନ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ପରେ ବାଲେଶ୍ୱର ନିମକ ମାହାଲର ନବନିଯୁକ୍ତ କିରାଣୀ ପ୍ରସନ୍ନ କୁମାର ଚାଟାର୍ଜୀ ନୂଆବଜାରସ୍ଥ ଝାଡ଼େଶ୍ୱର ମନ୍ଦିର ପଶ୍ଚାଦ୍ ଭାଗରେଥିବା ବସାରେ ପ୍ରତି ରବିବାର ରାତ୍ରିରେ ବ୍ରାହ୍ମୋପାସନା କରୁଥିଲେ । ତା'ପରେ ମୋତିଗଞ୍ଜ ବଜାରର ପଶ୍ଚିମ ପାର୍ଶ୍ୱସ୍ଥ ସୁଏଲ୍‌ପୁର ଗ୍ରାମରେ ଥିବା ବାରିପଦା ରାଜାଙ୍କ ମୟୂରଭଞ୍ଜ କୋଠିରେ ପ୍ରକାଶ୍ୟ ଭାବରେ ବ୍ରାହ୍ମଉପାସନା କରାଗଲା । ଏହି ଉପାସନାରେ ବାଲେଶ୍ୱର ଟାଉନର ଯେଉଁ ବିଶିଷ୍ଟ ବ୍ୟକ୍ତିମାନେ ଯୋଗ ଦେଉଥିଲେ, ସେମାନେ ହେଲେ ଦାମୋଦର ପ୍ରସାଦ ଦାସ, ଗୋବିନ୍ଦ ପ୍ରସାଦ ଦାସ, ଜୟକୃଷ୍ଣ ଚୌଧୁରୀ, ଭୋଳାନାଥ ବାବୁ (ସାମନ୍ତରାୟ) ଓ ଫକୀରମୋହନ ସେନାପତି । "ପରବର୍ତ୍ତୀ ସମୟରେ ବାଲେଶ୍ୱର କଲେକ୍ଟରଙ୍କ ହେଡକ୍ଲର୍କ ଜଗବନ୍ଧୁ ଘୋଷ୍, ପଣ୍ଡିତ ରାମକୁମାର ବିଦ୍ୟାରତ୍ନ, ସାଧୁ ଅଘୋର ନାଥ ଗୁପ୍ତ, ବାବୁ ଦ୍ୱିଜଦାସ ଦତ୍ତ (ବାଲେଶ୍ୱର ଜିଲ୍ଲା ସ୍କୁଲ ହେଡମାଷ୍ଟର), ନନ୍ଦଲାଲ ବାନାର୍ଜୀ, ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, ରମାନାଥ ଦାସ, କାଳିନ୍ଦୀ କମିଳା, ଭଗବାନ ଚନ୍ଦ୍ର ଦାସ ଓ ପଦ୍ମଲୋଚନ ଦାସ ପ୍ରମୁଖ ଯୋଗଦେଇ ପ୍ରଚଳିତ ପରମ୍ପରାକୁ ବଜାୟ ରଖାଯାଇଥିଲା । (୪)

## 'ସମ୍ବାଦ ବାହିକା'ର ସମ୍ପାଦନା ଓ ସମ୍ପାଦକ ଦାୟିତ୍ୱ

ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଓଡ଼ିଆ ଭାଷା ସାହିତ୍ୟର ଦୁର୍ଦ୍ଦିନ କାଳରେ ଭାଷା ସାହିତ୍ୟର ସୁରକ୍ଷା ପାଇଁ ଯେଉଁ ଦୁଇଟି ପ୍ରତିନିଧି ଶ୍ରେଣୀୟ ସମ୍ବାଦ ପତ୍ର ବିଶିଷ୍ଟ ଭୂମିକା ଗ୍ରହଣ କରିଥିଲା, ତାହାହେଲା ଉତ୍କଳର ଦୂରଦ୍ରଷ୍ଟା ଗୌରୀଶଙ୍କର ରାୟଙ୍କ ସମ୍ପାଦନାରେ କଟକରୁ ପ୍ରକାଶିତ 'ଉତ୍କଳ ଦୀପିକା' (୧୮୬୬ ସାଲ, ଅଗଷ୍ଟ) ଏବଂ ବାଲେଶ୍ୱରରୁ ଫକୀରମୋହନଙ୍କ ସମ୍ପାଦନାରେ ପ୍ରକାଶିତ 'ବୋଧଦାୟିନୀ ଓ ବାଲେଶ୍ୱର ସମ୍ବାଦ ବାହିକା' (୧୮୬୮ ସାଲ, ଜୁଲାଇ) ।

'ବାଲେଶ୍ୱର ସମ୍ବାଦ ବାହିକା' ମାସିକ ରୂପରେ (୧୮୬୮ ଜୁଲାଇ ରୁ ୧୮୭୧ ଜୁନ୍) ଦୀର୍ଘ ତିନିବର୍ଷକାଳ ପ୍ରକାଶ ପାଇଥିଲା । ଫକୀରମୋହନଙ୍କୁ ଉକ୍ତ ପତ୍ରିକା ପ୍ରକାଶନ ଓ ସମ୍ପାଦନା କ୍ଷେତ୍ରରେ ସହଯୋଗ କରୁଥିଲେ ତାଙ୍କର ମିସନ ସ୍କୁଲର ସହକର୍ମୀ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ । ପତ୍ରିକା ପ୍ରକାଶ ପୂର୍ବରୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ମିସ୍‌ନ ସ୍କୁଲରେ ଦ୍ୱିତୀୟ ଶିକ୍ଷକ ପଦରେ ଯୋଗ ଦେଇଥିଲେ ସେହି ୧୮୬୪ ମସିହା ବେଳକୁ । ଏହାର ପାକ୍ଷିକରୂପ ଆରମ୍ଭହୁଏ ୧୮୭୧ ମସିହା ଜୁଲାଇଠାରୁ । ପାକ୍ଷିକ ରୂପର ଆଦ୍ୟରୁ ସମ୍ପାଦକ ଥିଲେ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ । ୧୮୭୨ ଜୁନ୍ ମାସରେ ଏହାର ପୂର୍ବନାମ ପରିବର୍ତ୍ତିତ ହୋଇ ରହିଲା 'ବାଲେଶ୍ୱର ସମ୍ବାଦ ବାହିକା' । 'ବୋଧଦାୟିନୀ'ର ସାହିତ୍ୟ ଅଂଶ ଠାରୁ 'ସମ୍ବାଦବାହିକା' ସ୍ୱତନ୍ତ୍ର ସମ୍ବାଦଧର୍ମୀ ହୋଇ ୧୮୭୩ ଅକ୍ଟୋବର ୧୫ ତାରିଖ ପର୍ଯ୍ୟନ୍ତ ପ୍ରକାଶ ପାଇ ବନ୍ଦ ହୋଇ ଯାଇଥିଲା । ସେ ପର୍ଯ୍ୟନ୍ତ ଏହା ପି.ଏମ୍. ସେନାପତି ଏଣ୍ଡକୋମ୍ପାନୀ ଯନ୍ତ୍ରାଳୟରୁ ମୁଦ୍ରିତ ହୋଇଥିଲା । ମାତ୍ର କୌଣସି କାରଣବଶତଃ ଅଂଶୀଦାରମାନଙ୍କ ମଧ୍ୟରେ ପରସ୍ପର ଗୃହବିବାଦ ସୃଷ୍ଟି ହେବାରୁ ଏହାର ପ୍ରକାଶନ ପ୍ରାୟ ୯ ମାସ କାଳ (୧୮୭୩ ନଭେମ୍ବରରୁ ୧୮୭୪ ଜୁଲାଇ) ବନ୍ଦ ହୋଇଯାଇଥିଲା । ପୁନଶ୍ଚ ୧୮୭୪ ଅଗଷ୍ଟ ୧ ତାରିଖରୁ ଯେତେବେଳେ ଏହା ବାଲେଶ୍ୱରର 'ଉତ୍କଳ ପ୍ରିଣ୍ଟିଂ କମ୍ପାନୀ' ନାମକ ଏକ ନୂତନ ମୁଦ୍ରାଯନ୍ତ୍ରରୁ ପ୍ରକାଶ ପାଇଲା, ସେତେବେଳେ ଏହାର ଅଗ୍ରଲେଖାରେ ସମ୍ପାଦକ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ଲେଖିଥିଲେ, ଆମ୍ଭେମାନେ ପୁନର୍ବାର ଆଜିଠାରୁ 'ସମ୍ବାଦ-ବାହିକା'କୁ ପାଠକମାନଙ୍କ ହସ୍ତରେ ସମର୍ପଣ କଲୁଁ । ସନ୍ ୧୮୭୩ ମସିହା ନଭେମ୍ବର ମାସ ଆଦ୍ୟରୁ ୧୮୭୪ ଜୁଲାଇ ଶେଷ ପର୍ଯ୍ୟନ୍ତ ୯ ମାସ କାଳ ସମ୍ବାଦ ବାହିକା ପକ୍ଷରେ କାଳ ସ୍ୱରୂପ ହୋଇଥିଲା । ଯେ ପ୍ରକାର ଘଟନା ଘଟିଥିଲା ଏଥିରେ ସମ୍ବାଦ-

ବାହିକା ଯେ ପୁନର୍ବାର ପ୍ରକାଶିତ ହେବ ଏହା ଆମ୍ଭେମାନେ ସ୍ଥିର କରିପାରି ନଥିଲୁଁ । କିନ୍ତୁ କରୁଣାମୟ ପରମେଶ୍ୱରଙ୍କ କୃପାରୁ ପୁନର୍ବାର ପ୍ରକାଶ କରିବାକୁ ସାହସୀ ହେଲୁଁ ।" (୫) ପୁନଶ୍ଚ ସମ୍ପାଦକ ମହାଶୟ ପତ୍ରିକା ପ୍ରତି ଶୁଭ ଦୃଷ୍ଟି ଉଦ୍ଦେଶ୍ୟରେ ଶେଷାଂଶରେ କହିଛନ୍ତି, "ଆମ୍ଭେମାନଙ୍କ କଲେକ୍ଟର ଓ ମାଜିଷ୍ଟ୍ରେଟ୍ ଶ୍ରୀଯୁକ୍ତ ନର୍ମାନ୍ ସାହେବଙ୍କଠାରେ ଏତିକି ପ୍ରାର୍ଥନା ଯେ ଆମ୍ଭମାନଙ୍କ ଭୂତପୂର୍ବ କଲେକ୍ଟର ଓ ମାଜିଷ୍ଟ୍ରେଟ୍ ମହାତ୍ମା ବିମସ୍ ସାହେବ 'ସମ୍ବାଦ ବାହିକା' ପ୍ରତି ଯେ ରୂପ କଟାକ୍ଷପାତ କରୁଥିଲେ ଓ ଏହାର ପୋଷଣ ବିଷୟରେ ଯେପ୍ରକାର ଯତ୍ନ କରୁଥିଲେ, ପ୍ରଶଂସିତ ମହୋଦୟ 'ସମ୍ବାଦ ବାହିକା' ପ୍ରତି ସେରୂପ କଟାକ୍ଷପାତ କରି ପୋଷଣ ବିଷୟରେ ସେହି ପ୍ରକାର ଯତ୍ନ କରନ୍ତୁ ।"

ବାଲେଶ୍ୱର 'ସମ୍ବାଦ ବାହିକା' ର ୭ମ ଭା/୧୨ସଂ (୧୮୭୫) ସାଲରେ ସଂପାଦକ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ପତ୍ରିକାର ଗ୍ରାହକମାନଙ୍କୁ ନିବେଦନ କରି ଲେଖିଥିଲେ- " 'ସମ୍ବାଦ ବାହିକା'ର ଅନ୍ନଦାତା ଗ୍ରାହକ ମହାଶୟମାନେ ! ଆପଣମାନେ ବେଳେ ମାତ୍ର ଅନୁଗ୍ରହକରି 'ସଂବାଦ ବାହିକା'ର ଭରଣ ପୋଷଣ ବିଷୟ ବିବେଚନା କରିବେ । ସଂବାଦବାହିକା ପେଟରେ ଉଦାକନା ଦେଇ ଆପଣମାନଙ୍କର ଦୃତିକାର କାର୍ଯ୍ୟନିର୍ବାହ କରୁଅଛି; ଏଥିରେ କି ଆପଣମାନଙ୍କର ଦୟାହେଉନାହିଁ ? ଆମ୍ଭମାନଙ୍କର ଦୃଢ଼ ବିଶ୍ୱାସ ଯେ, ଆପଣମାନେ 'ବାହିକା' ପ୍ରତି ନିର୍ଦ୍ଦୟ ନୁହଁନ୍ତି । ତେବେ ବିଳମ୍ବ କି ପାଇଁ ?" 'ସମ୍ବାଦ ବାହିକା'ର ସମ୍ପାଦକ ମହାଶୟ ଆଜକୁ ଦୀର୍ଘବର୍ଷ ପୂର୍ବେ ଓଡ଼ିଆ ପତ୍ରିକାର ଗ୍ରାହକମାନଙ୍କ ଉଦ୍ଦେଶ୍ୟରେ ଯାହା କହିଥିଲେ, ଆଜି ବିଂଶ ଦଶକରେ ମଧ ତାହା ଅକ୍ଷରେ ଅକ୍ଷରେ ସତ୍ୟ । ଆଜି ଓଡ଼ିଶାର ଅନ୍ୟାନ୍ୟ ପତ୍ରିକା ତୁଳନାରେ ଓଡ଼ିଆ ପତ୍ରିକା ପାଠକର ଦୁରବସ୍ଥା କଥା ଭାବିଲେ ଦୁଃଖ ଲାଗେ । ପ୍ରାଦେଶିକ ଭାଷାର ପତ୍ରିକାପାଠ ପ୍ରତି ଅନେକ ଉତ୍କଳବାସୀଙ୍କ ଅନ୍ତତଃ ଯେଉଁଳି ରୁଚି ଅଛି, ସେ ତୁଳନାରେ ଓଡ଼ିଆ ପତ୍ରିକା ପ୍ରତି ନାକଟେକା ମନୋଭାବ ଯୋଗୁଁ ପତ୍ରିକା ପ୍ରକାଶନ ସଂସ୍ଥାଗୁଡ଼ିକ ଅଳ୍ପଦିନରେ ତୋରିବାନ୍ଧିବାକୁ ବାଧ ହେଉଛି । ତା' ହୋଇନଥିଲେ ଅନ୍ୟ ସାଧାରଣ ସଂଖ୍ୟା କଥା ଛାଡ଼ନ୍ତୁ, ପୂଜା କି ବିଷୁବ ସଂଖ୍ୟା ଭଳି ବିଶେଷ ସଂଖ୍ୟା ଗୁଡ଼ିକ ବୁକ୍‌ଷ୍ଟଲରେ ବର୍ଷେ ବର୍ଷେ ଝୁଲିବା ସ୍ଥଳେ ପ୍ରାଦେଶିକ ବଙ୍ଗଳା କିମ୍ବା ତେଲୁଗୁ ଭାଷାର ପତ୍ରିକା ଗୁଡ଼ିକ ମାସକ ପୂର୍ବରୁ ଶେଷ ହୋଇ ଯାଉଛି । ତା' ମଧରେ ଯଦି କୌଣସି ବିଶେଷ ସଂଖ୍ୟା ଦରକାର ତାହା ପାଇବା ଦୁଷ୍ପ୍ରାପ୍ୟ ବା କଷ୍ଟକର ହୋଇପଡୁଛି । ଏହାଛଡ଼ା ମାଗଣା ପାଠକ ସଂଖ୍ୟା

କଥା ନକହିବା ଭଲ ।

ସାପ୍ତାହିକ 'ସମ୍ବାଦ ବାହିକା'ରେ ୧୮୭୮ ମସିହା ଜାନୁୟାରୀ ୩ ତାରିଖ ଗୁରୁବାର ସଂସ୍କରଣ ଠାରୁ ୧୮୯୩ ମସିହା ଫେବୃୟାରୀ ୨ୟ ସପ୍ତାହ ସଂସ୍କରଣ ପର୍ଯ୍ୟନ୍ତ ସମ୍ପାଦନା ଦାୟିତ୍ୱରେ ଥିଲେ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ । ମାତ୍ର ଦୁଃଖର ବିଷୟ ୧୮୯୩ ମସିହା ଫେବୃୟାରୀ ୧୨ ତାରିଖ ରବିବାର ରାତ୍ରି ୨ଟା ବେଳେ ତାଙ୍କର ପରଲୋକ ହେଲା । ସେତେବେଳକୁ ତାଙ୍କର ବୟସ ହୋଇଥିଲା ୫୯ବର୍ଷ ୬ମାସ ୩ଦିନ । ସେ ଦୀର୍ଘ ୨୫ ବର୍ଷ 'ସମ୍ବାଦ ବାହିକା'ର ସମ୍ପାଦନା ଦାୟିତ୍ୱ ତୁଲାଇଥିଲେ । ତାଙ୍କ ପରେ ସମ୍ପାଦକ ଦାୟିତ୍ୱ ନେଲେ ଶ୍ରୀଜଗନ୍ନାଥ ପଟ୍ଟନାୟକ । ଜଗନ୍ନାଥ ବାବୁ 'ବାଲେଶ୍ୱର ସମ୍ବାଦ ବାହିକା' ଏବଂ ଏହାର ସମ୍ପାଦକ ଦ୍ୱୟଙ୍କ ଉପରେ ଯେଉଁ ସୁନ୍ଦର ମନ୍ତବ୍ୟଟି ଦେଇଥିଲେ, ତାହା ଏପରି ଥିଲା – "ବାହିକା ତରୁଣ ନାୟକ ଜଗମୋହନ ଫକୀର ମୋହନଙ୍କ କରକମଳରେ ଥାଇ ତରୁଣୀ ସୁଲଭ ରଂଗରସ, ହାସ୍ୟଲାସ୍ୟ-ମୟ ମାଧୁରୀ ଉତ୍କଳରେ ଢାଳି ଦେଇଥିଲା । ପ୍ରବୀଣା ହୋଇ ପ୍ରବୀଣ ନାୟକ ଗୋବିନ୍ଦ ନାୟକଙ୍କ ସଙ୍ଗିନୀ ଥିବାବେଳେ କର୍ତ୍ତବ୍ୟପରାୟଣା ମହାରାଷ୍ଟ୍ର ରମଣୀ ଗୁଣଗାରିମା ଦେଖାଇ ବୁଧ ସମାଜକୁ ବିମୁଗ୍ଧ କରିଥିଲା । ଗୋବିନ୍ଦ ଗୋବିନ୍ଦ ଚରଣାରବିନ୍ଦଙ୍କୁ ଆଶ୍ରୟ ଲଭି, ଆମ୍ଭମାନଙ୍କଠାରୁ ବିଦାୟ ଗ୍ରହଣ କରି ଶାନ୍ତିଧାମକୁ ଚାଲିଗଲେ । ନାଥ ହରାଇ ଅନାଥିନୀ ।" (୬)

ଫକୀରମୋହନଙ୍କଠାରୁ ଗୋବିନ୍ଦଚନ୍ଦ୍ରଙ୍କ ପର୍ଯ୍ୟନ୍ତ ଦୀର୍ଘ ୨୫ବର୍ଷ କାଳ 'ବାଲେଶ୍ୱର ସମ୍ବାଦ ବାହିକା' ଓଡ଼ିଆ ଭାଷା ସାହିତ୍ୟର ସୁରକ୍ଷା, ସାମାଜିକ, ରାଜନୀତିକ, ଆର୍ଥନୀତିକ ଓ ଧର୍ମଗତ ଜୀବନଧାରାରେ ନୂତନ ମୂଲ୍ୟବୋଧ ସଞ୍ଚାର ପାଇଁ 'ଉତ୍କଳ ଦୀପିକା' ପରି ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ।

ଗୋବନ୍ଦଚନ୍ଦ୍ର ବାରବାଟୀ ଇ. ଟି. ସ୍କୁଲର ଶିକ୍ଷକତା ସହିତ ପତ୍ରିକା ସମ୍ପାଦନା ଭଳି ଏକ ଗୁରୁଦାୟିତ୍ୱ ବହନ କରି ଏହାକୁ ଖୁବ୍ ଦକ୍ଷତାର ସହିତ ତୁଲାଇ ପାରିଥିଲେ । ତଥାପି ପତ୍ରିକା ପ୍ରକାଶ କାଳରେ ତାଙ୍କୁ ବିଭିନ୍ନ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡୁଥିଲା । ଏ ବିଷୟରେ ତାଙ୍କର ନାତି (ରାୟ ସାହେବ ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକଙ୍କ ପୁତ୍ର ଜ୍ଞାନରଞ୍ଜନ ପଟ୍ଟନାୟକ) ଲେଖିଛନ୍ତି, " ମୋ ପିତାମହ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ କବି (ଫକୀର ମୋହନ ସେନାପତି)ଙ୍କର ସହକର୍ମୀ ଅନ୍ତରଙ୍ଗ ବନ୍ଧୁ ଥିଲେ । ଫକୀରମୋହନ ଓ ତାଙ୍କର ବନ୍ଧୁ ମାନଙ୍କ ଅକ୍ଳାନ୍ତ ଚେଷ୍ଟା ଫଳରେ ବାଲେଶ୍ୱରରେ ଓଡ଼ିଆ ଭାଷା ରହିପାରିଥିଲା । ମୋର ପିତାମହ ଏହି କାର୍ଯ୍ୟରେ ଅଗ୍ରଣୀ ଥିବାରୁ ଓ

ସେ ସମୟର ଖବର କାଗଜ 'ସମ୍ବାଦ ବାହିକା'ର ସମ୍ପାଦକ ହିସାବରେ ଖବର କାଗଜରେ ଏଥିପାଇଁ ଲେଖାଲେଖି କରୁଥିଲେ । ଆମ ଘରେ ସେ ସମୟରେ ତିନିଥର ନିଆଁ ଲାଗିଲା । ମୋର ପିତାମହଙ୍କ ବିଶ୍ୱାସ ଆକ୍ରୋଶରେ ଆମ ଘରେ ନିଆଁ ଲଗାଯାଇଥିଲା । ସେଥିପାଇଁ ଆମର ପକ୍‌କା ଘର ତିଆରି ହେଲା । (୭)

## ମୌଳିକ ସମ୍ପାଦନା

'ସମ୍ବାଦ ବାହିକା'ର ମୌଳିକ ସମ୍ପାଦନା ପାଇଁ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ ଓଡ଼ିଆ ଜାତି ଠାରେ ଚିରନମସ୍ୟ ହୋଇପାରିଛନ୍ତି । ଓଡ଼ିଆ ଭାଷାର ସୁରକ୍ଷା, ଓଡ଼ିଆ ଜାତି ଓ ଦେଶର ଉନ୍ନତି, ଓଡ଼ିଆ ସାହିତ୍ୟ ସଂସ୍କୃତିର ବିକାଶ ତଥା ଓଡ଼ିଆ ମାନଙ୍କର ବିବିଧ ସମସ୍ୟା ଉତ୍‌ଥାପନ କରି 'ସମ୍ବାଦ ବାହିକା'ରେ ଦୀର୍ଘ ୨୫ ବର୍ଷକାଳ ସେ ଯେଉଁ ସଂଗ୍ରାମ ଚଳାଇଥିଲେ, ସେଥିପାଇଁ ଏ ଜାତି ତାଙ୍କ ଠାରେ ଚିରଋଣୀ । ତାଙ୍କର ମୌଳିକ ସମ୍ପାଦନା ମୂଳରେ ଥିଲା ଏହାର ଆଦ୍ୟ ସମ୍ପାଦକ ଫକୀରମୋହନଙ୍କ ଆଦର୍ଶର ଅନୁପ୍ରେରଣା । ତାଙ୍କର ଏଭଳି ସ୍ୱକୀୟ ମୌଳକ ସମ୍ପାଦକୀୟ ମନ୍ତବ୍ୟ ଗୁଡ଼ିକ ହେଉଛି – ପ୍ୟାରୀ ମୋହନ ଆଚାର୍ଯ୍ୟ ପ୍ରଣୀତ 'ଓଡ଼ିଆ ସାହିତ୍ୟର ଇତିହାସ' ସପକ୍ଷରେ (ସଂ.ବା – ୧୩ଶଭା/୮ମ ସଂ, ତା ୧୯।୨।୮୦ ଏବଂ ୧୩ଶଭା/ ୧୩ ସଂ, ତା ୨୫।୩।୧୮୮୦), 'ଓଡ଼ିଆ ଭାଷାର ଅବସ୍ଥା' (ପୁନର୍ବାର ବଙ୍ଗଳା ଶିକ୍ଷାର ପ୍ରସ୍ତାବ – ସଂ. ବା – ୧୧ଶ ଭା/ ୧୬ ସଂ, ତା ୧୮।୪।୧୮୭୮), ବିବିଧ ସଂବାଦ ପ୍ରସଙ୍ଗରେ ରେଭେନ୍‌ସା ସାହେବଙ୍କ ଓଡ଼ିଆ ଭାଷା-ପ୍ରୀତି (ସଂ. ବା – ୭ମ ଭା/ ୫ ସଂ, ତା୧।୧୦।୧୮୭୪), ଓଡ଼ିଶାର ଅବସ୍ଥା ଓଡ଼ିଆ ଭାଷା ଏବଂ ଓଡ଼ିଶାର ବନ୍ଧୁ କମିଶନର ରେଭେନ୍‌ସା ସାହେବ (ସଂ.ବା – ୭ମ ଭା/ ୨୫ସଂ, ତା ୧୬।୨।୧୮୭୫), ଓଡ଼ିଶାରେ ଶିକ୍ଷାଦାନ ଅବସ୍ଥା, ଓଡ଼ିଶାରେ ହାଇସ୍କୁଲ ଓ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା, ଓଡ଼ିଶାରେ କଲେଜ ଆବଶ୍ୟକ, ବାଲେଶ୍ୱର ନର୍ମାଲ ସ୍କୁଲ ପ୍ରସଙ୍ଗ (ସଂ.ବା – ୭ମ ଭା/ ୧୩ଶସଂ, ତା ୧୬।୨।୧୮୭୫), ଓଡ଼ିଶାରେ ଉଚ୍ଚ ଶିକ୍ଷାର କ୍ରମଶଃ ଉନ୍ନତି (ସଂ.ବା ୯ମ ଭା/ ୬ଷ୍ଠସଂ, ତା ୧।୧୧।୧୮୭୬), କଟକ କଲେଜ (ସଂବାଦ ବାହିକା ୧୧ ଭା/ ୬ସଂ, ତା ୭।୨।୧୮୭୮), ଓଡ଼ିଶାରେ କଲେଜ ସ୍ଥାପନ (ସଂ.ବା ୧୩ଶଭା/୧୨ସଂ, ତା ୧୮।୩।୧୮୮୦), ଲୋଏର ଭର୍ଣ୍ଣକ୍ୟୁଲର ପରୀକ୍ଷା ଫଳର ସମାଲୋଚନା (ସଂ. ବା – ୧୩ଭା/ ୭ମ ସଂ, ତା ୧୨।୨।୮୦), ରେଭେନ୍‌ସା କଲେଜର ପ୍ରଥମ ଉତ୍ତୀର୍ଣ୍ଣ ଛାତ୍ର (ସଂ-ବା ୧୩ଶଭା/୬ଷ୍ଠସଂ, ତା ୫।୨।୧୮୮୦), ଲକ୍ଷ୍ମଣ ନାଥ ସ୍କୁଲ (ସଂ.ବା

୧୧ଶ।/୧୩ସଂ, ତା ୨୮।୩।୧୮୭୮), କଟକ କଲେଜ ନିମନ୍ତେ ଭେଦା ସଂଗ୍ରହ (ସଂ.ବା- ୮ମଭା/୭ମ ସଂ - ତା ୧୬।୧୧।୧୮୭୪), ଶିକ୍ଷା ପ୍ରତି ଆଗ୍ରହ) ସଂ.ବା - ୧୧ଶ ଭା/ ୨୫ସଂ, ତା ୨୦।୬।୧୮୭୮) ଇତ୍ୟାଦି ବିବିଧ କଥା ।

ସାରସ୍ୱତ ସମ୍ପର୍କ

ରାଧାନାଥ ଯୁଗରେ ବିଶେଷ କରି ବାଲେଶ୍ୱର ଥିଲା ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରାଣକେନ୍ଦ୍ର । ଏହି ସାରସ୍ୱତ ପୀଠରେ ଯେଉଁ ସାଧକମାନଙ୍କର ମହାସମ୍ମେଳନ ଘଟିଥିଲା, ସେମାନେ ହେଲେ ରାଧାନାଥ ରାୟ, ଫକୀର ମୋହନ ସେନାପତି, ମଧୁସୂଦନ ରାଓ, ମଧୁସୂଦନ ଦାସ, ଜୟକୃଷ୍ଣ ଚୌଧୁରୀ, ରାଜା ବୈକୁଣ୍ଠନାଥ ଦେ ବାହାଦୂର, ରାଧାଚରଣ ଦାସ ତଥା ପାଶ୍ଚାତ୍ୟବାସୀ ଜନ୍‌ବାମ୍‌ସ ସାହେବ । ଯେଉଁମାନଙ୍କର ଐକାନ୍ତିକ ଲେଖନୀର ପ୍ରଚେଷ୍ଟା ଓଡ଼ିଆ ଭାଷା ସାହିତ୍ୟର ସ୍ଥାୟିତ୍ୱକୁ ସୁଦୃଢ଼ କରିଥିଲା । ଓଡ଼ିଆ ଭାଷାର ସୁରକ୍ଷା ଓ ଓଡ଼ିଆ ପାଠ୍ୟପୁସ୍ତକ ପ୍ରକାଶନ ନେଇ ଅନେକ ସମୟରେ ଏମାନଙ୍କ ଏକତ୍ର ଆଲୋଚନା ଓ ଉପାୟବିଧାନ ସଭା ବସୁଥିଲା । କୌଣସି ଅନୁଷ୍ଠାନ ଉପଲକ୍ଷେ ସହରର କୌଣସି ବିଶିଷ୍ଟ ବ୍ୟକ୍ତିଙ୍କ ଘରକୁ ଆମନ୍ତ୍ରିତ ଅବସରରେ ଓଡ଼ିଆ ଭାଷା ସାହିତ୍ୟନେଇ ବିବିଧ ଆଲୋଚନାରେ ଆତ୍ମତୃପ୍ତି ଅନୁଭବ କରୁଥିଲେ । ଏମାନଙ୍କ ପରସ୍ପର ମଧ୍ୟରେ ଘନିଷ୍ଠ ବନ୍ଧୁତା ସୃଷ୍ଟି ହୋଇଥିଲା । ବିଶେଷକରି "ଗୋବିନ୍ଦଚନ୍ଦ୍ର ପଟ୍ଟନାୟକଙ୍କର ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଅଧିକାର ଥିବାରୁ ରାଧାନାଥଙ୍କର ସେ ଜଣେ ପରମ ବନ୍ଧୁ ଥିଲେ । (୮) ବ୍ୟକ୍ତିଗତ ଜୀବନରେ ଫକୀରମୋହନଙ୍କର ସେ ଜଣେ ପରମବନ୍ଧୁ, ଏକାନ୍ତ ଶୁଭେଚ୍ଛୁ ଥିଲେ । ତାଙ୍କ ନାତି ଜ୍ଞାନରଞ୍ଜନ ବାବୁଙ୍କ ଉକ୍ତିରେ "କବି (ଫକୀରମୋହନ) ମୋ ପିତାମହଙ୍କ ବନ୍ଧୁଥିବାରୁ ମୋ ବାପାଙ୍କୁ ସେ ନିଜର ପୁଅପରି ଭଲପାଉଥିଲେ ।" (୯) ସେଥିପାଇଁ ଫକୀରମୋହନ 'ଉତ୍କଳ ଭ୍ରମଣ'ରେ ଲେଖିଛନ୍ତି -

"ହେ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ସାଆନ୍ତେ
କେତେଥର ବସି ମୁହିଁ ଭାଳଇ ଏକାନ୍ତେ ।
ଚବିଶି ବରଷକାଳ ଲେଖୁଅଛି ବସି
ଶିଳ ଶିଳପୁଆ ହୋଇଥିଲେ ଯାଆନ୍ତାଣି ଘଷି ।
ପାଚିଲାଣି ନିଶ ସରିଆସୁଛି ଜୀବିକା
ଏ ଉତ୍ତାରେ କେ ଲେଖିବ 'ସମ୍ବାଦ ବାହିକା ।"

ଆଜି ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ନଥିଲେ ମଧ, ତାଙ୍କର ଭାଷାପ୍ରୀତି, କର୍ମନିଷ୍ଠା ଓ ସାଧନା ତାଙ୍କୁ ଏ ଜାତିଠାରେ ଚିର ସ୍ମରଣୀୟ ରଖିଥିବ ।

## ପାଦଟୀକା

୧. ଫକୀର ମୋହନ ଗ୍ରନ୍ଥାବଳୀ (୧୯୫୭) ଆତ୍ମଜୀବନ ଚରିତ - ପୃ-୧୬

୨. ରାଧାନାଥ ଜୀବନୀ - ଦୁର୍ଗାଚରଣ ରାୟ (୧ମସଂ -୧୯୪୧) ପୃ -୪୩

୩. ଫକୀର ମୋହନ ଗ୍ରନ୍ଥାବଳୀ (୧୯୫୭) ଆତ୍ମଜୀବନ ଚରିତ - ପୃ-୨୮

୪. ଓଡ଼ିଆ ସାହିତ୍ୟର ଇତିହାସ - ଡ. ନଟବର ସାମନ୍ତରାୟ (୨ୟ ସଂ. - ୧୯୮୩) - ପୃ - ୪୫

୫. ସମ୍ବାଦ ବାହିକା ୬ଷ୍ଠ ଭା- ତା ୧।୮।୧୯୭୪ ମସିହା । (ସମ୍ବାଦ ବାହିକା, ନୂତନ ପ୍ରସ୍ଥ ୧ମ ଭାଗ ୧ମ ସଂ, ୧୯୭୦, ପୃ - ୬

୬. ବାଲେଶ୍ୱର ସମ୍ବାଦ ବାହିକା - ତା ୩।୮।୧୮୯୯ ମସିହା (ସମ୍ବାଦ ବାହିକା ନୂତନ ପ୍ରସ୍ଥ, ବ୍ୟାସ କବି ସ୍ମୃତି ସଂଖ୍ୟା, ୧ମ ଭା/ ୧ମ ସଂ/ ୧୯୭୦ - ପୃ -୩

୭. ଫକୀର ମୋହନ ପରିକ୍ରମା (୧୯୫୫) - ଫକୀର ମୋହନ ସାହିତ୍ୟ ପରିଷଦ, ବାଲେଶ୍ୱର ପୃ - ୪୩

୮. ରାଧାନାଥ ଜୀବନୀ - ଦୁର୍ଗା ଚରଣ ରାୟ (୧୯୪୧), ପୃ - ୪୩

୯. ଫକୀର ମୋହନ ପରିକ୍ରମା (୧ମ ୭୦-୧୯୫୫) - ଫକୀର ମୋହନ ସାହିତ୍ୟ ପରିଷଦ, ବାଲେଶ୍ୱର ପୃ - ୪୩

୧୦. ଉତ୍କଳ ଭ୍ରମଣ (ଫକୀରମୋହନ ଗ୍ରନ୍ଥାବଳୀ ୧୯୫୭), ପୃ - ୬୫୫



# ଫକୀରମୋହନଙ୍କ ହିତୈଷୀ ବନ୍ଧୁ
# ହାଲମ୍ ସାହେବ

ବାଲେଶ୍ୱର ଗଭର୍ଣ୍ଣମେଣ୍ଟ ସ୍କୁଲର ସେକେଣ୍ଡ ମାଷ୍ଟର ବାବୁ ଶିବଚନ୍ଦ୍ର ସୋମ ବାରବାଟୀ ଗ୍ରାମରେ ଗୋଟିଏ ବେସରକାରୀ ଓ ସରକାରୀ ସାହାଯ୍ୟକୃତ 'ବଙ୍ଗୋତ୍କଳ ବିଦ୍ୟାଳୟ' ସ୍ଥାପନ କରିଥିଲେ । ସୋମବାବୁ ଉକ୍ତ ବିଦ୍ୟାଳୟର ସମ୍ପାଦକ ଥିଲେ । ସ୍କୁଲରେ ଉଭୟ ବଙ୍ଗଳା ଓ ଓଡ଼ିଆ ପାଠ୍ୟପୁସ୍ତକ ପଢ଼ାଯାଉଥିଲା । ସୋମବାବୁ ଉକ୍ତ ସ୍କୁଲର ପ୍ରଥମ ଶ୍ରେଣୀର ଛାତ୍ର ଫକୀରମୋହନଙ୍କୁ ଡାକିଆଣି ମାସିକ ଅଢ଼େଇଟଙ୍କା ଦରମାରେ ଏହି ସ୍କୁଲରେ ତୃତୀୟ ଶିକ୍ଷକ ପଦରେ (୧୮୬୦)ରେ ନିଯୁକ୍ତି ଦେଇଥିଲେ । ଦୁଇମାସ ପରେ ତୃତୀୟ ମାସକୁ ତାଙ୍କର ମାସିକ ଦରମା ଚାରିଟଙ୍କାକୁ ବଢ଼ାଇଦେଇଥିଲେ । ଏହାପରେ ସେ ବାଲେଶ୍ୱର ମିଶନ ମିଡ଼ିଲ ସ୍କୁଲର ପ୍ରଧାନ ଶିକ୍ଷକ (୧୮୬୪ ରୁ ୧୮୭୧) ପଦରେ ନିଯୁକ୍ତ ହେଲେ । ସେତେବେଳେ ବାଲେଶ୍ୱରରେ ଯେଉଁ କେତେଜଣ ମିଶନାରୀ ଧର୍ମ ପ୍ରଚାରକ ଓ ପାଶ୍ଚାତ୍ୟ ଗୋରା ସାହେବ ଥିଲେ, ସେମାନେ ହେଲେ ରେଭେଣ୍ଡ ଏ. ମିଲ୍ର, ବିଶ୍ନୋଲ୍ଡ୍ ସାହେବ, ଆର. ଏଇଚ.ପଣି ସାହେବ, ମେୟର୍ସ ସାହେବ, ରେଭରେଣ୍ଡ ଇ.ସି.ବି. ହାଲମ ସାହେବ ଏବଂ ଜନ୍ ବିମ୍ସ ସାହେବ ।

ଏ. ମିଲର୍ ସର୍ବଦା ହିନ୍ଦୁ ଏବଂ ହିନ୍ଦୁଧର୍ମ ବିଦ୍ୱେଷୀ ତଥା କ୍ଷଣକୋପୀ ଥିଲେ । ହିନ୍ଦୁ ଦେବତା ପ୍ରତି ଅବଜ୍ଞା, ଦେବପୂଜକ ହିନ୍ଦୁମାନଙ୍କ ପ୍ରତି ଅବିଶ୍ୱାସ, ସୟତାନ ଓ ମିଥ୍ୟାବାଦୀ ମନୋଭାବ ପୋଷଣ ଏବଂ ନିଜର ମୂର୍ଖତାବୋଧ ଜନିତ ଅନ୍ୟାୟ ଚାବୁକ ପ୍ରହାର ତାଙ୍କୁ ହିନ୍ଦୁ ପୀଡ଼କ ସଜାଇ ଶେଷରେ ନିଜ କୃତକର୍ମ ପାଇଁ ଆମେରିକା ମିଶନ ସୋସାଇଟି ଦ୍ୱାରା ବହିଷ୍କୃତ ହୋଇଥିଲେ । ଖ୍ରୀଷ୍ଟଧର୍ମ ପ୍ରଚାର ଉଦ୍ଦେଶ୍ୟରେ ସୁଦୂର ମଫସଲ ଓ ସହରାଞ୍ଚଳରେ ହାଟ, ବଜାର, ମଠ, ମନ୍ଦିର, ଯାନି-ଯାତ୍ରାଦି

ଧର୍ମାନୁଷ୍ଠାନମାନଙ୍କରେ ନିଜର ସହଯୋଗୀ ଭାଇମାନଙ୍କୁ ନେଇ ସେ ଧର୍ମପ୍ରଚାର କରୁଥିଲେ । ବିଶନୋଲ୍ଡ ସାହେବ ବାଲେଶ୍ୱର ଜିଲ୍ଲାର ତତ୍କାଳୀନ କଲେକ୍ଟର ଥିଲେ । ଆର.ଏଇଚ.ପଶି ସାହେବ ଥିଲେ ବାଲେଶ୍ୱର ଜିଲ୍ଲାର ଅସ୍ଥାୟୀ କଲେକ୍ଟର ଏବଂ ମେୟର୍ସ ସାହେବ ଥିଲେ ବାଲେଶ୍ୱର ଜିଲ୍ଲାର ଜଏଣ୍ଟ ମାଜିଷ୍ଟ୍ରେଟ୍ । ହାଲମ ସାହେବ ଏ.ମିଲରଙ୍କ ପରବର୍ତ୍ତୀ ବାଲେଶ୍ୱର ମିଶନ ସ୍କୁଲର ସମ୍ପାଦକ ଥିଲେ । ଏହି ସମୟରେ ବାଲେଶ୍ୱର ଜିଲ୍ଲାର ସ୍ଥାୟୀ କଲେକ୍ଟର ଭାବରେ ନିଯୁକ୍ତ ହେଲେ ଜନ୍ ବିମ୍ସ ସାହେବ ।

ଫକୀରମୋହନଙ୍କ ଜୀବନକାଳରେ ଯେଉଁ କେତେଜଣ ବିଦେଶୀ ସାହେବ ତାଙ୍କୁ ପରବର୍ତ୍ତୀ ଓଡ଼ିଆ ଭାଷା ସାହିତ୍ୟର ସାରଥି ଗଢ଼ିବାରେ ପୂର୍ଣ୍ଣ ଅନୁକୂଳତା ଯୋଗାଇଥିଲେ, ସେମାନେ ହେଲେ ପ୍ରଥମତଃ ହାଲମ ସାହେବ, କଲେକ୍ଟର ବିମ୍ସ ସାହେବ ଏବଂ ପରବର୍ତ୍ତୀ ସମୟରେ କମିଶନର ରେଭେନ୍ସା ସାହେବ । ଅବଶ୍ୟ ହାଲମ୍ ସାହେବଙ୍କୁ ଛାଡ଼ିଦେଲେ ଅନ୍ୟ ଦୁଇଜଣ କେବଳ ଫକୀରମୋହନଙ୍କ ବ୍ୟକ୍ତିଗତ ବନ୍ଧୁ ନଥିଲେ ବରଂ ସମଗ୍ର ଉତ୍କଳବାସୀଙ୍କ ଠାରେ ଅତୀତ ବର୍ତ୍ତମାନ ଓ ଭବିଷ୍ୟତର ବନ୍ଧୁ ଭାବରେ ଚିରସ୍ମରଣୀୟ ହୋଇ ରହିବେ ଏଥିରେ ସନ୍ଦେହ ନାହିଁ ।

ଫକୀରମୋହନ ୧୮୬୪ରେ ବାଲେଶ୍ୱର ମିସନ୍ ମିଡ଼ିଲ ସ୍କୁଲରେ ମାସିକ ଦଶଟଙ୍କା ବେତନରେ ପ୍ରଧାନ ଶିକ୍ଷକ ରୂପେ ଯୋଗଦାନ କରିଥିଲେ । ସେତେବେଳେ ଏ.ମିଲର ସାହେବ ଥିଲେ ଉକ୍ତ ସ୍କୁଲର ସେକ୍ରେଟାରୀ ତଥା ଫକୀରମୋହନଙ୍କ ନିଯୁକ୍ତିଦାତା । ଦ୍ୱିତୀୟ ଶିକ୍ଷକ ପଦରେ ଫକୀରମୋହନଙ୍କ ସହଯୋଗୀ ପରମ ବନ୍ଧୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ସାତଟଙ୍କା ବେତନରେ ଯୋଗ ଦେବାରୁ ପରସ୍ପରର ମଣିକାଞ୍ଚନ ସଂଯୋଗ ହେଲା । ମାତ୍ର ବେଶ କିଛି ଦିନ କାର୍ଯ୍ୟ କଲା ପରେ ଫକୀରମୋହନଙ୍କ ସହିତ ମିଲର ସାବେହଙ୍କର ମନାନ୍ତର ଘଟିଲା । ଏହାର କାରଣ ହେଉଛି ମିଲର ସାହେବଙ୍କ ଅଜ୍ଞତା, ମୂର୍ଖତା, କ୍ଷଣକୋପୀ ସ୍ୱଭାବ, ହିନ୍ଦୁଜାତି ଓ ଧର୍ମ ବିଦ୍ୱେଷୀଭାବ ଜନିତ ଏଥିପାଇଁ ଫକୀରମୋହନ ବାଧ ହୋଇ ସ୍କୁଲ ଚାକିରି ଛାଡ଼ିଦେଲେ । ଅସ୍ଥାୟୀ କଲେକ୍ଟର ଆର.ଏଇଚ. ପଶି ସାହେବ ଏବଂ ଜଏଣ୍ଟ ମାଜିଷ୍ଟ୍ରେଟ ମେୟର୍ସ ସାଙ୍ଗ ହୋଇ ସେତେବେଳେ ଗୋଟିଏ କୋଠରୀରେ ରହୁଥିଲେ । ଫକୀରମୋହନ ସେମାନଙ୍କୁ ବଙ୍ଗଳା ପଢ଼ାଉଥିଲେ । ନିଜର ଆର୍ଥିକ ଦୁରବସ୍ଥା

ସାହେବଙ୍କୁ ଜଣାଇ ବାଲେଶ୍ୱର କଲେକ୍ଟରେଟ୍ ସିରସ୍ତାରେ ସରକାରୀ ମୁନସି କାର୍ଯ୍ୟରେ ୧୮୬୫ରେ ନିଯୁକ୍ତି ପାଇଲେ କିନ୍ତୁ ଅଧ୍ୟାପନା ଜୀବନର ଆନନ୍ଦ, ଜ୍ଞାନ ଚର୍ଚ୍ଚାର ଆତ୍ମତୃପ୍ତି ସେ ସେଠାରେ ପାଇଲେ ନାହିଁ ।

ଇତ୍ୟବସରରେ ରେଭେରେଣ୍ଡ ହାଲମ୍ ସାହେବ ମିଶନ୍ ମିଡ଼ିଲ ସ୍କୁଲର ନୂତନ ସେକ୍ରେଟାରୀ ପଦରେ ନିଯୁକ୍ତ ହେଲେ । ତାଙ୍କର ଅନୁରୋଧ କ୍ରମେ ଫକୀରମୋହନ ବାଲେଶ୍ୱର କଲେକ୍ଟରଙ୍କ ସିରସ୍ତାର ମୁନସି କାର୍ଯ୍ୟ ଛାଡ଼ି ପୁନଶ୍ଚ ମିଶନ ସ୍କୁଲର ପ୍ରଧାନ ଶିକ୍ଷକ ଭାବରେ ୧୮୬୬ରେ ଯୋଗ ଦେଲେ ।

ସେହି ହାଲମ୍ ସାହେବ ଦେଖିବାକୁ ଯେମତି ସୁନ୍ଦର ବପୁବିଶିଷ୍ଟ, ସେମିତି ଗୁଣବାନ୍ ଓ ବିଦ୍ୱାନ ପୁରୁଷ ଥିଲେ । ତାଙ୍କର ମଧୁରଭାଷା, ଶାନ୍ତ କୋମଳ ପ୍ରକୃତି, ସରଳ ସୁନ୍ଦର ବ୍ୟବହାର ଫକୀରମୋହନଙ୍କୁ ଆକୃଷ୍ଟ କରିଥିଲା । ଓଡ଼ିଆ ଭାଷାରେ ତାଙ୍କର ବିଶେଷ ପାରଦର୍ଶିତା ଥିଲା । ଫକୀରମୋହନଙ୍କ ଭାଷାରେ - "ତାଙ୍କର ଓଡ଼ିଆ ଶବ୍ଦ ଉଚ୍ଚାରଣ ଏବଂ ସ୍ୱର ଉଚ୍ଚାରଣ ଉତ୍କଳବାସୀଙ୍କ ସ୍ୱର ପରି ଥିଲା । କଥା କହୁଥିବା ସମୟରେ ଠିକ୍ ଜଣେ ଓଡ଼ିଆ ଲୋକ କଥା କହୁଥିବା ପରି ଶୁଣାଯାଏ ।" (ଆତ୍ମଜୀବନ ଚରିତ - ଫକୀରମୋହନ ସେନାପତି) ଉତ୍କଳବାସୀ ଇଂରେଜ ସାହେବମାନଙ୍କ ଓଡ଼ିଆ ଶିକ୍ଷା ଓ ଶାସନଗତ ସୁବିଧା ପାଇଁ ସେ ଖଣ୍ଡିଏ ଓଡ଼ିଆ ଇଂରାଜୀ ବ୍ୟାକରଣ ପୁସ୍ତକ ରଚନା କରିଥିଲେ । ଉକ୍ତ ପୁସ୍ତକ ପ୍ରଣୟନ ବେଳେ ଫକୀରମୋହନ ତାଙ୍କୁ ସାହାଯ୍ୟ କରିଥିବା ହେତୁ ହାଲମ୍ ଏଥିରେ ତାଙ୍କ ନାମ ଉଲ୍ଲେଖ କରିଯାଇଛନ୍ତି । ଉକ୍ତ ବ୍ୟାକରଣ ପୁସ୍ତକରେ ଓଡ଼ିଆ ସମ୍ପ୍ରଦାନ କାରକ ବିଷୟ ନେଇ ହାଲମଙ୍କ ସହିତ ଫକୀରମୋହନଙ୍କ ମତ ପାର୍ଥକ୍ୟ ସୃଷ୍ଟି ହୋଇଥିଲା । ହାଲମଙ୍କ ମତରେ ଓଡ଼ିଆ କର୍ମ ଓ ସମ୍ପ୍ରଦାନ ଉଭୟ କାରକର ବିଭକ୍ତି 'କୁ' ହୁଏ । ତେଣୁ ସମ୍ପ୍ରଦାନ ସ୍ୱତନ୍ତ୍ରରୂପେ ଉଲ୍ଲେଖ ନିଷ୍ପ୍ରୟୋଜନ ଭାବି ସ୍ୱୀୟ ବ୍ୟାକରଣ ପୁସ୍ତକରୁ ସେ ଏହାକୁ ଉଠାଇ ଦେଇଥିଲେ ।

ସେ ସମୟରେ ଉତ୍କଳରେ ସାହାଯ୍ୟପ୍ରାପ୍ତ ବଙ୍ଗୋତ୍କଳ ବିଦ୍ୟାଳୟମାନଙ୍କରୁ ଶେଷବର୍ଷର ଉତ୍ତୀର୍ଣ୍ଣ ଛାତ୍ରମାନଙ୍କୁ ମାସିକ ଚାରିଟଙ୍କା ଛାତ୍ରବୃତ୍ତି ମିଳିବା ସହିତ ଚାରିବର୍ଷ ସକାଶେ ଇଂରାଜୀ ଶିକ୍ଷା ଦେବାର ନିୟମ ପ୍ରଚଳିତ ହେଲା । ସେବର୍ଷ ବାଲେଶ୍ୱର

ମିଶନ ସ୍କୁଲରୁ କେବଳ ଚାରିଜଣ ଛାତ୍ର ଉତ୍ତୀର୍ଣ୍ଣ ହୋଇଥିଲେ । ସମଗ୍ର ଉତ୍କଳରେ ବାଲେଶ୍ୱର ମିଶନ୍ ସ୍କୁଲ ପ୍ରଥମ ସ୍ଥାନ ଅଧିକାର କରିଥିଲା । ଏଥିରେ ସ୍କୁଲ ସେକ୍ରେଟାରୀ ଗୁଣଗ୍ରାହୀ ହାଲମ୍ ସାହେବ ଖୁସି ହୋଇ ଫକୀରମୋହନଙ୍କର ଦରମା ଦଶଟଙ୍କାରୁ ପଚିଶ ଟଙ୍କାକୁ ବଢ଼ାଇ ଦେଇଥିଲେ ।

ଏ ସମୟରେ ବାଲେଶ୍ୱର କଲେକ୍ଟର ଥାନ୍ତି ଜନ୍ ବିମ୍‌ସ ସାହେବ । ସେ ଜଣେ ଓଡ଼ିଆପ୍ରେମୀ ପ୍ରଜାବତ୍ସଳ ଶାସକ ଥିଲେ । ଓଡ଼ିଆମାନଙ୍କର ପ୍ରକୃତ ହାରିଗୁହାରି ଶୁଣୁଥିବାରୁ ତଥା ଜଣେ ଅସାଧାରଣ ଜ୍ଞାନୀ, ପଣ୍ଡିତ ବ୍ୟକ୍ତି ହୋଇଥିବାରୁ ବାଲେଶ୍ୱର ସିଭିଲିୟାନ୍ ଓ ଉତ୍କଳୀୟ ଶିକ୍ଷିତ ସମ୍ପ୍ରଦାୟଙ୍କଠାରେ ସୁନାମ ଅର୍ଜନ କରିଥିଲେ । ଫକୀରମୋହନ ଲେଖିଛନ୍ତି ବିମସ୍‌ଙ୍କର ଏଗାରଟି ଭାଷାରେ ପାରଦର୍ଶିତା ଥିଲା ଏବଂ ସେ ଆର୍ଯ୍ୟସମ୍ବନ୍ଧୀୟ ପଞ୍ଚଭାଷିକ ବ୍ୟାକରଣ (Comparative Grammer of the Modern Indian Language) ପୁସ୍ତକ ରଚନାରେ ନିଯୁକ୍ତ ଥିଲେ । କିନ୍ତୁ ପ୍ରକୃତରେ ବିମ୍‌ସଙ୍କର ଚଉଦଟି ଭାଷାରେ ( ଯଥା - ପାର୍ସି, ଆରବୀ, ଉର୍ଦ୍ଦୁ, ଗୁଜୁରାଟୀ, ସିନ୍ଧୀ, ଓଡ଼ିଆ, ବଙ୍ଗଳା, ସଂସ୍କୃତ, ତେଲୁଗୁ, ତାମିଲ, ହିନ୍ଦୀ, ଇଂରାଜୀ, ଫରାସୀ, ଓ ଜର୍ମାନୀ) ଦକ୍ଷତା ଥିଲା । (ରାଧାନାଥଙ୍କ ଜୀବନୀ ଦୁର୍ଗାଚରଣ ରାୟ - ପୃ - ୧୨୩) । ଆର୍ଯ୍ୟଭାଷା ସମ୍ବନ୍ଧୀୟ ତାଙ୍କର ବ୍ୟାକରଣ ପୁସ୍ତକ (A comparative Grammer of the Modern Aryan Languages of India) ସାତଗୋଟି ଭାଷା (ହିନ୍ଦୀ, ପଞ୍ଜାବୀ, ଗୁଜୁରାଟୀ, ସିନ୍ଧୀ, ମରାଠୀ, ଓଡ଼ିଆ ଓ ବଙ୍ଗଳା) ଉପରେ ଏକ ତୁଳନାତ୍ମକ ଅଧ୍ୟୟନ । (A Comparative Grammer of the Mordern Aryan Languages of India. John Beames, March 1970 Inner Cover) ଯାହାକୁ ଫକୀରମୋହନ ଭୁଲକ୍ରମେ ପଞ୍ଚଭାଷିକ ବ୍ୟାକରଣ କହିଛନ୍ତି । (ଆତ୍ମଜୀବନ ଚରିତ) ଉକ୍ତ ପୁସ୍ତକ ରଚନା କରିବା ସମୟରେ ତାଙ୍କର ଓଡ଼ିଆ, ବଙ୍ଗଳା, ଓ ସଂସ୍କୃତ ଭାଷାରେ ଜ୍ଞାନ ଥିବା ଜଣେ ପଣ୍ଡିତଙ୍କର ଆବଶ୍ୟକତା ପଡ଼ିଲା । ଫକୀରମୋହନ ଲେଖିଛନ୍ତି, "ମୋର ପରମହିତୈଷୀ ହାଲମ୍ ସାହେବ ମୋତେ ସଙ୍ଗରେ ଘେନିଯାଇ ବିମ୍‌ସଙ୍କ ସହିତ ସାକ୍ଷାତ କରାଇ ଦେଲେ ।" ହାଲମ୍ ସାହେବଙ୍କର ଫକୀରମୋହନଙ୍କ ପ୍ରତି ଏହା ବନ୍ଧୁତ୍ୱର ସୌହାର୍ଦ୍ଦପୂର୍ଣ୍ଣ ସାମାନ୍ୟ ସାହାଯ୍ୟ ହୋଇପାରିଥାଏ କିନ୍ତୁ ଫକୀରମୋହନଙ୍କ ପାଇଁ ଏହି ସାକ୍ଷାତ କେବଳ ଏକ ବ୍ୟକ୍ତି ବିଶେଷଙ୍କ ସାକ୍ଷାତ୍ ନଥିଲା, ବରଂ ଥିଲା ଏକ ବିରାଟ ଜାତିର ସାକ୍ଷାତ । ବିମ୍‌ସଙ୍କ ସହିତ ଫକୀରମୋହନ

ଏଭଳି ସାକ୍ଷାତ୍ ଘଟିନଥିଲେ ସମ୍ଭବତଃ ପରବର୍ତ୍ତୀ ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନର ସେ ବିଜୟୀ ସେନାପତି ହୋଇପାରି ନଥାନ୍ତେ, ଯେ ଓଡ଼ିଆ ଭାଷା-ସାହିତ୍ୟର ଅଭିନବ ରୂପ ବୈଚିତ୍ର୍ୟ ତାଙ୍କ ଲେଖନୀ ମୁନରୁ ମୂର୍ତ୍ତିମନ୍ତ ହୋଇପାରି ନଥାନ୍ତା । ସେହି ବିମ୍ସ ଫକୀରମୋହନଙ୍କୁ କର୍ମମୟ ଜୀବନରେ ବହୁ ସମ୍ମାନାସ୍ପଦ ଚାକିରି ଯୋଗାଇଥିଲେ । ସେଥିପାଇଁ ଫକୀରମୋହନ ଜୀବନକାଳରେ ସର୍ବତ୍ର ତାଙ୍କର ଗୁଣଗାନ କରିଛନ୍ତି ଏବଂ ତାଙ୍କୁ 'ମହାତ୍ମା' ବୋଲି ଆଖ୍ୟା ଦେଇଛନ୍ତି । ତେଣୁ ହାଲମ ସାହେବଙ୍କର ସେ ଦିନର ସେହି ସାମାନ୍ୟତମ ବ୍ୟକ୍ତିଗତ ଉପକାର ଓଡ଼ିଶାବାସୀଙ୍କ ପ୍ରତି ଥିଲା ଏକ ବିରାଟ ଆଶୀର୍ବାଦ । ସେଥିପାଇଁ ସେ ଏ ଜାତିର ଚିର ନମସ୍ୟ ।

ଏହି ସମୟରେ କଟକ ନର୍ମାଲ ଟ୍ରେନିଂ ସ୍କୁଲରେ ଦ୍ୱିତୀୟ ଶିକ୍ଷକପଦ ଶୂନ୍ୟ ହେଲା । ଆର.ଏଲ୍. ମାର୍ଟିନ ସାହେବ ସେ ସମୟରେ ଓଡ଼ିଶା ବଙ୍ଗଳା ଦକ୍ଷିଣ ପଶ୍ଚିମ ବିଭାଗର ସ୍କୁଲ ଇନ୍‌ସ୍‌ପେକ୍ଟର ଥିଲେ । ତାଙ୍କର ପ୍ରଧାନ କାର୍ଯ୍ୟାଳୟ ଥିଲା ମେଦିନୀପୁର । ସେ ଓଡ଼ିଆ ସ୍କୁଲ ପରିଦର୍ଶନରେ ଆସି କଟକରେ ପହଞ୍ଚିଲେ । ଫକୀରମୋହନ ସେହି ପଦପାଇଁ ପ୍ରାର୍ଥୀ କି ନୁହେଁ ତାଙ୍କୁ ସେଠାରେ ନିଯୁକ୍ତି ଦେଲେ ସେ ଆଉ ମନା କରିପାରିବେ ନାହିଁ, କଟକରେ ସ୍ଥାୟୀ ଭାବରେ ରହିବାକୁ ହେବ, ମାସିକ ଦରମା ତିରିଶ ଟଙ୍କା ଇତ୍ୟାଦି ସବିଶେଷ ଲେଖି ସେ ଫକୀରମୋହନଙ୍କ ମତାମତ ଚାହିଁଥିଲେ । ଫକୀରମୋହନ ଦ୍ୱନ୍ଦ୍ୱରେ ପଡ଼ି ହାଲମ୍ ସାହେବଙ୍କୁ ସାକ୍ଷାତ କରି ପରାମର୍ଶ ଲୋଡ଼ିବାକୁ ମନସ୍ଥ କରିଥିଲେ । ଇତ୍ୟବସରରେ ହାଲମ ସାହେବ ବାଲେଶ୍ୱରର ଉତ୍ତରାଞ୍ଚଳ ଜଳେଶ୍ୱର ଇଲାକାରେ ଭ୍ରମଣ କରୁଥାନ୍ତି । ଫକୀରମୋହନ ତାଙ୍କୁ ଭେଟି ସବିଶେଷ ଆଲୋଚନା କଲେ । କିନ୍ତୁ କଟକ ଯିବା ପାଇଁ ସେ ନାସ୍ତିବାଣୀ ପାଇଲେ । ମାତ୍ର କଟକରେ ସେ ଯେଉଁ ଦରମା ପାଇଥାନ୍ତେ, ହାଲମ୍ ସାହେବ ତାଙ୍କ ମାସିକ ଦରମା ପାଞ୍ଚଟଙ୍କା ବଢ଼ାଇ ଦେଇ ତିରିଶ ଟଙ୍କା କରିଦେଲେ ।

ପରଦିନ ବାଲେଶ୍ୱର ବାହୁଡ଼ା ପଥରେ ବସ୍ତା ଚଟିଘରେ ପାଲିଙ୍କି ଖଣ୍ଡିଏ କରି ବହୁ କଷ୍ଟରେ ଫକୀରମୋହନ ମଲ୍ଲିକାଶପୁର ଘରକୁ ଫେରିଲେ । ନିଜର ସାହାହୀନ ଅବସ୍ଥା, ଜ୍ୱର ଓ ପାଣିବସନ୍ତ ଜନିତ ଶାରୀରିକ ଯନ୍ତ୍ରଣାବୋଧ ମଧ୍ୟରେ ନିଃସହାୟ ଶିଶୁପରି ଶୋଇବା ଘରର ଦୁଆର ମୁହଁରେ ବସି କାନ୍ଦୁଥିଲେ । ପ୍ରାଣାଧିକ ନାତିର ଏଭଳି ଅବସ୍ଥା ଦେଖି ଠାକୁମା କୋଟିଲା ଦେଇ ଅନ୍ତରର କୋହ ସମ୍ଭରଣ ନକରି

ପାରି କାନ୍ଦିକାନ୍ଦି ପଚାରିଲେ, 'ତୁ କଟକ ନ ଯିବୁ ନାହିଁ, ସାହେବ ତୋତେ କିଆଁ ମାଇଲା କହ ? ଫକୀରମୋହନ ଉତ୍ତର ଦେଲେ ସାହେବ ମାରି ନାହାନ୍ତି ସେ ଜ୍ୱର ଓ ବସନ୍ତ ରୋଗରେ ଆକ୍ରାନ୍ତ । ଯେଉଁ ସାହେବ ଫକୀରମୋହନଙ୍କୁ ବନ୍ଧୁତୁଲ୍ୟ କର୍ମକ୍ଷେତ୍ରରେ ଏତେ ସାହାଯ୍ୟ କରିଥିଲେ, ସେ ଯେ ତାଙ୍କୁ ମାରିଲେ ଏଭଳି ଧାରଣା ଠାକୁମାଙ୍କର ସୃଷ୍ଟି ହେବାର ମୂଳ କାରଣ ଥିଲା ତାଙ୍କର ପୂର୍ବ ସ୍ୱପ୍ନ ଦର୍ଶନ ।

ହାଲମ୍‌ସାହେବଙ୍କର ବନ୍ଧୁତ୍ୱପୂର୍ଣ୍ଣ ସହଯୋଗ, ସହାନୁଭୂତି, ସୌହାର୍ଦ୍ଦ୍ୟ ଲାଭ କରି ଫକୀରମୋହନ ଖୁବ୍, ସୁଖ, ଆନନ୍ଦ ତଥା ପୂର୍ଣ୍ଣ ଉତ୍ସାହର ସହିତ ସ୍କୁଲର ସର୍ବବିଧ ଉନ୍ନତିମୂଳକ କାର୍ଯ୍ୟ କରୁଥିଲେ । ସ୍କୁଲ ଛୁଟି ସମୟରେ ଅଧିକାଂଶ ବେଳେ ପରସ୍ପର ଓଡ଼ିଆ ଭାଷା ସାହିତ୍ୟ ବିଷୟରେ ବିବିଧଚର୍ଚ୍ଚା କରୁଥିଲେ । ଫକୀରମୋହନ ହାଲମ ସାହେବଙ୍କ ଅଧୀନ କର୍ମଚାରୀ ଥିଲେ ମଧ୍ୟ ସାହେବ ସର୍ବଦା ତାଙ୍କୁ ବନ୍ଧୁତୁଲ୍ୟ ମଣୁଥିଲେ । ସେ ନିଜେ ସ୍ୱୀକାର କରିଛନ୍ତି, 'ସ୍କୁଲ ଛୁଟି ଉତ୍ତାରେ ଅନେକ ସମୟରେ ସାହିତ୍ୟ ବିଷୟରେ ତାଙ୍କ ସହିତ ଚର୍ଚ୍ଚା ହୁଏ । ମୁଁ ତାଙ୍କର ଅଧୀନ କର୍ମଚାରୀ ହେଲେ ମଧ୍ୟ ଉକ୍ତ ମହାତ୍ମା ମୋ' ସହିତ ପରମ ଆତ୍ମୀୟ ପରି ବ୍ୟବହାର କରୁଥିଲେ ।

ଫକୀରମୋହନ ଯାହାଫଳରେ 'ଭାରତବର୍ଷର ଇତିହାସ' ୧ମ ଭାଗ (୧୮୭୬) ପୁସ୍ତକଟି ରଚନା କରି ତାଙ୍କରି ସ୍ମୃତି ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିଲେ । ଉକ୍ତ ଉତ୍ସର୍ଗ ପତ୍ରଟି ଏପରି ଥିଲା :

ଉତ୍ସର୍ଗ ପତ୍ର.....

ଭକ୍ତିଭାଜନ ଶ୍ରୀଯୁକ୍ତ ରେଭେରଣ୍ଡ, ଇ.ସି.ବି, ହାଲମ, ସରଳାନ୍ତଃକରଣେଷୁ ।

ମହୋଦୟ !

ମୁଁ ଆପଣଙ୍କ ଅଧୀନରେ କିଛି ଦିନ କର୍ମ କରିଥିଲି । ସେହି ସମୟରେ ଆପଣ ମୋତେ ଅଧୀନସ୍ଥ ଲୋକପରି ଜ୍ଞାନ ନକରି ସୁହୃଦ୍‌ବତ୍ ଜ୍ଞାନ କରୁଥିଲେ । ଏହି କାରଣ ଓ ଅନ୍ୟାନ୍ୟ କାରଣ ପ୍ରଯୁକ୍ତ ଆପଣଙ୍କ ଅଧୀନରେ କର୍ମ କରି ମୁଁ ଅତ୍ୟନ୍ତ ସନ୍ତୁଷ୍ଟତା ଲାଭ କରିଥିଲି । ଏମନ୍ତ କି ତହାଲେ ଯେତେଦୂର ସନ୍ତୁଷ୍ଟତା ଲାଭ କରିଥିଲି ଶିକ୍ଷକତା କର୍ମରେ ନିଯୁକ୍ତ ହେବା ବହୁଦିନ ଠାରୁ ଏପରି ସନ୍ତୁଷ୍ଟତା କୌଣସି ଠାରେ ମୋହ ଅଦୃଷ୍ଟରେ ଘଟିନଥିଲା । ଏମନ୍ତ କି ଆପଣଙ୍କ ସହିତ (ଯେ କୌଣସି

ବିଷୟରେ ହେଉ) କଥାବାର୍ତ୍ତା କହିବାକୁ ମଧ ଅତ୍ୟନ୍ତ ସୁଖକର ବିଷୟ ଜ୍ଞାନକରେଁ । ଆପଣଙ୍କର ସରଳ ନିରହଙ୍କାର ବାକ୍ୟାବଳୀ କଦାଚ ବିସ୍ମରଣୀୟ ନୁହଁଇ । ବିଶେଷରେ ଆମ୍ଭମାନଙ୍କର ଅବସ୍ଥା, ଜ୍ଞାନ ଓ ମାତୃଭାଷାର ଉନ୍ନତି ବିଷୟରେ କାୟମନୋବାକ୍ୟେ ଯେରୂପ ଚେଷ୍ଟା ଓ ଏକାନ୍ତ ଯତ୍ନ କରିଥାଆନ୍ତି ଆପଣଙ୍କ ପ୍ରତି ଭକ୍ତି ଜନ୍ମିବା ତାହା ଅନ୍ୟତମ କାରଣ । ପାର୍ଥିବ କୌଣସି ବସ୍ତୁ ଆପଣଙ୍କର ଏହି ନିଃସ୍ୱାର୍ଥ କାର୍ଯ୍ୟର ପୁରସ୍କାର ଯୋଗ୍ୟ ନୁହଁଇ । ସେ ଯାହାହେଉ ଆମ୍ଭମାନଙ୍କର ଦେଶୀୟ ପ୍ରଥା ଏହି ଯେ, ପରିଚିତ ଲୋକମାନଙ୍କ ମଧରେ କୌଣସି ବସ୍ତୁ ଦିଆନିଆ ହୋଇଥାଏ: ମୁଁ ସେହି ଦେଶାଚାରର ବଶମ୍ବଦ ହୋଇ ଏହି ଅପରିପାଟ୍ୟ ରଚନା ବିଶିଷ୍ଟ ଓ ଭ୍ରମସଙ୍କୁଳ ପୁସ୍ତକଖଣ୍ଡ ଉପହାର ସ୍ୱରୂପ ଆପଣଙ୍କୁ ପ୍ରଦାନ କଲି । ମୋହର ଧ୍ରୁବ ବିଶ୍ୱାସ ଅଛି ଏହି କୁତ୍ସିତ ପୁସ୍ତକ ଆପଣଙ୍କ ମହାମହିମ ନାମରେ କଦାଚ ଉତ୍ସର୍ଗ କରିବାର ଯୋଗ୍ୟ ନୁହଁଇ । ତଥାପି "ପ୍ରିୟଦର୍ଶନ ଲୋକମାନେ କୌଣସି ଲୋକଦତ୍ତ ସାମାନ୍ୟ ବସ୍ତୁକୁ ମଧ ଘୃଣା କରନ୍ତି ନାହିଁ ।" ଏହି ବାକ୍ୟ ପ୍ରତି ନିର୍ଭର କରି ଏହି କ୍ଷୁଦ୍ର ପୁସ୍ତକଖଣ୍ଡ ଆପଣଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କଲି ।

।ଇତି।

ଏକାନ୍ତ ବଶମ୍ବଦ

ଶ୍ରୀ ଫକୀରମୋହନ ସେନାପତି

ଫକୀରମୋହନ ଜୀବନରେ ଯାହାଙ୍କଠାରୁ ସାମାନ୍ୟ ଟିକେ ଉପକାର ପାଇଛନ୍ତି, ସେମାନଙ୍କ ପ୍ରଶଂସା ଲେଖିବାକୁ ବା ଗୁଣଗାନ କରିବାକୁ କେବେ ଭୁଲିଯାଇ ନାହାନ୍ତି । ସେ ଇଂରେଜ ସାହେବ ହୁଅନ୍ତୁ ବା ଉତ୍କଳୀୟ କିମ୍ବା ଭାରତବାସୀ ହୁଅନ୍ତୁ । ଏଥିରୁ ହାଲମ୍ ସାହେବଙ୍କ ପ୍ରତି ତାଙ୍କର ଉଦାର ମାନବିକ ଗୁଣର ପରିଚୟ ମିଳିବା ସହିତ ଉଭୟଙ୍କ ସମ୍ପର୍କର ମଧୁରତା ଓ ଘନିଷ୍ଠତା ସ୍ପଷ୍ଟ ସୂଚିତ ହୁଏ ।



# ଫକୀରମୋହନ ଓ ଜନ୍‌ବୀମ୍‌ସ

"ମୋର ସାଂସାରିକ ସର୍ବପ୍ରକାର ଉନ୍ନତିର ଏକମାତ୍ର ମୂଳାଧାର ମହାତ୍ମା ଜନ୍‌ବୀମ୍‌ସ । ମୋର ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କର ପବିତ୍ର ନାମ ସ୍ମରଣ କରିବି । ତାଙ୍କ ସ୍ୱର୍ଗତଃ ଆତ୍ମାର ସଦ୍‌ଗତି ନିମନ୍ତେ ମୁଁ ପ୍ରତିବର୍ଷ ସକାଳ ସନ୍ଧ୍ୟା ଦୁଇଥର ଉପାସନା ସମୟରେ ପ୍ରଭୁ ପରମେଶ୍ୱରଙ୍କଠାରେ ପ୍ରାର୍ଥନା କରିଥାଏଁ । ମୁଁ ନିତାନ୍ତ ଲଜ୍ଜିତ ହୋଇ ଲେଖୁଅଛି, ମୁଁ ଜଣେ ଦେଶ ହିତୈଷୀ ପଣ୍ଡିତ ବୋଲି ସାହେବ ମହୋଦୟ ସମସ୍ତଙ୍କଠାରେ କହୁଥିଲେ ।" (ଆତ୍ମଚରିତ - ଫ.ଗ୍ର (୨ୟଖଣ୍ଡ) - ଗ୍ରନ୍ଥମନ୍ଦିର, ୧ମ ସଂ - ୨୦୦୨ ମସିହା - ପୃ - ୭୯)

ଏହା ଫକୀରମୋହନ ସେନାପତିଙ୍କର ଏକାନ୍ତ ବ୍ୟକ୍ତିଗତ ହୃଦୟର ମର୍ମବାଣୀ ଥିଲା । ତଥାପି ଏଭଳି ବକ୍ତବ୍ୟ ମଧ୍ୟରେ ସେ ବୀମ୍‌ସ ସାହେବଙ୍କୁ 'ମହାତ୍ମା' ବୋଲି ସମ୍ବୋଧନ କରିଛନ୍ତି ଏବଂ ତାଙ୍କ ମୃତ୍ୟୁରେ ବ୍ୟଥିତହୋଇ ତାଙ୍କର ଅମର ଆତ୍ମାର ସଦ୍‌ଗତି କାମନା କରି ପ୍ରତ୍ୟେହ ସକାଳ ସନ୍ଧ୍ୟାରେ ଈଶ୍ୱରଙ୍କଠାରେ ପ୍ରାର୍ଥନା କରିଛନ୍ତି । ବୀମ୍‌ସଙ୍କ ଭଳି ଜଣେ ସଚ୍ଚୋଟ, କାର୍ଯ୍ୟଦକ୍ଷ, ନିର୍ଭୀକ, ସ୍ପଷ୍ଟବାଦୀ, ସତ୍ୟାଦର୍ଶୀ, କଷ୍ଟ ସହିଷ୍ଣୁ, ପ୍ରଶାସକ, ଐତିହାସିକ, ପ୍ରତ୍ନତତ୍ତ୍ୱବିତ୍ ଓ ସୁଲେଖକ ଓଡ଼ିଶା ମାଟିରେ ଏକ ବିରଳ ବ୍ୟକ୍ତିତ୍ୱ । ଓଡ଼ିଆ ଭାଷା ସାହିତ୍ୟର ସୁରକ୍ଷା, ଓଡ଼ିଆ ଭାଷାର ପ୍ରାଚୀନ ବିଭବକୁ ବିଶ୍ୱଦରବାରରେ ଉପସ୍ଥାପନ, ଭାରତୀୟ ଭାଷା ବିଭବ ମଧ୍ୟରେ ଓଡ଼ିଆ ଭାଷାର ପ୍ରାଚୀନତା ସପକ୍ଷରେ ତୁଳନାତ୍ମକ ନିଜସ୍ୱ ପାଣ୍ଡିତ୍ୟପୂର୍ଣ୍ଣ ଯୁକ୍ତି, ଓଡ଼ିଶାରେ ଶିକ୍ଷାର ବିକାଶ, ଦୁର୍ଭିକ୍ଷର ସ୍ଥାୟୀ ନିରାକରଣ, ବାଣିଜ୍ୟ ବ୍ୟବସାୟର ପ୍ରସାର, ସାମୁଦ୍ରିକ ପୋତାଶ୍ରୟର ଉନ୍ନତି, ଓଡ଼ିଶାର ପ୍ରାଚୀନ ସଂସ୍କୃତି ବିଷୟରେ ଗଭୀର ଅନୁଧ୍ୟାନ, ସାଧାରଣ ଜନତା ପ୍ରତି ନ୍ୟାୟ ପ୍ରଦାନ, ସର୍ବୋପରି ଓଡ଼ିଶା ବାସୀଙ୍କ ପ୍ରତି ଦରଦୀ ମନୋଭାବ ତଥା ଓଡ଼ିଶାର ସର୍ବାଙ୍ଗୀନ ହିତସାଧନ ପ୍ରତି ସତର୍କ ଧ୍ୟାନ ତାଙ୍କର ଓଡ଼ିଶା ମାଟିରେ (୧୮୬୯ - ୧୮୭୮) ୯ ବର୍ଷ ଶାସନ କାଳରେ ଜଣେ ଯୁଗପୁରୁଷ

ଭାବରେ ସ୍ମରଣୀୟ ହେବେ, ଏଥିରେ ସନ୍ଦେହ ନାହିଁ । ଓଡ଼ିଶାକୁ ସେ ମନ ପ୍ରାଣରେ ଭଲ ପାଉଥିଲେ ଏବଂ ଓଡ଼ିଶା ଜନଜୀବନ ସହିତ ସେ ସାମିଲ୍ ଥିଲେ । ସେଥିପାଇଁ ଓଡ଼ିଶା ଛାଡ଼ି ଚାଲିଯାଇଥିଲେ ମଧ୍ୟ ଓଡ଼ିଶାକୁ ଝୁରି ହେଉଥିଲେ । ଏହାଙ୍କ ସହିତ ଆଉଜଣେ ଇଂରେଜ ଶାସକ ତତ୍କାଳୀନ କମିସନ୍‌ର ରେଭେନ୍‌ସା ସାହେବ ନ'ଅଙ୍କ ଦୁର୍ଭିକ୍ଷ ପରବର୍ତ୍ତୀ ଅବସ୍ଥାରେ ଓଡ଼ିଶାର ଶିକ୍ଷା, ସ୍ୱାସ୍ଥ୍ୟ, ବାଣିଜ୍ୟ ଗମନାଗମନାଦି ସହିତ ସାମାଜିକ ଜୀବନର ବିକାଶ ପ୍ରତି ବିଶେଷ ଉଦ୍ୟମ କରିଥିଲେ ମଧ୍ୟ ବୀମ୍‌ସଙ୍କ ଭଳି ଓଡ଼ିଆ ସଂସ୍କୃତିକୁ ଗଭୀର ଭାବରେ ଆପଣାର କରି ଏହାର ବିକାଶ ପ୍ରଚେଷ୍ଟାରେ ପ୍ରୟାସୀ ନଥିଲେ ।

୧୮୫୮ ମସିହାରେ ମାତ୍ର ୨୧ ବର୍ଷ ବୟସରେ ବିଲାତରୁ ଜାହାଜରେ ଭାରତକୁ ଆସି ସିଭିଲ୍ ସର୍ଭିସ୍‌ରେ ଯୋଗଦେଇଥିଲେ । ଦଶବର୍ଷ ପରେ ଛୁଟିରେ ଇଂଲଣ୍ଡ ଯାଇ ପୁନଶ୍ଚ କଲିକତା ୧୮୬୮ ମସିହାରେ ଫେରିଆସିଥିଲେ । ନିଜ ସଂଗରେ ଯୁବତୀ ସ୍ତ୍ରୀ ଓ ଛୋଟ ପରିବାରଧରି ଏକ ଅନାତ୍ମୀୟ ନୂତନ ପରିବେଶ ମଧ୍ୟରେ ହଜାର ହଜାର ମାଇଲ୍ ଦୂରତ୍ୱ ବ୍ୟବଧାନରେ ନିଜର ଦୃଢ଼ ମନୋଭାବ ଓ ଗଭୀର ଆତ୍ମବିଶ୍ୱାସ ମଧ୍ୟରେ ଓଡ଼ିଶାରେ ୯ଟି ବର୍ଷ (୧୮୬୯ - ୧୮୭୮, ଫେବୃଆରୀ ୧୪ ତାରିଖ) କର୍ତ୍ତବ୍ୟ ସଂପାଦନ କରିଥିଲେ । ନିଜର ସ୍ୱାଧୀନ ଚିନ୍ତା, ନ୍ୟାୟ ଓ ସତ୍ୟନିଷ୍ଠ ବିଚାର ଓ ଭାବନାକୁ ସେ ସର୍ବତ୍ର ପ୍ରତିଫଳନ କରି ବଙ୍ଗ ଉଚ୍ଚପଦାଧିକାରୀଙ୍କ ଅପ୍ରୀତିଭାଜନ ହୋଇ ବାରମ୍ବାର ବଦଳିକୁ ଆମନ୍ତ୍ରଣ କରିଛନ୍ତି କିନ୍ତୁ କୌଣସି ପରିସ୍ଥିତିରେ ନିଜର ବ୍ୟକ୍ତିତ୍ୱକୁ ବଳିଦାନ ଦେଇନାହାନ୍ତି, ସେଥିପାଇଁ ସେ ଓଡ଼ିଶାବାସୀଙ୍କ ପ୍ରିୟ ଓ ସ୍ମରଣୀୟ । ଜଣେ କଲେକ୍ଟର ଓ ଜିଲ୍ଲା ମାଜିଷ୍ଟ୍ରେଟ୍, କମିଶନ୍‌ର ଏବଂ ଜଜ୍ ଭାବରେ ତାଙ୍କର ଓଡ଼ିଶା କର୍ମମୟ ଜୀବନ ଅତିବାହିତ ହୋଇଥିଲା । ସାଧୁତା, ନ୍ୟାୟପରାୟଣତା ଓ କଠୋର ଶୃଙ୍ଖଳା ନିଷ୍ଠା ତାଙ୍କୁ ଜଣେ ସୁଦକ୍ଷ ପ୍ରଶାସକ ହେବାର ଗୌରବ ପ୍ରଦାନ କରିଥିଲା ।

ଓଡ଼ିଶାର ପ୍ରତ୍ନତାତ୍ତ୍ୱିକ ବିଭବ ଯଥା ଧଉଳିରେ ଅଶୋକଙ୍କ ଅନୁଶାସନ, ଲଳିତଗିରି ଓ ରତ୍ନଗିରିର ବୌଦ୍ଧ ସ୍ଥାପତ୍ୟ, ବିଭିନ୍ନ ସ୍ଥାନରେ ଉତ୍ପନ୍ନ ଚାଉଳ ତଥା ଚାଉଳ ରପ୍ତାନୀ ଜନିତ ଅର୍ଥନୀତିର ବିକାଶ, ଜଗନ୍ନାଥ ରଥଯାତ୍ରା କାଳୀନ ସେବାୟତ ମାନଙ୍କ ଔଦ୍ଧତ୍ୟ ଓ ଆଧିପତ୍ୟ, ଖଣ୍ଡଗିରିର ଶିଳାଭାସ୍କର୍ଯ୍ୟ, ଗଡ଼ଜାତ ଅନ୍ଧାରୀ ମୂଳକରେ ରାଜାମାନଙ୍କର ସାମନ୍ତବାଦୀ ପ୍ରଜା ଉତ୍ପୀଡ଼ନ, ମହାନଦୀ ବୈତରଣୀ ଓ

ଧାମରା ମୁହାଣ ବାଟେ ସମୁଦ୍ର ଯାତ୍ରାର ରମଣୀୟତା ତାଙ୍କ ଲେଖନୀରୁ ବାଦ୍ ଯାଇନଥିଲା ।

ବୀମ୍ସ ବିଲାତରୁ ଆସି କଲିକତାରେ ପହଞ୍ଚି ଜାଣିବାକୁ ପାଇଲେ, ସେ ବାଲେଶ୍ୱରର ପ୍ରଥମ୍ ଶ୍ରେଣୀର କଲେକ୍ଟର ଓ ମାଜିଷ୍ଟ୍ରେଟ୍ ଭାବରେ ନିଯୁକ୍ତି ପାଇଛନ୍ତି ମାସିକ ଦରମା ଥିଲା ତାଙ୍କର ଟ ୧,୯୧୬ ଙ୍କା । ବାଲେଶ୍ୱରରେ ସେ ପ୍ରାୟ ୪ ବର୍ଷ (୧୮୬୯-୭୩) ରହିଥିଲେ । ସେତେବେଳେ ବାଲେଶ୍ୱର ତାଙ୍କ ଦୃଷ୍ଟିରେ ଯେଭଳି ଥିଲା, ତା'ର ବାସ୍ତବ ରୂପ ବିଷୟରେ ସେ ବର୍ଣ୍ଣନା କରି ଲେଖିଛନ୍ତି, "Balasore I found was a small district, a long narrow strip of flat land between the sea and hills. In one part it was only nine miles broad, though in another it was nearly fifty. The picturesque little town of Balasore lies hudded up on a high bank over hanging the river Burhabalang, about eight miles from the sea as the crowflies. It in a sea port, and strange grimy native craft plythence to ports on the Madras coast laden with rice, the staple commodity of the district. West of the neat, clean town with its tall white houses lies the civil station on an undulation plain. Here are the houses of the European officials, the cuterries and other public buildings, and a settlement of Baptist Missionaries from America who have a chapel with high tower and good houses." (memoirs of a Bengal civilian, London, 1961,)

ବାଲେଶ୍ୱର କଚେରୀ ସନ୍ନିକଟବର୍ତ୍ତୀ ବାୟୁ ସଂଚାଳିତ ଏକ ବିରାଟ କୋଠାରେ ସେ ସପରିବାର ରହୁଥିଲେ । ସମ୍ମୁଖରେ ଏକ ସୁନ୍ଦର ଫୁଲ ଉଦ୍ୟାନ ରହି କୋଠା ଏବଂ ସେ ସ୍ଥାନର ନୀରବତା ଓ ରମଣୀୟତାକୁ ବହୁଗୁଣିତ କରିଥିଲା । ଏଠାରେ ତାଙ୍କର ଦ୍ୱିତୀୟା କନ୍ୟା ଏଡିଥ୍ ମେ, ୩୦ ତାରିଖ ୧୮୬୯ ମସିହାରେ ଜନ୍ମଗ୍ରହଣ କରିଥିଲେ । ଏଠାରେ ଥିବା ସମୟରେ ସେ ନିଉ ସାଉଥ୍ ୱେଲସ୍‌ରୁ ଆମଦାନୀ ହୋଇଥିବା ଏକ ବିରାଟକାୟ ବଲକେଭ ନାମକ ବୃଦ୍ଧ ସାମରିକ ଘୋଡ଼ାକୁ କ୍ରୟ କରିଥିଲେ । ଘୋଡ଼ାଟି ତାଙ୍କର ଖୁବ୍ ବିଶ୍ୱସ୍ତ ଓ ଅନୁଗତ ଥିଲା । ପ୍ରତିଦିନ ଘୋଡ଼ାରେ ଚଢ଼ି ସେ ଲୋକମାନଙ୍କର ସୁବିଧା ଅସୁବିଧା କଥା ବୁଝୁଥିଲେ । ବଙ୍ଗ ନଦୀର ମୁହାଣ ନିକଟବର୍ତ୍ତୀ ବଳରାମ ଗଡ଼ିଠାରେ ଏକ ପୁରୁଣା ଭଂଗା ବଂଗଳା (ଏକଦା ଇଷ୍ଟ

ଇଣ୍ଡିଆ କମ୍ପାନୀର କାରାଖାନା ଘରଟିକୁ ମରାମତି କରାଇ ଜଣେ ଦେଶୀୟ ଧନୀ ବ୍ୟବସାୟୀଙ୍କ ଠାରୁ ଭଡ଼ାରେ ଆଣି ଗ୍ରୀଷ୍ମ ଋତୁରେ ସପରିବାର ବାସ କରୁଥିଲେ । ଦିନ ରାତି ସମୁଦ୍ରରୁ ବହୁଥିବା ଶୀତଳ ପବନ ଯୋଗୁଁ ପଙ୍ଖା ଅନାବଶ୍ୟକ ଥିଲା । ବଙ୍ଗ ନଦୀପଥରେ ବୋଟ୍‌ରେ ପିଇବା ପାଣି ଓ ଅନ୍ୟାନ୍ୟ ସାମଗ୍ରୀ ତାଙ୍କ ପାଇଁ ଆଣିବା ବ୍ୟବସ୍ଥା ଥିଲା । ବୀମ୍‌ସ ସାହେବ ପ୍ରତିଦିନ ଘୋଡ଼ାରେ ଚଢ଼ି ବାଲେଶ୍ୱର ଆସି ଅଫିସ୍ କାର୍ଯ୍ୟ କରୁଥିଲେ ।

ବୀମ୍‌ସ ସାହେବ ଜଣେ ଐତିହ୍ୟ ଅନୁସନ୍ଧିତ୍ସୁ ତଥା ଜ୍ଞାନ ପିପାସୁ ପ୍ରତିଭା ହୋଇଥିବାରୁ ସେ କବି ଦୀନକୃଷ୍ଣଙ୍କ ରଚିତ 'ରସକଲ୍ଲୋଳ' କାବ୍ୟକୁ ଇଂରାଜୀରେ ଅନୁବାଦ କରି ପ୍ରକାଶ କରିଥିଲେ । ଏଥିସହିତ ବାଲେଶ୍ୱର ଜିଲ୍ଲାର The Ruins of Kupari, More Buddist Remains in Orissa (1872), Notes on the histroy of Orissa under the Mohommedan, Maratha ଙ୍କ Engilish Rule (1883), the Jungle Forts of Northern Orissa, Mode of Dating in Orissa, The Indigenous litsature of Orissa, Folklore of Orissa, on the Sub-divisions of the Brahman cast in Northern Orissa, on a copperplate Grant from Balasore ଆଦି ବହୁ ତଥ୍ୟ ସମ୍ବଳିତ ପ୍ରବନ୍ଧ ରଚନା କରି ବିଶ୍ୱମାନସକୁ ଆକୃଷ୍ଟ କରିଥିଲେ ।

ଓଡ଼ିଆ ଜାତୀୟ ଜୀବନର ଏକ ସଂକଟଜନକ କାଳରେ ଜନ୍‌ବୀମ୍‌ସ ବାଲେଶ୍ୱର କଲେକ୍ଟର ଭାବରେ ଯୋଗଦେଇଥିଲେ ଏବଂ ଜାତୀୟ ସ୍ୱାର୍ଥର ସୁରକ୍ଷାପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । ବାଲେଶ୍ୱର ହିଁ ତାଙ୍କୁ ଯୋଗାଇଥିଲା ସାହିତ୍ୟିକ ଜୀବନର ପ୍ରେରଣା । ଏହିଠାରେ ହିଁ ସେ ୧୮୬୬ ମସିହାରୁ ଆରମ୍ଭ କରିଥିବା ବିଖ୍ୟାତ ପୁସ୍ତକ "A com parative Grammar of the mordern Aryan Language of India" କୁ ଅଠର ମାସକାଳ ଅକ୍ଳାନ୍ତ ପରିଶ୍ରମ କରି ଲେଖିବା କାର୍ଯ୍ୟ ଶେଷ କରିଥିଲେ । ତିନିଶହ ଷାଠିଏ ପୃଷ୍ଠା ସମ୍ବଳିତ ଏହି ପୁସ୍ତକଟି ୧୮୭୨ ମସିହାରେ ଲଣ୍ଡନରୁ ପ୍ରକାଶ ପାଇଥିଲା । ଏହି ପୁସ୍ତକ ପାଇଁ ତାଙ୍କର ସୁଖ୍ୟାତି ସମଗ୍ର ୟୁରୋପ ତଥା ଭାରତରେ ବ୍ୟାପି ଯାଇଥିଲା । ଅନେକ ବିଶ୍ୱବିଦ୍ୟାଳୟରେ ଏହା ପାଠ୍ୟପୁସ୍ତକ ରୂପରେ ପ୍ରଚଳିତ ହୋଇଥିଲା । ଓଡ଼ିଆ ସମେତ ଚଉଦଟି ଭାଷାର ଏଥିରେ ଆଲୋଚନା କରାଯାଇଥିଲା । ଫକୀରମୋହନ ଲେଖିଛନ୍ତି, "ଜନ୍ ବୀମ୍‌ସ ସାହେବଙ୍କ ପଞ୍ଚଭାଷିକ ବ୍ୟାକରଣ ଲେଖା ସମୟରେ ସଂସ୍କୃତ, ବଂଗଳା ଓ ଓଡ଼ିଆ ଏହି ତିନି

ଭାଷାରେ ଜ୍ଞାନଥିବା ଜଣେ ପଣ୍ଡିତ ଆବଶ୍ୟକ ହେଲା । ମୋର ପରମ ହିତୈଷୀ ରେଭେରେଣ୍ଡ ଇ.ସି.ବି. ହାଲମ୍ ସାହେବ ମୋତେ ସଂଗରେ ଘେନି ଯାଇ ଜନ୍ ବୀମ୍‌ସ ସାହେବଙ୍କ ସହିତ ପରିଚିତ କରାଇଦେଲେ । ପ୍ରଥମ ସାକ୍ଷାତ୍ ଉତ୍ତାରେ ଜନ୍ ବୀମ୍‌ସ ମହୋଦୟ ସଂସ୍କୃତ ତଦ୍ଧିତ ପ୍ରତ୍ୟୟ ଓ ଅବ୍ୟୟ ଶବ୍ଦ ସମ୍ବନ୍ଧରେ ମୋତେ କେତେଗୋଟି କଥା ପଚାରି ବସିଲେ । ଦୈବାତ୍ ସେଗୁଡ଼ିକର ଉତ୍ତର ସାହେବଙ୍କର ମନୋନୀତ ହେବାରୁ ମୋର ସେହି ଉତ୍ତର ଗୁଡ଼ିକ ତାଙ୍କ ରଚିତ ସେହି ପଞ୍ଚଭାଷିକ ଆର୍ଯ୍ୟଭାଷା ବ୍ୟାକରଣରେ ଯୋଗକରିଦେଲେ । ସାହେବ ମାନଙ୍କ ମହଲରେ ମୁଁ ବିଶେଷ ରୂପେ ପରିଚିତ ହୋଇପଡ଼ିଲି ।" (ଫ.ଗ୍ର ୨ୟଖଣ୍ଡ - ଗ୍ରନ୍ଥମନ୍ଦିର, ୧ମ - ସଂ - ୨୦୦୨ - ପୃ ୭୬) ଫକୀରମୋହନ ଭ୍ରମବଶତଃ ଯାହାକୁ ପଞ୍ଚଭାଷିକ ବ୍ୟାକରଣ ବୋଲି କହିଛନ୍ତି, ପ୍ରକୃତରେ ତାହା ସପ୍ତଭାଷିକ ବ୍ୟାକରଣ ପୁସ୍ତକ । ଉକ୍ତ ପୁସ୍ତକର ଭିତର ପୃଷ୍ଠାରେ ହିନ୍ଦୀ, ପଞ୍ଜାବୀ, ସିନ୍ଧୀ, ଗୁଜୁରାଟୀ, ମରାଠା, ଓଡ଼ିଆ ଏବଂ ବଂଗଳା ଆଦି ସାତଟି ଭାଷା ବିଷୟରେ ଉଲ୍ଲେଖ କରିଛନ୍ତି । ଫକୀରମୋହନ ସେ ସମୟରେ ବାଲେଶ୍ୱର ସାହେବମାନଙ୍କ ମତରେ ଜଣେ ପଣ୍ଡିତ ଭାବରେ ପରିଚିତ ହେଲେ । ସପ୍ତାହରେ ଥରେ ବୀମ୍‌ସ ସାହେବଙ୍କୁ ସାକ୍ଷାତ୍ କରିବାର ଆଦେଶ ମଧ୍ୟ ପାଇଲେ । ଫକୀରମୋହନ ଲେଖିଛନ୍ତି, "କଦାଚିତ୍ ଦିନେ ବା ଦୁଇଦିନ ବିଳମ୍ବ ହୋଇଗଲେ ସାକ୍ଷାତ୍ ହେବା ମାତ୍ରକେ ପଚାରନ୍ତି, ବାବୁ, ମୋ ସହିତ ସାକ୍ଷାତ କରିବାକୁ କି ସକାଶେ ଏତେ ବିଳମ୍ବ କଲ ?" ସାକ୍ଷାତରେ ସାହେବଙ୍କ ସହିତ ପ୍ରାୟହି ଭାଷା ସମ୍ବନ୍ଧରେ ଚର୍ଚ୍ଚା ହୋଇଥାଏ । କେଉଁଦିନ ସଂସ୍କୃତ ଶ୍ଳୋକ, କେବେ ବା ବଂଗଳା ପଦ୍ୟ, ଓଡ଼ିଆ ରସକଲ୍ଲୋଳ, ସାପମନ୍ତ୍ର, ଡାହାଣିମନ୍ତ୍ର ଏହି ସମସ୍ତ ବିଷୟରେ କଥୋପକଥନ ହୋଇଥାଏ ।" (ଫ. ଗ୍ର -୨ୟଖଣ୍ଡ ୧ମ ସଂ - ୨୦୦୨- ଗ୍ରନ୍ଥମନ୍ଦିର - ପୃ ୭୬)

ବାଲେଶ୍ୱରରେ ବାଳିକା ବିଦ୍ୟାଳୟ ପ୍ରତିଷ୍ଠା କରି ନାରୀ ଶିକ୍ଷାର ବିକାଶ ପାଇଁ ଫକୀରମୋହନଙ୍କ ମଧ୍ୟ ବହୁ ଆଶା ସଂଚାର ହୋଇଥିଲା । ଏହାକୁ ସଫଳ କରିବାକୁ ଯାଇ ତାଙ୍କୁ ତତ୍କାଳୀନ ସମାଜର ବହୁ ଗନ୍ୟମାନ୍ୟ ବ୍ୟକ୍ତି, ବାଲେଶ୍ୱର କଚେରୀର ସାନବଡ଼ ଅମଲା ତଥା ରାଜା ଶ୍ୟାମାନନ୍ଦ ଦେବଙ୍କ ଠାରୁ ତାଙ୍କୁ କମ୍ ତାଚ୍ଛଲ୍ୟ ପୂର୍ଣ୍ଣ ସମାଲୋଚନା ଶୁଣିବାକୁ ପଡ଼ିନଥିଲା । ଏଭଳି ପ୍ରତିକୂଳ ପରିସ୍ଥିତିକୁ ଭ୍ରୂକ୍ଷେପ ନକରି ସେ ତାଙ୍କ କର୍ମକ୍ଷେତ୍ରରେ ଅଟଳ ଥିଲେ । ସେ ଲେଖିଛନ୍ତି, "ବାଲେଶ୍ୱରରେ ସ୍ତ୍ରୀ

ଶିକ୍ଷା ପ୍ରଚାର ଏବଂ ଉତ୍କଳ ଭାଷାର ରକ୍ଷା ଓ ପୁଷ୍ଟିସାଧନ ବିଷୟରେ ମୁଁ କଲେକ୍ଟର ଜନ୍‌ବୀମ୍‌ସ ସାହେବଙ୍କଠାରୁ ଯଥେଷ୍ଟ ସହାୟତା ପ୍ରାପ୍ତ ହୋଇଅଛି । ସାହେବ ମହୋଦୟ ମୋତେ ଅନେକ ଥର ଅନେକ ପ୍ରକାର ବିପଦରୁ ରକ୍ଷା କରିଅଛନ୍ତି । ଗୋଟିଏ ମାତ୍ର କଥା କହିଲେ ଯଥେଷ୍ଟ ହେବ, ସାହେବ ମହୋଦୟ ମୋର ପରମ ସହାୟ ଓ ହିତୈଷୀ ଥିଲେ ।" (ଫ. ଗ୍ର -୨ୟଖଣ୍ଡ - ୧ମ ସଂ - ୨୦୦୨ - ଗ୍ରନ୍ଥମନ୍ଦିର - ୭୯)

୧୮୬୬ର ନଅଙ୍କ ଦୁର୍ଭିକ୍ଷ ଓଡ଼ିଶାର ସାମାଜିକ ଜୀବନକୁ ବିପନ୍ନ କରିଦେଇଥିଲା । ଏହାର ଏକ ବାସ୍ତବଚିତ୍ର ଫକୀରମୋହନ ତାଙ୍କ ସ୍ୱରଚିତ ଜୀବନ ଚରିତରେ ଦେଇଛନ୍ତି । ଏହା କେତେ କରୁଣ, ଭୟାବହ ଓ ଲୋମହର୍ଷଣକାରୀ ହୋଇଥିଲା, ତାହା ପ୍ରତ୍ୟେକ ପାଠକ ହୃଦୟକୁ ସ୍ପର୍ଶ କରେ । ନବନିଯୁକ୍ତ କମସନର ରେଭେନ୍‌ସା ସାହେବଙ୍କ ଓଡ଼ିଶାର ଶସ୍ୟସାମଗ୍ରୀ ଗଚ୍ଛିତ ବ୍ୟବସ୍ଥା ଉପରେ ପ୍ରତ୍ୟକ୍ଷ ଜ୍ଞାନର ଅଭାବ, ଆମ ଦେଶୀୟ ଅମଲା ତନ୍ତ୍ରର ଭୁଲ ପରାମର୍ଶ ପ୍ରତି ଆସ୍ଥାଭାଜନ ତଥା ତାଙ୍କ ଦୂରଦୃଷ୍ଟିର ଘୋର ଅଭାବ ସାଧାରଣ ଜୀବନକୁ ବିପନ୍ନ କରିଥିଲା । ଏଥିସହିତ ଓଡ଼ିଆ ଭାଷାକୁ ସ୍କୁଲ ଓ କଚେରୀରୁ ଉଠାଇବା ପାଇଁ ବଙ୍ଗାଳି କର୍ମଚାରୀ ମାନଙ୍କର ଯେଉଁ ହୀନ କୁଚକ୍ରାନ୍ତ ଚାଲିଥିଲା, ତାର ଦୃଢ଼ ମୁକାବିଲା କରିଥିଲେ ଫକୀରମୋହନ । ତାଙ୍କ ନେତୃତ୍ୱକୁ ବଳିଷ୍ଠ ସମର୍ଥନ ଜଣାଇଥିଲେ ବାଲେଶ୍ୱରର ମହାରାଜା ବୈକୁଣ୍ଠନାଥ ଦେ ବାହାଦୁର, ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ, ଜୟକୃଷ୍ଣ ଚୌଧୁରୀ, ଭୋଳାନାଥ ସାମନ୍ତ ରାୟ, ଦାମୋଦର ପ୍ରସାଦଦାସ ଓ ରାଧାନାଥ ରାୟ । ଫକୀରମୋହନ ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନର ସେନାପତି ହୋଇ ପ୍ରେସ୍ ପ୍ରତିଷ୍ଠା ସଂକଳ୍ପରେ ବିଜୟୀ ହୋଇଥିଲେ । ସ୍ୱୀୟ ସମ୍ପାଦନାରେ ପ୍ରକାଶିତ 'ବୋଧଦାୟିନୀ ଓ ବାଲେଶ୍ୱର ସମ୍ବାଦ ବାହିପା' (୧୮୬୮)ରେ ଓଡ଼ିଆ ଭାଷାର ପ୍ରାଚୀନତା ଓ ଏହାର ବହୁଳ ପ୍ରସାରତା ବିଷୟରେ ଲେଖାମାନ ପ୍ରକାଶ କରୁଥିଲେ । ସେହିସମୟରେ କଟକରୁ ଗୌରୀ ଶଙ୍କର ରାୟଙ୍କ ସମ୍ପାଦନାରେ ପ୍ରକାଶିତ 'ଉତ୍କଳ ଦୀପିକା' (୧୮୬୬)ରେ ମଧ୍ୟ ଅନୁରୂପ ପ୍ରବନ୍ଧ ମାନ ପ୍ରକାଶ ପାଇ ଓଡ଼ିଶାର ଜନମାନସକୁ ସଚେତନ କରିବା ସହିତ ଜନମତକୁ ସୁଦୃଢ଼ କରି ଭାଷାଭିତ୍ତିକ ଜାତୀୟ ଅଖଣ୍ଡତା ବଜାୟ ରଖିପାରିଥିଲା । ଫକୀରମୋହନ ଅନ୍ତରର ଦୁଃଖକୁ ପ୍ରକାଶକରି ଲେଖିଛନ୍ତି, "ଉତ୍କଳ ଭାଷା ବିଷୟ ଉଲ୍ଲେଖ ସମୟରେ ବଙ୍ଗାଳି ଶିକ୍ଷକ ଓ ଅନ୍ୟାନ୍ୟ ବଙ୍ଗାଳି ବାବୁମାନେ ଯେପରି ତୁଚ୍ଛ ତାଚ୍ଛଲ୍ୟ ଭାବରେ ମନ୍ତବ୍ୟ ପ୍ରକାଶ କରିଥାନ୍ତି,

ପ୍ରକୃତରେ ଆପଣାର ମାତାକୁ ଅପମାନ କଲାପରି ନିନ୍ଦାକାରିମାନଙ୍କ ପ୍ରତି ବିଷମ କ୍ରୋଧ ଏବଂ ପ୍ରାଣରେ ବଡ଼ ଆଘାତ ଲାଗେ ।" (ଫ. ଗ୍ର ୨ୟଖଣ୍ଡ - ୨୦୦୨, ୧ମ ସଂ, ଗ୍ରନ୍ଥମନ୍ଦିର - ପୃ - ୮୮) ଏଥିସହିତ ଓଡ଼ିଶାରେ ପାଠ୍ୟପୁସ୍ତକର ଘୋର ଅଭାବ ଲକ୍ଷ୍ୟକରି ନିଜେ ମଧ୍ୟ ପାଠ୍ୟ ପୁସ୍ତକାଦି ରଚନା ପାଇଁ ମନୋନିବେଶ କରିଥିଲେ ।

ବାଲେଶ୍ୱର ଜିଲ୍ଲା ସ୍କୁଲର ଓଡ଼ିଆ ଓ ସଂସ୍କୃତ ପଢ଼ାଉଥିବା ପଣ୍ଡିତ ସଦାଶିବ ନନ୍ଦ ଅବସର ନେବାପରେ ତାଙ୍କ ପଦରେ ନିଯୁକ୍ତି ପାଇଲେ ବଂଗବାସୀ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ । ଯାହାଙ୍କର ଓଡ଼ିଆ ଭାଷା ବିଷୟରେ କିଛି ଜ୍ଞାନ ନଥିଲା ଏବଂ ଯେ'କି ଓଡ଼ିଆ ଶବ୍ଦକୁ ବିକୃତି ଭାବରେ ଉଚ୍ଚାରଣ କରୁଥିଲେ । ଫଳରେ ଓଡ଼ିଆ ଭାଷାପ୍ରତି ତାଙ୍କର ଏକ ବୈମାତୃକ ଭାବ ସୃଷ୍ଟି ହୋଇଥିଲା । ଦିନେ କ୍ଲାସରେ ପିଲାମାନଙ୍କୁ କହିପକାଇଲେ, 'ଓଡ଼ିଆ ଏକଟା ସ୍ୱତନ୍ତ୍ର ଭାଷା ନୟ', ଏହା ବଂଗଳାର ବିକୃତ ରୂପ, ତେଣୁ ଓଡ଼ିଆ ପାଠ ପଢ଼ିବା ଆଉ ଦରକାର ନାହିଁ । ଏଥିସହିତ ଭଟ୍ଟାଚାର୍ଯ୍ୟ ମହାଶୟ "ଓଡ଼ିଆ ସ୍ୱତନ୍ତ୍ର ଭାଷା ନହେଁ" (୧୮୭୦) ୭୨ପୃଷ୍ଠା ସମ୍ବଳିତ ଏକ କ୍ଷୁଦ୍ର ପୁସ୍ତିକା କଲିକତା ମିର୍ଜାପୁର ଅପର ସରକୁଲାର ରୋଡ଼ରେ ଥିବା 'ଗିରିଶ ବିଦ୍ୟାରନ୍ ଯନ୍ତ୍ର' ନାମକ ମୁଦ୍ରଣ ସଂସ୍ଥାରୁ ପ୍ରକାଶ କରିଥିଲେ । ଏଥିରେ ସେ ୧୮୬୮ମସିହା ଡିସେମ୍ବର ମାସରେ କଟକ ଡିବେଟିଂ କ୍ଲବ୍‌ରେ କମିସନର ରେଭେନ୍‌ସା ସାହେବଙ୍କ ସଭାପତିତ୍ୱରେ ଓଡ଼ିଆ ପାଠ୍ୟପୁସ୍ତକର ଘୋର ଅଭାବକୁ ଲକ୍ଷ୍ୟକରି ରାଜେନ୍ଦ୍ର ଲାଲ ମିତ୍ରଙ୍କ ଓଡ଼ିଆ ସ୍ୱତନ୍ତ୍ର ଭାଷା ହେବା ଅନୁଚିତ୍ ବୋଲି ଦେଇଥିବା ବକ୍ତବ୍ୟକୁ କାନ୍ତି ବାବୁ ପୂର୍ଣ୍ଣ ସମର୍ଥନ କରିଥିଲେ । ପୂର୍ବରୁ ରାଜେନ୍ଦ୍ର ବାବୁଙ୍କ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ବିଷୟରେ ଦେଇଥିବା ବିରୋଧୀ ମନ୍ତବ୍ୟ ନେଇ ଓଡ଼ିଶାରେ ଏକ ଆନ୍ଦୋଳନ ମୁଣ୍ଡଟେକି ଉଠିଥିଲା । କାନ୍ତିବାବୁଙ୍କ ପୁସ୍ତକଟି ପ୍ରକାଶ ପାଇବା ଫଳରେ ଗୌରୀଶଙ୍କର ରାୟଙ୍କ ସଂପାଦନାରେ କଟକରୁ ପ୍ରକାଶିତ 'ଉତ୍କଳ ଦୀପିକା' ଏବଂ ଭୂଦେବ ମୁଖୋପାଧ୍ୟାୟଙ୍କ ସଂପାଦିତ 'ଏଜୁକେଶନ୍ ଗେଜେଟ୍' ଏବଂ ଜନ୍ ବୀମ୍‌ସଙ୍କ ରଚିତ ଇଂରାଜୀ ପ୍ରବନ୍ଧ "On the relation of the Uriya to the Modern Aryan Language" The Asiatic society of Bengal ଆଦି ପତ୍ରିକା କାନ୍ତିଚନ୍ଦ୍ରଙ୍କ ମତ ବିରୁଦ୍ଧରେ ବଳିଷ୍ଠ ଯୁକ୍ତିମାନ ଦର୍ଶାଇଥିଲେ । ଜନ୍‌ବୀମ୍‌ସ ଏହା ପୂର୍ବରୁ 'Out line of Indian Philology' ନାମକ ଏକ ପୁସ୍ତକ ୧୮୬୭ ମଧ୍ୟ ରଚନା କରିଥିଲେ । ଉକ୍ତ ପୁସ୍ତକରେ ସେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ସ୍ୱୀକାର କରିବା ସହିତ ଭାଷା ଓ ଉପଭାଷା ମଧ୍ୟରେ

ଥିବା ପ୍ରକୃତ ସମ୍ପର୍କ ନିର୍ଣ୍ଣୟ କରିଛନ୍ତି । ବୀମ୍‌ସଙ୍କର ଏହି ଭାଷାତାତ୍ତ୍ୱିକ ଆଲୋଚନା କ୍ଷେତ୍ରରେ କାନ୍ତିବାବୁଙ୍କର ସମ୍ପୂର୍ଣ୍ଣ ପ୍ରବେଶ ନଥିଲା । ବୀମ୍‌ସ ମଧ୍ୟ ତାଙ୍କ ରଚିତ 'A comparative Grammar of Modem Aryan Langnages' ପୁସ୍ତକରେ ଓଡ଼ିଆ ଭାଷାର ଗୌରବ ଓ ଗୁରୁତ୍ୱ ବର୍ଣ୍ଣନା କରି ଲେଖିଛନ୍ତି, "ସମୁଦ୍ର ତୀରବର୍ତ୍ତୀ ପଚାଶ ଲକ୍ଷ ଲୋକ ଓଡ଼ିଆ ଭାଷାଭାଷୀ, ଓଡ଼ିଆ ଭାଷା ବିପୁଳ ପାର୍ବତୀୟ ଅଞ୍ଚଳର ଅଗଣିତ ଲୋକଙ୍କର ମଧ୍ୟ ମାତୃଭାଷା । + + + ଲୋକ ଶିକ୍ଷା ଲାଗି ବଂଗଳା ଅପେକ୍ଷା ଓଡ଼ିଆ ଏକ ସମୃଦ୍ଧତର ମାଧ୍ୟମ । ଏକ ନିୟୁତ ଓଡ଼ିଆଙ୍କ ମାତୃଭାଷାର ଲୋପ ସାଧନ ମୁଷ୍ଟିମେୟ ଇଂରେଜ ଶିକ୍ଷିତ ବଂଗାଳୀଙ୍କ କ୍ଷମତାର ବହିର୍ଭୂତ । କୌଣସି ଜୀବିତ ଭାଷାକୁ ଚାପି ଦେବା ମଧ୍ୟ ଆମର ରାଷ୍ଟ୍ରନୀତି ସମର୍ଥନ କରେ ନାହିଁ । ଯଦି ଓଡ଼ିଆକୁ ବାଦ ଦେଇ ଓଡ଼ିଶାର ସ୍କୁଲମାନଙ୍କରେ ଆମେ ବଂଗଳା ଶିକ୍ଷା ଦେଉ, ତେବେ ମୁଷ୍ଟିମେୟ ଓଡ଼ିଆ ପିଲା ବଂଗଳା ଶିଖିବା ସଂଗେସଂଗେ ନିଜ ମାତୃଭାଷାକୁ ଘୃଣା କରିବେ । + + । ଯେତେବେଳେ ଓଡ଼ିଆ ଏକ ସ୍ଥିରସିଦ୍ଧ ରୂପ ପରିଗ୍ରହ କରିଥିଲା, ସେତେବେଳେ ବଂଗଭାଷାର ଅସ୍ତିତ୍ୱ ମଧ୍ୟ ନଥିଲା ।" (କୋଣାର୍କ/୬୫ତମ ସଂଖ୍ୟା/ ୧୯୮୭ - ଓଡ଼ିଆ ସାହିତ୍ୟ ଏକାଡେମୀ, ଭୁବନେଶ୍ୱର - ପୃ - ୫୪)

ଫକୀରମୋହନ ଥିଲେ ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନର ସେନାପତି । ବାଲେଶ୍ୱର ସହରର ଓଡ଼ିଆ ଭାଷା ବିରୋଧୀ ବଙ୍ଗୀୟ ଜମିଦାର ବୃନ୍ଦାବନ ମଣ୍ଡଳ, ଅନ୍ୟ ମାନ୍ୟଗଣ୍ୟ ବଂଗଭାଷୀ ଭଦ୍ରବ୍ୟକ୍ତି, କଚେରୀର ବଂଗାଳି ଅମଲା ତଥା ସ୍କୁଲର ବଂଗାଳି ଶିକ୍ଷକ ମାନଙ୍କ ଚକ୍ରାନ୍ତ ବିରୁଦ୍ଧରେ ତାଙ୍କୁ ବୌଦ୍ଧିକ ସଂଗ୍ରାମ କରିବାକୁ ପଡ଼ିଥିଲା । ଏଥିପାଇଁ ଭାଷାବିଦ୍, ସୁପଣ୍ଡିତ, ଓଡ଼ିଆ ଭାଷା ସାହିତ୍ୟ ଓ ସଂସ୍କୃତି ପ୍ରେମୀ ବୀମ୍‌ସ ସାହେବଙ୍କର ଫକୀରମୋହନଙ୍କ ପ୍ରତି ପୂର୍ଣ୍ଣ ସମର୍ଥନ ଓ ଶୁଭେଚ୍ଛା ଥିଲା । ଯେତେବେଳେ ବାଲେଶ୍ୱର ଗଭର୍ଣ୍ଣମେଣ୍ଟ ସ୍କୁଲ ତଥା ସାହାଯ୍ୟ ପ୍ରାପ୍ତ ସମସ୍ତ ସ୍କୁଲରୁ ଓଡ଼ିଆଭାଷା ଉଠିଯିବାର ସରକାରୀ ଆଦେଶ ପ୍ରଚାରିତ ହେଲା, ସେତେବେଳେ ଫକୀରମୋହନଙ୍କ ଚିନ୍ତାର ଆଉ ସୀମା ରହିଲା ନାହିଁ । ସେ ଲେଖିଛନ୍ତି, "ସହସା ଆମ୍ଭମାନଙ୍କ ମସ୍ତକରେ ଯୁଗପତ୍ ସହସ୍ର ବଜ୍ରପାତ ପରି ଜଣାଗଲା । ଶତ୍ରୁ ମାନଙ୍କ ଆନନ୍ଦ ଉତ୍ସାହ, ବିଦ୍ରୂପବାଣୀ ହୃଦୟରେ ତୀର ପରି ବିନ୍ଧିଯାଉଥାଏ । + + + । ଦିବାରାତ୍ର ଚିନ୍ତା - ରକ୍ଷାର ଉପାୟ କଣ ? ସଞ୍ଜଠାରୁ ରାତ୍ର ଛ'ଘଡ଼ି ଯାଏଁ ସହରବାସୀ ପ୍ରଧାନ ପ୍ରଧାନ ଲୋକମାନଙ୍କ ଦ୍ୱାରଦ୍ୱାର ବୁଲିବାକୁ ଲାଗିଲୁ ।" (ଫ. ଗ୍ର. -୨ୟ ଖଣ୍ଡ -୨୦୦୩

ମସିହା - ୧ମ ସଂ, ଗ୍ରନ୍ଥମନ୍ଦିର - ପୃ - ୧୦୫)। ଫକୀରମୋହନଙ୍କ ମୁଣ୍ଡରେ ସହସା ଏକ ବୁଦ୍ଧି ଦେଖାଗଲା। ଦିନେ କଚେରୀ ଛୁଟି ବେଳରେ ସମସ୍ତ ଅମଲା ମାନଙ୍କୁ ଏକତ୍ର କରି ବକ୍ତୃତା ଦେଇ ବୁଝାଇ ଦେଲେ ଯେ ବଂଗାଳୀମାନେ ପାର୍ଶିଭାଷା ଉଠାଇ ଦେଇ କିରାନୀ ହୋଇଗଲେ। ଓଡ଼ିଆ ଭାଷା ଉଠିଗଲେ ତାଙ୍କ ପୁଅ, ଭାଇ, ଜ୍ଞାତି, କୁଟୁମ୍ବମାନେ ଅମଲା ହୋଇଯିବେ। ଏଣିକି ଆପଣମାନଙ୍କ ପୁଅ ନାତିମାନେ ଆଉ ସରକାରୀ ଚାକିରି ପାଇବେ ନାହିଁ। କଥାଟି ଧଡ଼୍‌କରି ସମସ୍ତଙ୍କ ମଗଜରେ ପଶିଗଲା। ଉପାୟ ସ୍ଥିରକରି ପାଞ୍ଚଶହ ଲୋକଙ୍କ ଦସ୍ତଖତ ସମ୍ବଳିତ ଦରଖାସ୍ତ କଲେକ୍ଟର ଜନ୍‌ବୀମ୍‌ସଙ୍କୁ ଦିଆଗଲା। କଲେକ୍ଟର ମହୋଦୟ ଓଡ଼ିଆ ଭାଷା ସପକ୍ଷରେ ମନ୍ତବ୍ୟ ଦେଇ କମିଶନର ଟି. ରେଭେନ୍‌ସା ସାହେବଙ୍କ ନିକଟକୁ ପଠାଇଦେଲେ। କଲେକ୍ଟରଙ୍କ ପ୍ରେରିତ ଦରଖାସ୍ତରେ କମିଶନର ନିଜର ଅନୁକୂଳ ମତ ପ୍ରଦାନକରି ଗଭର୍ଣ୍ଣମେଣ୍ଟକୁ ପଠାଇଦେଲେ। ଶେଷରେ ସରକାରଙ୍କଠାରୁ ହୁକୁମ ଆସିଲା, "ଓଡ଼ିଶାର ସମସ୍ତ ସ୍କୁଲରୁ ବଂଗଭାଷା ସମ୍ପୂର୍ଣ୍ଣ ରୂପେ ଉଠାଇ ଦିଆଯାଉ ଏବଂ ଉତ୍କଳ ଭାଷାର ବହୁଳ ପ୍ରଚାର ନିମନ୍ତେ ସ୍ଥାନେସ୍ଥାନେ ସ୍କୁଲ ସ୍ଥାପିତ ହେଉ।" (ଫ. ଗ୍ର. ୨ୟଖଣ୍ଡ/ ୧ମସଂ/ ୨୦୦୨ ମସିହା/ ଗ୍ରନ୍ଥମନ୍ଦିର - ପୃ - ୧୦୬)। ଉତ୍କଳବାସୀ ଏହି ଦୁଇ ମହାତ୍ମାଙ୍କ ଅନୁଗ୍ରହ ଚିରକାଳ ସ୍ମରଣ କରୁଥିବେ।

୧୮୭୨ମସିହାରେ ନୀଳଗିରି ଗଡ଼ଜାତ ରାଜ୍ୟର ରାଜାଥିଲେ କୃଷ୍ଣଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ। ନୀଳଗିରି ଦେଓ୍ୱାନ ଦାମୋଦର ମହାପାତ୍ର ସରକାରୀ ନିର୍ଦ୍ଦେଶ ବଳରେ କାର୍ଯ୍ୟଚ୍ୟୁତ ହେବା ଫଳରେ ଦେଓ୍ୱାନ ପଦ ଖାଲିହେଲା। ବୀମ୍‌ସଙ୍କ ସୁପାରିଶ କ୍ରମେ ଫକୀରମୋହନ ବାଲେଶ୍ୱର ମିଶନ ସ୍କୁଲର କର୍ମତ୍ୟାଗ କରି ଗଡ଼ଜାତ ମାହାଲର ସୁପରିନ୍‌ଟେଣ୍ଡେଣ୍ଟ ରେଭେନ୍‌ସା ସାହେବଙ୍କ ଦ୍ୱାରା ମାସିକ ଶହେ ଟଙ୍କା ଦରମାରେ ସେଠାରେ ନିଯୁକ୍ତ ପାଇଲେ। ଫକୀରମୋହନ ଲେଖିଛନ୍ତି, "ନୀଳଗିରି ଜିଲ୍ଲାର ଦେବାନ୍ ପଦ ଶୂନ୍ୟ ହେଲା। ବାଲେଶ୍ୱର ଜିଲ୍ଲାର କଲେକ୍ଟର ଜନ୍‌ବୀମସ୍ ସାହେବଙ୍କ ପ୍ରସ୍ତାବ ଅନୁସାରେ ଗଡ଼ଜାତ ମାହାଲର ସୁପରିଣ୍ଟେଣ୍ଡେଣ୍ଟ ସାହେବ ମୋତେ ସେହି ପଦରେ ନିଯୁକ୍ତି କରି ପଠାଇଲେ। ନୀଳଗିରି ରାଜା କୃଷ୍ଣଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ ମୋତେ ଆଦର ପୂର୍ବକ ଗ୍ରହଣ କଲେ। ଜିଲ୍ଲାର ସମସ୍ତ ଭାର ମୋ ଉପରେ ନ୍ୟସ୍ତ ହେଲା।" (ଫ. ଗ୍ର. ୨ୟଖଣ୍ଡ. ୧ମ ସଂ - ୨୦୦୨ ଗ୍ରନ୍ଥମନ୍ଦିର ପ୍ରକାଶିତ - ପୃ - ୧୧୦,୧୧୧) ଫକୀରମୋହନ ଦେଓ୍ୱାନ ପଦରେ ରହି ନୀଳଗିରିର ସର୍ବବିଧ ଉନ୍ନତି ପାଇଁ ଆପ୍ରାଣ

ଉଦ୍ୟମ କରିଥିଲେ । ତାଙ୍କରି ପ୍ରଚେଷ୍ଟାରେ ନୀଳଗିରିରୁ ସେରଗଡ଼ ରାସ୍ତା ନିର୍ମାଣ, ହାଟ ବଜାର ସୁବିଧା ପାଇଁ ଗଡ଼ ସମ୍ମୁଖସ୍ଥ 'ଶଙ୍କର ଖୁଣ୍ଟା' ପୋଖରୀ ପୂର୍ବକୂଳକୁ ଲାଗି ଆମ୍ବତୋଟାରେ ରାଣୀଙ୍କ ନାମାନୁସାରେ 'ନିର୍ମଳାହାଟ' ବସାଇବା, ସଂସ୍କୃତ ଶିକ୍ଷାର ବିକାଶ ପାଇଁ 'ସଂସ୍କୃତ ଟୋଲ' ପ୍ରତିଷ୍ଠା କରି ଲୋକମାନଙ୍କର ପ୍ରିୟ ଭାଜନ ହୋଇଥିଲେ । ଜନ୍ ବୀମ୍ସ ସାହେବ ମଧ ଫକୀରମୋହନଙ୍କ ଏତାଦୃଶ ଜନହିତକର କାର୍ଯ୍ୟ ପାଇଁ ଖୁବ୍ ପ୍ରଶଂସା କରିଥିଲେ । ସେ ସମୟର ଏକ ସରକାରୀ ରିପୋର୍ଟରେ ବାଲେଶ୍ୱର କଲେକ୍ଟର ଲେଖିଥିଲେ, " The Mission School was conducted by one of the best specimens of an Oriah I have seen, Baboo Fakeer Mohan Senapaty. He has however left it for the better post of dewan to the Ragah of Neelgharry, in which capacity I am glad to see he is carrying out improvements and infroducing those principles of honesty and jastice." (କୋଣାର୍କ / ୭୭ ତମ ସଂ/ ୧୯୯୦ - ପୃ - ୫୨)

ଫକୀରମୋହନ ୧୮୭୬ ମାର୍ଚ୍ଚ ମାସରେ କମିଶନର ରେଭେନ୍ସା ସାହେବଙ୍କ ନିର୍ଦ୍ଦେଶ ଅନୁଯାୟୀ ଦେୱାନ ପଦରୁ ଅବ୍ୟାହତି ନେଇଥିଲେ । ବାଲେଶ୍ୱରରେ କର୍ମଶୂନ୍ୟ ଅବସ୍ଥାରେ ଦୁଇତିନି ମାସ ବସିଲା ପରେ ଚାକିରୀ ସନ୍ଧାନରେ କଟକ ଯିବାକୁ ନିଷ୍ପତ୍ତି ନେଲେ । ତାଙ୍କର ପରମ ହିତଚିନ୍ତକ ଜନ୍‌ବୀମ୍ସ ସାହେବ ସେତେବେଳେ କଟକର କଲେକ୍ଟର ଭାବରେ ଅବସ୍ଥାପିତ ଥିଲେ । ତାଙ୍କ ଦ୍ୱାରା ସେ କୌଣସି କର୍ମ ସଂସ୍ଥାନ ପାଇବେ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ତଥାପି ଦେଢ଼ମାସ କର୍ମଶୂନ୍ୟ ଓ ଅର୍ଥଶୂନ୍ୟ ହୋଇ କଟକରେ ରହିବାପରେ ବୀମ୍ସଙ୍କ ଚେଷ୍ଟାରେ ଡୋମପଡ଼ା କିଲ୍ଲାର ଦେୱାନୀ ପଦରେ ମାସିକ ଶହେ ଟଙ୍କା ଦରମାରେ ନିଯୁକ୍ତି ପାଇଲେ ଏବଂ ଚଳିବା ପାଇଁ କଟକର ପ୍ରଧାନ ଡେପୁଟୀ କଲେକ୍ଟର ବାବୁ ଜଗମୋହନ ରାୟ ଦ୍ୱାରା ରାଜାଙ୍କ ନିକଟରୁ ଅଗ୍ରୀମ ତିନିମାସର ଦରମା ଦେବାର ବ୍ୟବସ୍ଥା କରିଥିଲେ । ସେତେବେଳେ ଡୋମପଡ଼ାର ରାଜା ଥିଲେ ରଘୁନାଥ ମାନସିଂହ ଭ୍ରମରବର ରାୟ । ଫକୀରମୋହନଙ୍କ ଚତୁରତାପଣ ସାହାଯ୍ୟରେ ପାଞ୍ଚବର୍ଷ ପୂର୍ବରୁ ଖଜଣା ବୃଦ୍ଧି ପାଇଁ ଲାଗି ରହିଥିବା ପ୍ରଜାମେଳିକୁ ବୀମ୍ସ ଦୃଢ଼ ହସ୍ତରେ ଦମନ କରିବା ଦିଗରେ ସଫଳ ହୋଇଥିଲେ ।

ବୀମ୍ସ ସାହେବ ଫକୀରମୋହନଙ୍କୁ ଢେଙ୍କାନାଳ ଷ୍ଟେଟ୍‌ରେ ଆସିଷ୍ଟାଣ୍ଟ ମ୍ୟାନେଜରୀ ପଦରେ ନିଯୁକ୍ତି ଦେବା ପାଇଁ ସୁପାରିସ୍ କରିଥିଲେ । ଫକୀରମୋହନ

ଲେଖିଛନ୍ତି, "ସାହେବ ମହୋଦୟ ଅନ୍ୟ ସମୟରେ ମୋତେ ଡକାଇ କହିଲେ, ଏ ରାଜାଟା ବାୟା, ଏହାର କଥା ଠିକ୍ ନାହିଁ। ଏହାର କଥା ଶୁଣିବା ଉଚିତ୍ ନୁହେଁ। ଆମ୍ଭେ ସରକାର ତରଫରୁ ଆପଣଙ୍କୁ ଗୋଟିଏ· ଉଚ୍ଚ ପଦ ଦେବା ଉଦ୍ଦେଶ୍ୟରେ ଢେଙ୍କାନାଳକୁ ଅଣାଇଅଛୁଁ।"(ଫ. ଗ୍ର. ୨ୟଖଣ୍ଡ. ୧ମ ସଂ - ୨୦୦୨ ଗ୍ରନ୍ଥମନ୍ଦିର - ପୃ - ୧୩୪) ଫକୀରମୋହନଙ୍କୁ ଢେଙ୍କାନାଳର ଆସିଷ୍ଟାଣ୍ଟ ମେନେଜର ପଦରେ ନିଯୁକ୍ତ କରିବାର ମୁଖ୍ୟ ଉଦ୍ଦେଶ୍ୟ ଥିଲା, ଢେଙ୍କାନାଳ ରାଜା ଭାଗୀରଥି ମହୀନ୍ଦ୍ର ବାହାଦୁରଙ୍କର ଦେହାନ୍ତ ବେଳକୁ ତାଙ୍କର ଉତ୍ତରାଧିକାରୀ ଦୀନବନ୍ଧୁ ମହେନ୍ଦ୍ର ବାହାଦୁର ନାବାଳକ ଥିଲେ। ଫଳରେ ଢେଙ୍କାନାଳ ରାଜ୍ୟ କୋର୍ଟ ଅଫ୍ ୱାର୍ଡ଼ସ ଅଧୀନରେ ଥିଲା। ବନମାଳି ସିଂହ ଥିଲେ ଢେଙ୍କାନାଳ ରାଜ୍ୟର ମେନେଜର ଏବଂ ରାଜ୍ୟ ସୁଚାରୁରୂପେ ପରିଚାଳନା ପାଇଁ ଫକୀରମୋହନଙ୍କୁ ମଧ୍ୟ ଆସିଷ୍ଟାଣ୍ଟ ମେନେଜର ପଦରେ ନିଯୁକ୍ତି ଦିଆଯାଇଥିଲା। ୧୮୭୭ ମସିହାରେ ଅଗଷ୍ଟ ୨୨ ତାରିଖରେ ଅସ୍ଥାୟୀ କମିଶନର ଦାୟିତ୍ୱରେ ଥାଇ ଜନ୍ ବୀମ୍‌ସ ଢେଙ୍କାନାଳ ଗସ୍ତ କରିଥିଲେ। ସେଠାରେ ନଅଦିନ କାଳ ରହଣି ମଧ୍ୟରେ ସାହେବଙ୍କ ସହିତ ଫକୀରମୋହନଙ୍କର ଅନେକ ଆଳାପ ଆଲୋଚନା କଟିଥିଲା। ରେଭେନ୍‌ସା ସାହେବ ତିନିମାସ ପାଇଁ ରେଭିନଉ ବୋର୍ଡ଼ର ମେମ୍ବର ହୋଇ ଯାଇଥିଲେ। ୧୮୭୮ମସିହା ଫେବୃଆରୀ ୧୪ତାରିଖ ଫକୀରମୋହନଙ୍କ ଜୀବନର ଶୁଭଚିନ୍ତକ ଜନ୍ ବୀମ୍‌ସ ଚିଟ୍ଟାଗଙ୍ଗ (ଚଟ୍ଟଗ୍ରାମ)ର ଜଜ୍ ଓ କମିଶନର ରୂପେ ଯୋଗଦେବା ପାଇଁ ଓଡ଼ିଶାରୁ ବିଦାୟ ନେଲେ। କଟକ ଜୋବ୍ରାଘାଟରେ ବିପୁଳ ସଂଖ୍ୟକ ୟୁରୋପୀୟ ଓ ଦେଶୀୟ ଜନତା ତାଙ୍କୁ ବିଦାୟ ଦେଇଥିଲେ। ରେଭେନ୍‌ସା ସାହେବ ମଧ୍ୟ ଓଡ଼ିଶାର କମିସନର ପଦରୁ ବିଦାୟ ନେଲେ ଏବଂ ତାଙ୍କ ପଦରେ ସ୍ମିଥ୍‌ଙ୍କ ଅସ୍ଥାୟୀ କମିସନର ପଦରେ ନିଯୁକ୍ତି ପାଇଲେ। ବୀମ୍‌ସଙ୍କ ଓଡ଼ିଶାରୁ ବିଦାୟ ଫକୀରମୋହନଙ୍କ ପାଇଁ ଅତ୍ୟନ୍ତ ଦୁଃଖଦ ଘଟଣା ଥିଲା। କୃଷ୍ଣକୁମାରୀଙ୍କ ଗର୍ଭରୁ ପ୍ରଥମ ପୁତ୍ର ମନୋମୋହନ ଜନ୍ମ ହୋଇଥିଲା। ମାତ୍ର ଛଅମାସ ପରେ ସାମାନ୍ୟ ରୋଗରେ ପୀଡ଼ିତ ହୋଇ ତାର ମୃତ୍ୟୁ ଘଟିଲା। ଫକୀରମୋହନଙ୍କ ପାଇଁ ଏହାଥିଲା ଆଉ ଏକ ଦୁର୍ଘଟଣା। ପୁତ୍ର ବିଚ୍ଛେଦ ଜନିତ ଦୁଃଖକୁ ପାଶୋରିବା ପାଇଁ ପ୍ରତିଦିନ ସନ୍ଧ୍ୟାରେ ବଳରାମ ଦାସଙ୍କ ରଚିତ ଦାଣ୍ଡି ରାମାୟଣ ବ୍ରାହ୍ମଣ ଦ୍ୱାରା ପାଠକରାଇବା ବ୍ୟବସ୍ଥା କରିଥିଲେ। ମାତ୍ର ଏହା ଦୁର୍ବୋଧ ହେବାରୁ ଫକୀରମୋହନ ଢେଙ୍କାନାଳ ରାଜବାଟୀସ୍ଥ ପାଠାଗାରରୁ ସଂସ୍କୃତ ବାଲ୍ମିକୀ ରାମାୟଣ ଆଣି ଦିନବେଳେ ଉତ୍କଳ ପଦ୍ୟାନୁବାଦ କରି ରାତ୍ରୀରେ ପତ୍ନୀଙ୍କୁ ଶୁଣାଉଥିଲେ। ଏହାର ସରଳ

ପଦାନୁବାଦ ପତ୍ନୀ କୃଷ୍ଣକୁମାରୀଙ୍କ ପାଇଁ ଖୁବ୍ ପ୍ରାଣସ୍ପର୍ଶୀ ହୋଇଥିଲା । ବାଲକାଣ୍ଡ ବା ଆଦି କାଣ୍ଡଟି ସମ୍ପୂର୍ଣ୍ଣ ଅନୁବାଦ କରି କଟକ ପ୍ରିଣ୍ଟିଂ କମ୍ପାନୀ ଦ୍ୱାରା ୧୮୮୦ ମସିହାରେ ପ୍ରଥମ ମୁଦ୍ରଣ କରାଇଥିଲେ ଏବଂ ଜୀବନର ପରମ ହିତୈଷୀ ଜନ୍ ବୀମ୍ସଙ୍କ ସ୍ମୃତି ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିଲେ, ଏହାର ଉତ୍ସର୍ଗ ପତ୍ରଟି ଏପରି ଥିଲା :

To

John Beams Esquive B.C.S.

Honoured Sir,

I beg most respectfully to dedicate this work to you as a token of the affectionate gratitude which orissa has always felt towards you for the intelligent and heart felt intarest ycu hage evineed in the improvement of the Oriya language and in the welfare of her people.

Dhankanal — I am
Honoured Sir,
1880 — Your most obedient servant,
Phakir Mohan Senapati

ଏଥିରୁ ଫକୀରମୋହନଙ୍କର ବୀମ୍ସଙ୍କ ପ୍ରତି କିପରି ସମ୍ମାନବୋଧ ତଥା ତାଙ୍କର ଓଡ଼ିଶା ଓ ଓଡ଼ିଆ ଭାଷା ପ୍ରୀତିର ସ୍ୱୀକାରୋକ୍ତି ସ୍ପଷ୍ଟସୂଚୀତ । ପରେପରେ ଢେଙ୍କାନାଳ ରାଜକର୍ମଚାରୀ ମାନଙ୍କ ମଧ୍ୟରେ ପରସ୍ପର ମାନନ୍ତର ହେତୁ ଫକୀରମୋହନଙ୍କ ପ୍ରତି ପ୍ରଶାସନିକ ଦୋଷାରୋପ କରାଗଲା । ନନ୍ଦକିଶୋର ଦାସଙ୍କ ଅନୁସନ୍ଧାନରେ ଫକୀରମୋହନ ଦୋଷମୁକ୍ତ ହୋଇ ଥିଲେ ଏବଂ ଢେଙ୍କାନାଳ ଆସିଷ୍ଟାଣ୍ଟ ମ୍ୟାନେଜର ପଦ ଚାକିରିରୁ ଇସ୍ତଫା ଦେଇଥିଲେ ।

ଏହି ଉତ୍କଳ ହିତୈଷୀ ମହାତ୍ମା ବୀମ୍ସଙ୍କ ଓଡ଼ିଶା ଶାସନ କାଳରେ ନରହତ୍ୟା ମକଦ୍ଦମାରେ ପୁରୀର ଠାକୁର ରାଜା ଦିବ୍ୟସିଂହଦେବଙ୍କୁ କଳାପାଣି ଦଣ୍ଡବିଧାନ କରିବା, କେଉଁଝରରେ ନରବଳି ପ୍ରଥା ବନ୍ଦ କରିବା, ଦଶପଲ୍ଲା ରାଜାଙ୍କୁ ଗାଦିଚ୍ୟୁତ କରିବା ଆଦି ଘଟଣା ତାଙ୍କ ଉଚ୍ଚ ଆଇନ ଶୃଙ୍ଖଳାର ଦୃଷ୍ଟାନ୍ତ । ଅଥଚ ବୀମ୍ସଙ୍କ ଭଳି ସୁଶାସକ ଯେ ଓଡ଼ିଶାକୁ ତଥା ଓଡ଼ିଶାବାସୀଙ୍କୁ ଏତେ ଭଲପାଉଥିଲେ ଏବଂ ସୁନ୍ଦର ନାରାୟଣ ରାୟ (ରାଧାନାଥଙ୍କ ପିତା), ରାଧାନାଥ ରାୟ, ରାଜାବାହାଦୁର ବୈକୁଣ୍ଠନାଥ ଦେ, ଫକୀରମୋହନ ସେନାପତି, ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ, କଟକର ନାରାୟଣ ଚନ୍ଦ୍ର

ନାୟକ, ଗୌରୀଶଙ୍କର ରାୟ, ପୁରୀର ଆଚାର୍ଯ୍ୟ ହରିହର ଦାସଙ୍କ ଭଳି ଗୁଣୀ ଜନଙ୍କ ସହିତ ତାଙ୍କର ସମ୍ପର୍କ ଥିଲା । ଅଥଚ ସେମାନଙ୍କ ନାମୋଲ୍ଲେଖ ମଧ୍ୟ ସେ ତାଙ୍କ ରଚିତ 'Memoirs of a Bengal civilian' ସ୍ମୃତି ଗ୍ରନ୍ଥରେ କରିନାହାନ୍ତି । ଏହାର ଯୁକ୍ତିଯୁକ୍ତ କାରଣଟି ହେଉଛି ଜନ୍‌ବୀମ୍‌ସ କଟକରେ କଲେକ୍ଟର ଥିବାବେଳେ ୧୮୭୫ ମସିହାରେ ପୁସ୍ତକଟିର ରଚନା ଆରମ୍ଭ କରିଥିଲେ ଏବଂ ୧୮୭୮ ମସିହା ପର୍ଯ୍ୟନ୍ତ ମଝିରେ ମଝିରେ ଲେଖୁଥିଲେ । ତା'ପରେ ବଂଗଳାର ଚିନସୁରାକୁ ବଦଳି ହୋଇ ୧୮୮୦ ବେଳକୁ ପୁଣି ଲେଖିବାକୁ ଉଦ୍ୟମ କରିଥିଲେ । କିନ୍ତୁ ସେତେବେଳେ ତାଙ୍କର ସ୍ମୃତି ଶକ୍ତିର ହ୍ରାସ ଘଟିଥିଲା । ଫଳରେ ପାଣ୍ଡୁଲିପିରେ ୧୮୭୦ ମସିହା ପର୍ଯ୍ୟନ୍ତ ଘଟଣା ବର୍ଣ୍ଣନା ପରେ ପୁନଶ୍ଚ ତାଙ୍କ ସ୍ମୃତିରେ ଅତୀତ ଘଟଣା ମନେପଡ଼ିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେଲା ଏବଂ ଲେଖାକାର୍ଯ୍ୟ ବନ୍ଦ ରହିଲା । ୧୮୯୬ ମସିହାରେ ସେ ସିଭିଲ୍ ସେବା ସଂସ୍ଥାରୁ ଅବସର ଗ୍ରହଣକରି ଇଂଲଣ୍ଡଫେରି ପୁନଶ୍ଚ ମୂଳରୁ ଲେଖିବା କାର୍ଯ୍ୟ ଆରମ୍ଭ କଲେ । ଏପରିକି ବୀମ୍‌ସଙ୍କ ମୃତ୍ୟୁ ପର୍ଯ୍ୟନ୍ତ ୧୯୦୨ ମସିହାଯାଏଁ ପୁସ୍ତକଟି ପ୍ରକାଶ ପାଇନଥିଲା । ପରେ ଏହା ୧୯୬୧ ମସିହାରେ ବୀମ୍‌ସଙ୍କ ନାତି (ସାନଝିଅ ଏଞ୍ଜେଲାଙ୍କ ପୁଅ ଖ୍ରୀଷ୍ଟୋପର ବୁକ୍) ଉଦ୍ୟମରେ ଇଂଲଣ୍ଡରୁ ପ୍ରକାଶ ପାଇଥିଲା । ଫଳରେ ବାରମ୍ବାର ବୀମ୍‌ସ ତାଙ୍କର ସ୍ମୃତିକଥା ଲେଖିବା ଆରମ୍ଭ କରିବା ଏବଂ ବନ୍ଦ କରିବା ତଥା କର୍ମକ୍ଷେତ୍ରରୁ ଅବସର ଗ୍ରହଣ କରି (୧୮୭୫-୧୮୯୬) ଏକୋଇଶ ବର୍ଷପରେ ପୁନରାୟ ଆରମ୍ଭ କରିବାବେଳେ ବହୁଘଟଣା ଏବଂ ଚରିତ୍ର ମାନଙ୍କ ସହିତ ସମ୍ପର୍କିତ ସ୍ମୃତିକଥା ତାଙ୍କମନରୁ ଲିଭି ଯାଇଥିବ । କିମ୍ବା ଚରିତ୍ର ମାନଙ୍କ ସହିତ ତାଙ୍କର ଅତୀତରେ ଗଢ଼ିଉଠିଥିବା ସମ୍ପର୍କକୁ ସେ ଜାଣିଶୁଣି ପୁସ୍ତକରେ ଉଲ୍ଲେଖ କରିନଥିବେ । ତଥାପି ଫକୀରମୋହନଙ୍କ ଭଳି ସତ୍ୟନିଷ୍ଠ, ସଚେତନଶୀଳ, ବାସ୍ତବ ଜୀବନର ରୂପକାରଙ୍କ ସ୍ୱୀକାରୋକ୍ତି କେବେ ଭୁଲିହେବ ନାହିଁ । ବରଂ ତାଙ୍କର ସାରସ୍ୱତ ସୃଷ୍ଟି ହିଁ ଏ ଜାତିର ଦୁଇଶହ ବର୍ଷର ସତ୍ୟନିଷ୍ଠ ଇତିହାସ । ତେଣୁ ତାଙ୍କରି ଭାଷାରେ :

ଥିଲା ଜଣେ ବୀମ୍‌ସ ଆଶାଥିଲା ତାହାଠାରେ,
ମାତ୍ରକ ପାରିଲା ନାହିଁ ରହି ଓଡ଼ିଶାରେ ।
ଅବଶ୍ୟ ସେ କରିଛନ୍ତି କିଛିକିଛି କାମ,
ଢେରଢେର ଲୋକେ ଗାଉଥିବେ ତାଙ୍କ ନାମ । (ଉତ୍କଳ ଭ୍ରମଣ - ଫ. ଗ୍ର. ୨ୟ ସଂସ୍କରଣ, ୧୯୬୩, କଟକ ଷ୍ଟୁଡେଣ୍ଟଷ୍ଟୋର୍ସ ପ୍ରକାଶିତ, ପୃ - ୨୦୫)



# ବ୍ୟାସକବି ଫକୀରମୋହନ ଓ
# ରାଜା ବୈକୁଣ୍ଠନାଥ ଦେ

ଊନବିଂଶ ଶତାବ୍ଦୀର ଶେଷଭାଗ ଓଡ଼ିଶାବାସୀଙ୍କ ପାଇଁ ଥିଲା ଏକ ସଂକଟମୟ ସମୟ । ଏହି ସମୟରେ ବାଲେଶ୍ୱରଠାରେ ଫକୀରମୋହନ ସେନାପତି, ରାଧାନାଥ ରାୟ ଓ ମଧୁସୂଦନ ରାଓଙ୍କ ଏକତ୍ର ଅବସ୍ଥାନ ଘଟିଥିଲା । ଏହାଥିଲା ଓଡ଼ିଆ ସାରସ୍ୱତ ସାଧନାର ତ୍ରିବେଣୀର ସଂଗମ ପୀଠ । ବିଶିଷ୍ଟ କବି ଓ ଆଲୋଚକ ଡ଼. ମାୟାଧର ମାନସିଂହଙ୍କ ଭାଷାରେ 'ଏମାନେ ଗୋଟିଏ ବୀଣାର ତିନୋଟି ତାର ; ଯେପରି ଏକ ଜାହ୍ନବୀ ତିନି ସ୍ରୋତରେ ବହିଯାଉଛି, ଏକ ତ୍ରିମୁଖ ଦେବତାର ତିନି ମୁଖରୁ ତିନି ବେଦ ନିଃସୃତ ହୋଇଛି ।' ରାଧାନାଥ ବାଲେଶ୍ୱର ଜିଲ୍ଲା ସ୍କୁଲ ସମୂହର ଡେପୁଟି ଇନ୍ସପେକ୍ଟର ହୋଇ ଜୁଲାଇ ୨୬ ତାରିଖ ୧୮୭୨ ମସିହାରୁ ବାଲେଶ୍ୱରରେ ଅବସ୍ଥାନ କରୁଥିଲେ । ମଧୁସୂଦନ ୧୮୭୩ ମସିହା ଅକ୍ଟୋବର ୨୯ ତାରିଖରେ ଯାଜପୁରରୁ ଆସି ବାଲେଶ୍ୱର ଜିଲ୍ଲାସ୍କୁଲରେ ଦ୍ୱିତୀୟ ଶିକ୍ଷକ ଭାବରେ ଯୋଗ ଦେଇଥିଲେ । ଫକୀରମୋହନ ନୀଳଗିରିର ଦେଓ୍ୱାନ (୧୮୭୧-୭୫) ଥାଇ ବାଲେଶ୍ୱରକୁ ବରାବର ଯିବା ଆସିବା କରୁଥିଲେ ।

ସେତେବେଳେ ବାଲେଶ୍ୱରରେ ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନର ଅବସାନ ଘଟିଥିଲା । ଏହି ଆନ୍ଦୋଳନର ମହାନାୟକ ଥିଲେ ସେନାପତି ଫକୀର ମୋହନ । ଯେଉଁଥିପାଇଁ ତାଙ୍କୁ 'ବେଟା ରିଙ୍ଗ୍‌ଲିଡ଼ାରୁ' ବୋଲି କଟୁ ମନ୍ତବ୍ୟ ଶୁଣିବାକୁ ପଡ଼ିଥିଲା । ସେ ବାଲେଶ୍ୱରଠାରେ ବହୁ ଶ୍ରମ ସ୍ୱୀକାର କରି 'ପି.ଏମ. ସେନାପତି ଏଣ୍ଡ କୋ - ଉତ୍କଳ ପ୍ରେସ୍' (୧୮୬୮) ପ୍ରତିଷ୍ଠା କରିଥିଲେ । ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଏହାର ପ୍ରାଚୀନତା ଓ ପ୍ରସାରତା ସପକ୍ଷରେ ବହୁ ପାଣ୍ଡିତ୍ୟପୂର୍ଣ୍ଣ ତଥା ଯୁକ୍ତିନିଷ୍ଠ ଲେଖାମାନ 'ବୋଧଦାୟିନୀ ଓ ବାଲେଶ୍ୱର ସମ୍ବାଦ ବାହିକା'ରେ ପ୍ରକାଶ କରି ସମଗ୍ର

ଓଡ଼ିଶାର ଜନମତକୁ ସଂଗଠିତ କରିଥିଲେ । ଫଳରେ ବାଲେଶ୍ୱରର ତତ୍‌କାଳୀନ କଲେକ୍ଟର ତଥା ଓଡ଼ିଆ ଭାଷା ହିତୈଷୀ ଜନବୀମସ୍‌ଙ୍କର ଖୁବ୍ ପ୍ରୀତିଭାଜନ ହୋଇପାରିଥିଲେ । ଏହି ସମୟରେ ବାଲେଶ୍ୱର ଜିଲ୍ଲା ସ୍କୁଲର ସଂସ୍କୃତ ପଣ୍ଡିତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ଓଡ଼ିଆ ଭାଷାର ସ୍ୱତନ୍ତ୍ରତା ଲୋପ କରିବା ଉଦ୍ଦେଶ୍ୟରେ 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନୟ' (୧୮୭୦) ନାମକ ଏକ କ୍ଷୁଦ୍ର ପୁସ୍ତିକା ଲେଖି ପ୍ରକାଶ କରିଥିଲେ । ଓଡ଼ିଆ ଭାଷା ଅନଭିଜ୍ଞ ପଣ୍ଡିତ ମହାଶୟ ସିନା ତରବରିଆ ଭାବରେ ପୁସ୍ତିକାଟି ଲେଖି ପକାଇଲେ, କିନ୍ତୁ ବାଲେଶ୍ୱର ତଥା ଓଡ଼ିଶାର ଶିକ୍ଷିତ ଚେତନଶୀଳ ଓଡ଼ିଆ ତଥା ଓଡ଼ିଆ ଭାଷାପ୍ରେମୀ ମାନଙ୍କ ବହୁ ସମାଲୋଚନାର ଶରବ୍ୟ ହୋଇଥିଲେ । ଏହି ପୁସ୍ତିକା ହିଁ ତାଙ୍କୁ ଓଡ଼ିଆ ଜାତି ପାଖରେ 'ଭାଷାଦ୍ରୋହୀ' ଭାବରେ ସବୁଦିନ ପରିଚିତ କରାଇଦେଲା । କାନ୍ତିବାବୁଙ୍କ ଓଡ଼ିଆ ଭାଷା ବିରୋଧୀ ମନୋଭାବକୁ ସେତେବେଳେ ବହୁ ଭାବରେ ସମର୍ଥନ ଜଣାଇଥିଲେ, ବାଲେଶ୍ୱରର ତତ୍‌କାଳୀନ ଜମିଦାର ବୃନ୍ଦାବନ ଚନ୍ଦ୍ର ମଣ୍ଡଳ, ଜିଲ୍ଲା ସ୍କୁଲର ହେଡ୍‌ମାଷ୍ଟର ଶ୍ରୀନାଥ ଦତ୍ତ ଏବଂ ବଙ୍ଗୀୟ ସବ୍‌ଇନ୍‌ସପେକ୍ଟର ପ୍ରତ୍ନତାତ୍ତ୍ୱିକ ରାଜେନ୍ଦ୍ରଲାଲ ମିତ୍ର ଏବଂ ଓଡ଼ିଆ ଲିପି ଉଚ୍ଛେଦର ପ୍ରବକ୍ତା ଉମାଚରଣ ହାଲଦାର । ଏଥିପୂର୍ବରୁ ଗୌରୀଶଙ୍କର ରାୟଙ୍କ ସମ୍ପାଦନାରେ କଟକରୁ ପ୍ରକାଶ ପାଇଥିଲା 'ଉତ୍କଳ ଦୀପିକା' (୧୮୬୬ ମସିହା) । ଓଡ଼ିଆ ଭାଷାର ପ୍ରାଚୀନତା, ଓଡ଼ିଆ ପାଠ୍ୟପୁସ୍ତକ ରଚନା, ପ୍ରାଚୀନ ଓ ଆଧୁନିକ ଓଡ଼ିଆ ସାହିତ୍ୟାଦିର ଆଲୋଚନା ପ୍ରକାଶ କରି ଓଡ଼ିଆ ଜାତୀୟ ଜୀବନରେ ନବ ଜାଗରଣ ସୃଷ୍ଟି କରିଥିଲେ । ଫଳରେ ଉଭୟ 'ଉତ୍କଳ ଦୀପିକା' (୧୮୬୬)ଏବଂ 'ବୋଧଦାୟିନୀ ଏବଂ ବାଲେଶ୍ୱର ସମ୍ବାଦ ବାହିକା' (୧୮୬୮) ଓଡ଼ିଆ ଭାଷା ସାହିତ୍ୟର ସୁରକ୍ଷା କବଚ ଭାବରେ କଟକ ଓ ବାଲେଶ୍ୱରରୁ ପ୍ରକାଶିତ ହୋଇ ସମଗ୍ର ଓଡ଼ିଶାରେ ଜନ ସଚେତନତାର ନେତୃତ୍ୱ ବହନ କରିଥିଲା । ଗୌରୀଶଙ୍କରଙ୍କ ସହିତ ଅନ୍ୟ ଯେଉଁ ଉତ୍କଳବାସୀ ଏବଂ ଉତ୍କଳ ଭାଷୀ ବଙ୍ଗୀୟମାନେ ଓଡ଼ିଆ ଭାଷା ସାହିତ୍ୟର ବିକାଶ ପାଇଁ ନିଷ୍ଠାପର ଉଦ୍ୟମ କରିଥିଲେ, ସେମାନେ ହେଲେ କବିବର ରାଧାନାଥ ରାୟ, 'ଉତ୍କଳ ହିତୈଷିଣୀ'ର ସମ୍ପାଦକ କାଳୀପଦ ବନ୍ଦ୍ୟୋପାଧ୍ୟାୟ, ସାହିତ୍ୟିକ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ, ନାଟ୍ୟକାର ଜଗନମୋହନ ଲାଲା, ନାଟ୍ୟକାର ରାମଶଙ୍କର ରାୟ, ଔପନ୍ୟାସିକ ଉମେଶ ଚନ୍ଦ୍ର ସରକାର, ଏବଂ ଓଡ଼ିଆ ଭାଷାପ୍ରେମୀ ବର୍ଦ୍ଧମାନ ଶିକ୍ଷା ବିଭାଗର ସ୍କୁଲ ଇନ୍ସପେକ୍ଟର ବାବୁ ଭୂଦେବ ମୁଖୋପାଧ୍ୟାୟ ।

ସେତେବେଳେ ବାଲେଶ୍ୱରରେ ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନକୁ ଚଳାଇବା ପାଇଁ ପୂର୍ଣ୍ଣପ୍ରାଣରେ ଫକୀର ମୋହନଙ୍କୁ ସମର୍ଥନ ଓ ସହଯୋଗ କରିଥିଲେ ରାଜା ବୈକୁଣ୍ଠନାଥ ଦେ ।

ତାଙ୍କ ଜୀବନକାଳରେ ବହୁ ବିଶିଷ୍ଟ ବ୍ୟକ୍ତି, ଉତ୍କଳର ରାଜା, ମହାରାଜା, ଇଂରେଜ ସାହେବ ତଥା ପ୍ରତିଭାଧର ଗୁଣୀ ଜନଙ୍କ ସହିତ ତାଙ୍କର ଖୁବ୍ ମଧୁର ସମ୍ପର୍କ ପ୍ରତିଷ୍ଠା ହୋଇଥିଲା । ଏଭଳି ସମ୍ପର୍କ ଦିନେ ଉତ୍କଳ ଦେଶ ଓ ଉତ୍କଳ ବାସୀଙ୍କର ବହୁ ହିତ ସାଧନ କରିଥିଲା । ଏଭଳି ବ୍ୟକ୍ତିତ୍ୱ ମଧ୍ୟରେ କବିବର ରାଧାନାଥ, ଭକ୍ତକବି ମଧୁସୂଦନ, ଉତ୍କଳଗୌରବ ମଧୁସୂଦନ ଦାସ, ବ୍ୟାସକବି ଫକୀର ମୋହନ ସେନାପତି, ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବ, କଲେକ୍ଟର ଜନ୍‌ବୀମସ୍ ସାହେବ ଏବଂ କମିଶନର ରେଭେନ୍ସା ସାହେବ ଥିଲେ ଅନ୍ୟତମ । ଫକୀରମୋହନ ବୈକୁଣ୍ଠନାଥ ଦେବଙ୍କ ବଦାନ୍ୟତା, ଧର୍ମପ୍ରାଣତା ସମାଜ ସେବା ଗୁଣ ତଥା ଓଡ଼ିଆ ଭାଷା ସୁରକ୍ଷା ଓ ବିଚ୍ଛିନ୍ନ ଉତ୍କଳ ଭୂମିର ଏକତ୍ରୀକରଣ ଜନିତ ଆଦ୍ୟ ପ୍ରୟାସ ଯୋଗୁଁ ତାଙ୍କର ଗୁଣଗାନକରି 'ଅବସରବାସରେ' ପୁସ୍ତକରେ ଲେଖିଛନ୍ତି:

ହେ ରାଜା ବୈକୁଣ୍ଠନାଥ ତୁମ୍ଭେ ହିଁ କେବଳ,
ଜନ୍ମିଛ ଉତ୍କଳେ ସାଧୁ ଦୃଷ୍ଟାନ୍ତର ସ୍ଥଳ ।
ଦେଶବାସୀ ନରନାରୀ ମଙ୍ଗଳ କାରଣ,
ଧନ-ମାନ-ପ୍ରାଣସର୍ବ କରିଛ ଅର୍ପଣ ।
ଉତ୍କଳ ଦେଶର ହେବ ଯେପରି ଉନ୍ନତି,
ଆଜୀବନ ସେଥିପାଇଁ ହୋଇଅଛ ବ୍ରତୀ ।
ବିଚ୍ଛିନ୍ନ ଉତ୍କଳ ଖଣ୍ଡ ହେବା ସମ୍ମିଳନ,
ନିଶ୍ଚୟ ଏଥିର ତୁମ୍ଭେ ଆଦିମ କାରଣ ।
କରିବାକୁ ଉତ୍କଳର ଭାଷାର ଉନ୍ନତି,
ଅକାତରେ ଦେଇଅଛ ବହୁତ ସମ୍ପତ୍ତି ।
ଯେ ନାମ ଅଙ୍କିତ କଲ ପୁରାଣ ଗ୍ରନ୍ଥରେ,
ଗାଇବେ ଉତ୍କଳବାସୀ ଯୁଗଯୁଗାନ୍ତରେ ।

ଆତ୍ମପର କିଛିମାତ୍ର ନକରି ବିଚାର,
ଅବିଶ୍ରାନ୍ତ କରୁଅଛ ପର ଉପକାର ।
କାଳସ୍ରୋତେ ଭାସିଗଲେ କେତେ ନରପତି,
ଥିଲା ତ ତାହାଙ୍କ ଦିନେ ବିପୁଳ ସମ୍ପତ୍ତି ।
କାହାନ୍ତି ସେମାନେ ଅବା ସେ ସମ୍ପତ୍ତି କାହିଁ ?
ଉତ୍କଳରେ ଥିବ ତୁମ୍ଭେ ଚିରଦିନ ପାଇଁ ।

ବ୍ୟାସକବି ଫକୀରମୋହନ ସେନାପତିଙ୍କ ଏଭଳି ଉକ୍ତି ଥିଲା ଯଥାର୍ଥ । କାରଣ ଜଣେ ପଡ଼ୋଶୀ, ଅନ୍ତରଙ୍ଗ ବନ୍ଧୁ, ସହକର୍ମୀ, ଜାତି ହିତୈଷୀ, ଭାଷା-ସାହିତ୍ୟ-ସଂସ୍କୃତିପ୍ରେମୀ ଏବଂ ଜଣେ ସରଳ ଧର୍ମପ୍ରାଣ ପରୋପକାରୀ ଶାସକ ଭାବରେ ଫକୀରମୋହନ ରାଜା ବାହାଦୁର ବୈକୁଣ୍ଠନାଥ ଦେଙ୍କୁ ବନ୍ଧୁଭାବରେ ଆପଣାର ଭାବି ପ୍ରଶଂସା ନକରି ରହିପାରି ନାହାନ୍ତି ।

ସେମାନଙ୍କ ପରସ୍ପର ସମ୍ପର୍କ ଥିଲା ଅତି ନିବିଡ଼ । ପ୍ରଥମତଃ ବାଲେଶ୍ୱର ଥିଲା ଉଭୟଙ୍କ ଜନ୍ମ, କର୍ମ, ସାଧନା ଓ ମୃତ୍ୟୁପୀଠ । ଉଭୟେ ବାଲ୍ୟ ଜୀବନରେ ଓ ଶିକ୍ଷାର୍ଜନ କ୍ଷେତ୍ରରେ ବାଲେଶ୍ୱରକୁ ଅତି ନିଜର କରି ନେଇଥିଲେ । ସେତେବେଳେ ବାଲେଶ୍ୱର ଆଧୁନିକ ଶିକ୍ଷାର୍ଜନ ପୀଠ ରୂପେ ପରିଚିତ ଥିଲା ଏବଂ ରାଧାନାଥ, ମଧୁସୂଦନ, ଫକୀରମୋହନ, ବାବୁ ମଧୁସୂଦନ ଦାସ, ଚନ୍ଦ୍ରମୋହନ ମହାରଣା ଓ ନନ୍ଦକିଶୋର ବଳ ପ୍ରଭୃତି ଓଡ଼ିଶାର ପ୍ରତିଭାସମ୍ପନ୍ନ ସାହିତ୍ୟ ସ୍ରଷ୍ଟା ତଥା ଶିକ୍ଷାବିତ୍ ମାନଙ୍କର ସାହଚର୍ଯ୍ୟରେ ଆସି ବୈକୁଣ୍ଠନାଥ ଦେ ବିଭିନ୍ନ ସାହିତ୍ୟ ଆଲୋଚନା ଓ ସାଂସ୍କୃତିକ ସଭାରେ ଯୋଗ ଦେଉଥିଲେ । । ପରବର୍ତ୍ତୀ କାଳରେ ଏଠାରେ ଦେଖା ଦେଇଥିବା ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନ, ପାଠ୍ୟପୁସ୍ତକ ରଚନା, ସାହିତ୍ୟ ସାଧନା, ପ୍ରେସ୍ ସ୍ଥାପନ, ପତ୍ରିକା ପ୍ରକାଶନ, ବିବିଧ ପାଠ୍ୟପୁସ୍ତକ ମୁଦ୍ରଣ, ସ୍କୁଲ ପ୍ରତିଷ୍ଠା ତଥା ସମାଜ ହିତକର କାର୍ଯ୍ୟରେ ଫକୀରମୋହନଙ୍କ ସହିତ ବୈକୁଣ୍ଠ ନାଥ ଦେ ମଧ୍ୟ ମିଳିତ ପଦକ୍ଷେପ ନେଇଥିଲେ । ବାଲେଶ୍ୱରରେ ସେତେବେଳେ ଯେଉଁମାନଙ୍କୁ ନେଇ ସାରସ୍ୱତ ସମାବେଶ ଘଟିଥିଲା, ସେମାନେ ହେଲେ ରାଧାନାଥ ରାୟ, ଫକୀର ମୋହନ ସେନାପତି, ଦାମୋଦର ପ୍ରସାଦ ଦାସ, ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ, ଜୟକୃଷ୍ଣ ଚୌଧୁରୀ, ଭୋଳାନାଥ ସାମନ୍ତରାୟ, ବୈକୁଣ୍ଠ ନାଥ ଦେ, ବାବୁ ଭଗବାନ ଚନ୍ଦ୍ର

ଦାସ, ସମାଜ ରାଧାଚରଣ ଦାସ (ଫକବାବୁ), ଅସରଫ୍ ଅଲ୍ଲି ଖାଁ ଓ ଅନ୍ୟ ଜଣେ ଓଡ଼ିଆ ହିତୈଷୀ ଜନ୍‌ବିମସ୍ ସାହେବ ।

ଫକୀରମୋହନ ବାଲେଶ୍ୱରର ସ୍ୱନାମଧନ୍ୟ ରାଜାବାହାଦୂର ଶ୍ୟାମାନନ୍ଦ ଦେ ଓ ତାଙ୍କ ପୁତ୍ର ବୈକୁଣ୍ଠନାଥ ଦେ'ଙ୍କ ବଦାନ୍ୟତା, ଧାର୍ମିକ ତଥା ଜନ ହିତକର କାର୍ଯ୍ୟରେ ପ୍ରୀତ ହୋଇ ରାଜପରିବାର ପ୍ରତି ଯେତିକି ସମ୍ମାନ ପ୍ରଦର୍ଶନ କରୁଥିଲେ, ବୈକୁଣ୍ଠନାଥ ଦେଙ୍କୁ ଜୀବନର ଜଣେ ପରମ ସୁହୃଦ୍ ତଥା ସହକର୍ମୀ ବନ୍ଧୁତୁଲ୍ୟ ବରାବର ଦେଖୁଥିଲେ । ବୈକୁଣ୍ଠନାଥ ଦେ ମଧ ଫକୀରମୋହନ ଓ ରାଧାନାଥଙ୍କୁ ସାହିତ୍ୟିକ ଓ କବି ଭାବରେ ସର୍ବଦା ସମ୍ମାନ ଦେଉଥିଲେ । ବିଶେଷ କରି ଫକୀରମୋହନଙ୍କ ବିଚକ୍ଷଣତା, ନେତୃତ୍ୱ ଦେଶ ଓ ଜାତିପ୍ରୀତି, ମାତୃଭାଷା ଓ ସମାଜସେବା ତାଙ୍କୁ ମୁଗ୍ଧ କରିଥିଲା । ସମ୍ଭବତଃ ଫକୀରମୋହନଙ୍କ ସହିତ ବୈକୁଣ୍ଠନାଥ ଦେଙ୍କ ସର୍ବପ୍ରଥମ ସମ୍ପର୍କ ସୃଷ୍ଟି ହୁଏ ବାଲେଶ୍ୱର ବାରବାଟୀ ବଙ୍ଗୋହଳ ସ୍କୁଲରୁ । ବାଲେଶ୍ୱର ଗଭର୍ଣ୍ଣମେଣ୍ଟ ସ୍କୁଲର ତତ୍‌କାଳୀନ ସେକେଣ୍ଡ ମାଷ୍ଟର ବାବୁ ଶିବଚନ୍ଦ୍ର ସୋମ ସ୍କୁଲର ସମ୍ପାଦକ ଥାଇ ଉକ୍ତ ସ୍କୁଲର ପ୍ରଥମ ଛାତ୍ର, ଯାହାର କି ଚାରିଅଣା ମାସିକ ବେତନ ଅଭାବରୁ ପାଠପଢ଼ା ବନ୍ଦ ହୋଇଥିଲା, ସେହି ଫକୀରମୋହନଙ୍କୁ ନିଜେ ଡ଼ାକି ଉକ୍ତ ସ୍କୁଲର ତୃତୀୟ ଶିକ୍ଷକ ପଦରେ ନିଯୁକ୍ତି ଦେଇଥିଲେ । ଶ୍ରୀଯୁକ୍ତ ଜୟକୃଷ୍ଣ ଚୌଧୁରୀ ଥିଲେ ଉକ୍ତ ସ୍କୁଲର ଦ୍ୱିତୀୟ ଶିକ୍ଷକ ପଦରେ । କେତେବର୍ଷ ପରେ ଉକ୍ତ ସ୍କୁଲଟି ବାବୁ ଭଗବାନ ଚନ୍ଦ୍ର ଦାସଙ୍କ ସ୍କୁଲ ସହିତ ମିଶି ବାରବାଟୀ ସ୍କୁଲରେ ପରିଣତ ହେଲା । ଏଠାରେ କିଛିବର୍ଷ ଶିକ୍ଷକତା କରି ଚୌଧୁରୀ ମହାଶୟ ଶେଷ ପର୍ଯ୍ୟନ୍ତ ଡାକ୍ତରି ବ୍ୟବସାୟ କରିଥିଲେ । ବାଲେଶ୍ୱରରୁ ପ୍ରକାଶିତ 'ସମ୍ବାଦ ବାହିକା' ସର୍ବ ପ୍ରଥମେ ଏହାଙ୍କ ଦ୍ୱାରା ପରିଚାଳିତ ହୋଇଥିଲା । ପରେ ବୈକୁଣ୍ଠ ନାଥ ଦେଙ୍କ ସହିତ ମିଶି ଫକୀରମୋହନ ଜନସାଧାରଣଙ୍କ କାର୍ଯ୍ୟରେ ଯୋଗ ଦେଇଥିଲେ । ଅବଶ୍ୟ କେତେକ କ୍ଷେତ୍ରରେ ପରସ୍ପର ମଧ୍ୟରେ ସାମାନ୍ୟ ମତ ପାର୍ଥକ୍ୟ ଦେଖାଦେଇଥିଲା । କିନ୍ତୁ ତାହା ଉଭୟଙ୍କ ସମ୍ପର୍କକୁ ଅଧିକ ଘନିଷ୍ଠ କରି ବନ୍ଧୁତାକୁ ଚିର ଅକ୍ଷୁଣ୍ଣ ରଖିଥିଲା ।

ସେତେବେଳେ ଓଡ଼ିଆଭାଷୀ ସ୍କୁଲର ଖୁବ୍ ଅଭାବ ଥିଲା । ରେମୁଣାଠାରେ ଏକ ମିଡ଼ିଲ ଭର୍ଣ୍ଣାକୁଲର ସ୍କୁଲ (୧୮୬୭-୬୮) ପ୍ରତିଷ୍ଠା ଉଦ୍ଦେଶ୍ୟରେ ଦିନେ ସ୍କୁଲ ବିଭାଗୀୟ ଡେପୁଟି ଇନିସ୍‌ପେକ୍ଟର ବାବୁ ଶ୍ରୀନିବାସ ଭଟ୍ଟାଚାର୍ଯ୍ୟ, ପ୍ରଧାନ ଶିକ୍ଷକ

ପାଇଁ ନନ୍ଦ କୁମାର ଭଟ୍ଟାଚାର୍ଯ୍ୟଙ୍କ ସହିତ ରାଧାନାଥ ରାୟ, ଫକୀରମୋହନ ଓ ରାଜା ବୈକୁଣ୍ଠନାଥ ଦେ ରେମୁଣାରେ ଉପସ୍ଥିତ ହୋଇଥିଲେ । 'ହିସାବ କରି ଦେଖାଗଲା ଯେ, ଦୁଇ ଜଣ ଶିକ୍ଷକ, ଜଣେ ଚାକର ଏବଂ ଅନ୍ୟାନ୍ୟ ଖରଚ ପାଇଁ ମାସିକ ପଶିଚ ଟଙ୍କା ଆବଶ୍ୟକ । ମହାରାଜା ବାହାଦୁର (ସେ ସମୟରେ ରାଜା ବୈକୁଣ୍ଠନାଥ ଦେ) ସମସ୍ତ ବ୍ୟୟ ଏକାକୀ ବହନ କରିବା ସକାଶେ ପ୍ରସ୍ତୁତ ହୋଇ ଏକବର୍ଷର ଖରଚ ନିମନ୍ତେ ମୋ ହସ୍ତରେ ଅଗ୍ରୀମ ୩୦୦ ଟଙ୍କା ପ୍ରଦାନ କଲେ ।' ସୁସାହିତ୍ୟିକ ଚନ୍ଦ୍ରମୋହନ ମହାରଣା ଲେଖିଛନ୍ତି, "ମୁଁ ବାଲ୍ୟକାଳରେ ଯେଉଁ ବିଦ୍ୟାଳୟରେ ପଢ଼ିଥିଲି, ତାହା ଆଜିକାଲି ବିଦ୍ୟମାନ । ତାହାର ବୟଃକ୍ରମ ପ୍ରାୟ ପଚାଶବର୍ଷ ହେଲା । ଦିନେ ରାଧାନାଥ, ବୈକୁଣ୍ଠନାଥ ଓ ଫକୀରମୋହନ ଯାଇ ରେମୁଣା ମଧ୍ୟୋହଳ ବିଦ୍ୟାଳୟଟି ସ୍ଥାପନ କରି ଆସିଲେ । + + + ଏଥିରେ ଶିକ୍ଷାଲାଭ କରି କେତେଗୁଡ଼ିଏ ଲୋକ ଓଡ଼ିଶାରେ, କେତେଗୁଡ଼ିଏ ବ୍ରହ୍ମଦେଶରେ, କେହି ବା ମଧ୍ୟପ୍ରଦେଶରେ ଭିନ୍ନଭିନ୍ନ କ୍ଷେତ୍ରରେ କାର୍ଯ୍ୟ କରୁଅଛନ୍ତି ।" (ଚନ୍ଦ୍ରମୋହନ ଗ୍ରନ୍ଥାବଳୀ ସଂ. ଅରବିନ୍ଦ ଗିରି - ପୃ )

ଖ୍ରୀ : ୧୮୮୩ ରେ ରାଜା ବୈକୁଣ୍ଠନାଥ ଦେ ଓଡ଼ିଶାରୁ ପ୍ରଥମଥର ପାଇଁ ବଙ୍ଗୀୟ ବ୍ୟବସ୍ଥାପକ ସଭାର ସଭ୍ୟ ପଦରେ ମନୋନୀତ ହୋଇଥିବାରୁ ବାଲେଶ୍ୱର National Society and the Residents ପକ୍ଷରୁ ତାଙ୍କୁ ଏପ୍ରିଲ ୬, ୧୮୮୪ ମସିହାରେ ଯେଉଁ ସମ୍ବର୍ଦ୍ଧନା ଦିଆଯାଇଥିଲା, ସେଥିରେ ଜମିଦାର ବ୍ରଜ କୁମାର ମିତ୍ର, ଜମିଦାର ରାଧାମାଧବ ଦାସ, 'ସମ୍ବାଦ ବାହିକା'ର ସମ୍ପାଦକ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, ସମ୍ମାନାସ୍ପଦ ମାଜିଷ୍ଟ୍ରେଟ୍ ଦେବନାଥ ଦେଓ ସହିତ ଢ଼େଙ୍କାନଳର ପୂର୍ବତନ ଦେଓ୍ୱାନ ଫକୀରମୋହନ ସେନାପତି ଓ ସରକାରୀ ଓକିଲ ଅବଦୁଲ ଶୋଭନ ଖାଁ, ସିରସ୍ତାଦାର ଶ୍ୟାମସୁନ୍ଦର ଦାସ ତଥା ଅନ୍ୟାନ୍ୟ ଚାଳିଶ ଜଣ ଉପସ୍ଥିତ ଥିଲେ । ପ୍ରଦତ୍ତ ମାନପତ୍ରରେ ଉଲ୍ଲେଖ ଥିଲା - "You have spared no pains to improve the social, intellectual and moral condition of the people by your liberal aid to many public institutions; and by giving pecuniary assistance to many poor boys you have become the promoter of eduction in Orissa."

ଏହାଛଡ଼ା ଫକୀରମୋହନଙ୍କ ସହିତ ଘନିଷ୍ଠ ବନ୍ଧୁତା ସ୍ୱରୂପ ରାଜା ବୈକୁଣ୍ଠନାଥ ଦେ ନିଜ ପ୍ରେସ୍‌ରେ ତାଙ୍କ ସମଗ୍ର ରାମାୟଣର ଉତ୍କଳ ପଦ୍ୟାନୁବାଦ ଓ 'ବୈଦ୍ଧାବତାର କାବ୍ୟ' ମୁଦ୍ରଣ କରିଥିଲେ । ଫକୀରମୋହନ ଲେଖିଛନ୍ତି 'ଢେଙ୍କାନାଳରୁ ଚାଲିଆସି ବାଲେଶ୍ୱରରେ ବ୍ୟର୍ଥ ହୋଇ ବସି ରହିଥାଏଁ । + + + ରାମାୟଣ କେତେ ଖଣ୍ଡ ଛପା ହୋଇଯାଇଥିଲା । ଅବଶିଷ୍ଟ କାଣ୍ଡମାନ ଛପା ସକାଶେ ଅର୍ଥାଭାବ ହେଲା । କୁମାର ବୈକୁଣ୍ଠନାଥ ଦେ ସ୍ୱତନ୍ତ୍ର ରୂପେ ସାତଖଣ୍ଡ ରାମାୟଣ ଛପାଇବାକୁ ସ୍ୱୀକୃତ ହେଲେ । ପ୍ରକାଶକ ସ୍ୱରୂପ ରାଜା ଶ୍ୟାମାନନ୍ଦ ଦେ ବାହାଦୁରଙ୍କ ନାମରେ ପୁସ୍ତକ ମୁଦ୍ରିତ ହେବା କଥା ସ୍ଥିର ହେଲା । ରାଜା ବାହାଦୁର ପୁରସ୍କାର ସ୍ୱରୂପ ମୋତେ ସାଢ଼େ ସାତଶହ ଟଙ୍କା ଦେଲେ । ପୂର୍ବରୁ କିଛି ଦେଣା ଥିଲା । ସେହି ଟଙ୍କାରେ ସମସ୍ତ ଦେଣା ପରିଶୋଧ କରି ପକାଇଲି ।' ଆହୁରି ଲେଖିଛନ୍ତି – 'ତହିଁ ପରଦିନ ପ୍ରଦାର୍ଶନୀ ଦେଖିବା ସକାଶେ କଲିକତା ଚାଲିଗଲି । ପନ୍ଦର କୋଡ଼ିଏ ଦିନ ଉତ୍ତାରେ ବାଲେଶ୍ୱରକୁ ଫେରି ଆସିଲି ।" ଏହା ନିଶ୍ଚିତ ଯେ, ବୈକୁଣ୍ଠନାଥ ଦେ ୧୮୮୩-୮୪ ମଧ୍ୟରେ ବଙ୍ଗୀୟ ବ୍ୟବସ୍ଥାପକ ସଭାରେ ଓଡ଼ିଶାର ସଭ୍ୟଥିବା ସମୟରେ ୧୮୮୪ ରେ କଲିକତା ନଗରୀରେ ଯେଉଁ International Exhibition ଖୋଲା ଯାଇଥିଲା, ସେଥିରେ ବୈକୁଣ୍ଠନାଥ ଦେ ବହୁ ଖର୍ଚ୍ଚାନ୍ତ ହୋଇ ସମଗ୍ର ଓଡ଼ିଶାରୁ ବହୁବିଧ କୃଷି, ଯାନ୍ତ୍ରିକ ତଥା ଅନ୍ୟାନ୍ୟ ଆକର୍ଷଣୀୟ ଦ୍ରବ୍ୟ ପଠାଇଥିଲେ ଏବଂ ପ୍ରଦର୍ଶନୀରେ ତାଙ୍କୁ ସାହାଯ୍ୟ କରିବା ତଥା ପ୍ରଦର୍ଶନୀ ଦେଖିବା ଉଦ୍ଦେଶ୍ୟରେ ଫକୀରମୋହନ ଓ ରାଧାନାଥ ମଧ୍ୟ ଓଡ଼ିଶାରୁ ଯୋଗଦେଇଥିଲେ । ଏଥିପାଇଁ ଫକୀରମୋହନ ତାଙ୍କ ରଚିତ 'ଉତ୍କଳ ଭ୍ରମଣ' କାବ୍ୟ (୧୯୦୮) ରେ ଓଡ଼ିଶାର କୃତୀ ଅମର ସନ୍ତାନମାନଙ୍କୁ ସ୍ମରଣ କରି ସେମାନଙ୍କ ଗୁଣ ଓ ସୁଖ୍ୟାତି ବର୍ଣ୍ଣନା କରିଛନ୍ତି । ବୈକୁଣ୍ଠନାଥ ଦେ'ଙ୍କ ପ୍ରସଙ୍ଗରେ ସେ ଲେଖିଛନ୍ତି:

"ହେ ବୈକୁଣ୍ଠନାଥ ଦେ ରାଜା ବାହାଦୁର !
ସତେ ସତେ ତୁମ୍ଭେ ଜଣେ ଅଟ ବାହାଦୁର ।
କରିବାକୁ ଦେଶ ଉପକାର ବୀରପଣେ,
ନଥିଲା ନ ହେବ ନାହିଁ ତୁମ୍ଭପରି ଜଣେ ।
ତୁମ୍ଭର ଅକ୍ଷୟକୀର୍ତ୍ତି ରାଜା ବାହାଦୁର,
ବାଲେଶ୍ୱର ମଧ୍ୟେ ଖୋଳ ନେଉଳା ପୁକୁର ।

ହେବ ଏହା ଉପକାରୀ ସୌନ୍ଦର୍ଯ୍ୟର ଖଣି,
ମୋତିଗଞ୍ଜ ହୃଦୟରେ କଉସ୍ତୁଭ ମଣି ।
ଧନ୍ୟ ଧନ୍ୟ ଧନ୍ୟ ତୁମ୍ଭ ନାମ ପ୍ରତି ଟାଣ,
ଦୀର୍ଘଜୀବୀ ହୁଅ ରାଜା କରୁଛି କଲ୍ୟାଣ ।
ତୁମ୍ଭର ମହତ କାର୍ଯ୍ୟ ସକାଶେ ବୈକୁଣ୍ଠ,
ରଖିବ ଜଗତେ କୀର୍ତ୍ତି, ଲଭିବ ବୈକୁଣ୍ଠ ।"

ସେହି ଫକୀରମୋହନ ପୁଣି ସ୍ୱୀକାର କରିଛନ୍ତି ନିଃସଙ୍ଗ ଜୀବନରେ ପୃଷ୍ଠବ୍ରଣ ଜନିତ ଦାରୁଣ ଯନ୍ତ୍ରଣା ଭୋଗ କରୁଥିବାବେଳେ ବୈକୁଣ୍ଠନାଥ ଦେ ରାଜଦ୍ୱାର ଓ ଶ୍ମଶାନର ବନ୍ଧୁତୁଲ୍ୟ ତାଙ୍କଠାରେ ପହଞ୍ଚି ବରାବର ତାଙ୍କର ସୁବିଧା ଅସୁବିଧା କଥା ବୁଝୁଥିଲେ ତଥା ସାନ୍ତ୍ୱନା ଦେଉଥିଲେ । "ସେହି ସମୟରେ ଦିନେ ସକାଳେ ମହାରାଜା ବୈକୁଣ୍ଠନାଥ ଦେ ବାହାଦୁର ହାତରେ ଯୋଡ଼ିଏ ପତ୍ର ଧରି ମୋ ନିକଟରେ ଉପସ୍ଥିତ ହୋଇ ମୋତେ କହିଲେ," ଫକୀରମୋହନ ବାବୁ ଏହା 'ଗୁହାଳିଆ ପତ୍ର' । ମୁଁ କହୁଛି ଆପଣ ଏହି ପତ୍ର ବ୍ରଣ ଉପରେ ଲଗାନ୍ତୁ, ନିଶ୍ଚୟ ଭଲ ହୋଇଯିବେ । ସେହି ପତ୍ର ବ୍ୟବହାର କରିବାକୁ ସ୍ୱୀକୃତି ଦେଲି । ମହାରାଜା ମୋ ସହିତ କେତେ ଦଣ୍ଡ ପର୍ଯ୍ୟନ୍ତ କଥୋପକଥନ କରି ମେଲାଣି ଘେନିବା ସମୟରେ କହିଲେ, 'ଫକୀରମୋହନବାବୁ, ମୁଁ କାଲି କଲିକତା ଯାଉଛି । ବାହୁଡ଼ି ଅଇଲେ ଦେଖା ହେବ । ହାୟ ! ବାଲେଶ୍ୱର ପକ୍ଷରେ କି ଦୁର୍ଭାଗ୍ୟର ବିଷୟ । ମହାରାଜାଙ୍କୁ ଆଉ ବାହୁଡ଼ିବାକୁ ହେଲା ନାହିଁ । ଓଲାଓଠା ରୋଗରେ କଲିକତାରେ ସେ ପ୍ରାଣତ୍ୟାଗ କଲେ । ମୁଁ ରୋଗ-ଶଯ୍ୟାରେ ପଡ଼ି ତାଙ୍କର ମୃତ୍ୟୁ ସମ୍ବାଦ ଶୁଣିଲି । ମହାରାଜଙ୍କ ପରି ପରୋପକାରୀ ଲୋକ ଅତି ଅଳ୍ପ ଦେଖିଛି । ମୋ ପ୍ରତି କୌଣସି ବିପତ୍‌ପାତ ବା ପୀଡ଼ା ସମ୍ବାଦ ଶୁଣିବା ମାତ୍ରେ, ସେ ମୋ ପାଖକୁ ଧାଇଁ ଆସୁଥିଲେ । କେବଳ ମୋ କଥା ବୋଲି ନୁହେଁ, ସହର ମଧ୍ୟରେ କୌଣସି ଭଦ୍ରଲୋକର ପୀଡ଼ା ସମ୍ବାଦ ଶୁଣିବାମାତ୍ରେ ତାହା ପାଖକୁ ଧାଇଁ ଯାଇ ତାହାର ଉପକାର କରିବାକୁ ପ୍ରସ୍ତୁତ ହେଉଥିଲେ । ବାଲେଶ୍ୱରରେ ଶିକ୍ଷାବିସ୍ତାର, ଉତ୍କଳ ଭାଷାର ଉନ୍ନତି ସାଧନ ଏବଂ ସାଧାରଣ ହିତଜନକ କାର୍ଯ୍ୟରେ ମହାରାଜା ଅଗ୍ରଣୀ ଥିଲେ ।" ଏଥିରୁ ଫକୀରମୋହନଙ୍କ ସହିତ ବୈକୁଣ୍ଠନାଥ ଦେଙ୍କର କ୍ଷୀରନୀର ସମ୍ପର୍କ ବିଷୟ ବେଶ୍ ଉପଲବ୍ଧ ହୁଏ ।



# ମହାରାଜା ଶ୍ରୀରାମଚନ୍ଦ୍ର ଓ
# ବ୍ୟାସକବି ଫକୀରମୋହନ

ଉନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଥିଲା ଓଡ଼ିଶା ବାସୀଙ୍କ ପାଇଁ ଏକ ଘଡ଼ିସନ୍ଧିର ମୁହୂର୍ତ୍ତ । ୧୮୬୬ର କରାଳ ନ'ଅଙ୍କ ଦୁର୍ଭିକ୍ଷ ଓଡ଼ିଶାର ସାମାଜିକ ଜୀବନଧାରାକୁ ଧ୍ୱଂସସ୍ତୁପରେ ପରିଣତ କରି ଆର୍ଥିକ ମାନଦଣ୍ଡକୁ ସମ୍ପୂର୍ଣ୍ଣ ନଷ୍ଟ କରି ଦେଇଥିଲା । ଏଥିପାଇଁ ଓଡ଼ିଶା ବାସୀଙ୍କ ଅଜ୍ଞତା ତଥା ତତ୍‌କାଳୀନ ଓଡ଼ିଶାର କମିଶନ୍‌ର ରେଭେନ୍‌ସା ସାହେବଙ୍କ ଉଦାସୀନତା ମୁଖ୍ୟତଃ ଦାୟୀ । ଆସନ୍ନ ଦୁର୍ଭିକ୍ଷର କରାଳ ଦୃଶ୍ୟ ରେଭେନ୍‌ସାଙ୍କ ହୃଦୟରେ ଦାରୁଣ ଆଘାତ ସୃଷ୍ଟି କରିଥିଲା । ଫଳରେ ସେ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ପାଇଁ ସଂକଳ୍ପବଦ୍ଧ ହୋଇ ଶିକ୍ଷା, ସଂସ୍କୃତି, ଶାସନ, ଆର୍ଥନୀତିକ ବିକାଶ କ୍ଷେତ୍ରରେ ମନପ୍ରାଣ ଢାଳିଦେଇଥିଲେ । ବାଲେଶ୍ୱରର ତତ୍‌କାଳୀନ କଲେକ୍ଟର ଜନ୍‌ବୀମସ୍ ସାହେବ ଓଡ଼ିଆ ଭାଷା ସଂସ୍କୃତି-ପ୍ରେମୀ, ବିଦ୍ୱାନ ପଣ୍ଡିତ, ଶାସକ ଏ କ୍ଷେତ୍ରରେ ରେଭେନ୍‌ସା ସାହେବଙ୍କୁ ସହଯୋଗ କରିଥିଲେ । ରେଭେନ୍‌ସା ସାହେବଙ୍କ ପ୍ରଚେଷ୍ଟା ଫଳରେ କଟକ ସ୍କୁଲ, କଟକ କଲେଜ ଓ ମେଡିକାଲ ସ୍କୁଲ ପ୍ରତିଷ୍ଠା ହୋଇ ଓଡ଼ିଶାକୁ ଏକ ନୂତନ ସଭ୍ୟତାର ଆଲୋକ ଦେଖାଇଥିଲେ । ଏଥି ସହିତ ଓଡ଼ିଶା କହିଲେ ବୁଝାଉଥିବା ବାଲେଶ୍ୱର, କଟକ ଓ ପୁରୀରେ ଆଧୁନିକ ସ୍କୁଲସବୁ ଗଢ଼ିଉଠିଥିଲା । କମିଶନର ରେଭେନ୍‌ସା ସାହେବ ଓଡ଼ିଶାର ସୀମିତ ରାଜସ୍ୱ ମଧ୍ୟରେ ଓଡ଼ିଶାବାସୀଙ୍କ ପାଇଁ ଜନହିତକର କାର୍ଯ୍ୟ କରିବାର ସ୍ୱପ୍ନ ଦେଖୁଥିଲେ । ଏଥିପାଇଁ ଗଡ଼ଜାତ ଓ ଅନ୍ୟାନ୍ୟ ରାଜାମାନଙ୍କ ଠାରୁ ଆର୍ଥିକ ସାହାଯ୍ୟ ଲୋଡ଼ୁଥିଲେ । ରେଭେନ୍ସା ସାହେବଙ୍କ ଅନୁରୋଧକୁ ରକ୍ଷା କରି ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜଦେବ ବହୁ ଅର୍ଥ ଦାନ କରିଥିଲେ । ଏହି ରାଜବଂଶର ଉତ୍ତରାଧିକାରୀ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବ ଓଡ଼ିଶାର ଶିକ୍ଷା, ସଂସ୍କୃତି,କଳା, ସାହିତ୍ୟ ଓ ସ୍ୱାସ୍ଥ୍ୟର ଉନ୍ନତି ପାଇଁ ମଧ୍ୟ ବହୁ ଅର୍ଥ ବ୍ୟୟ କରି ଯାଇଛନ୍ତି ।

କଟକ କଲେଜ (ରେଭେନ୍ସା), କଟକ ମହାରାଣୀ ଭିକ୍ଟୋରିଆ ହଲ୍, କଟକ ମେଡିକାଲ ସ୍କୁଲ ସ୍ଥାପନ ପାଇଁ ବହୁଅର୍ଥ ଦାନ କରିଥିଲେ । ମହାରାଜା ରାମଚନ୍ଦ୍ର

ଦେବଙ୍କ ଅନୁଦାନ ଫଳରେ ରେଭେନ୍ସା କଲେଜର ବିଜ୍ଞାନ ବିଭାଗର ସର୍ବବିଧ ଉନ୍ନତି ସାଧିତ ହୋଇଥିଲା । ସମଗ୍ର ଓଡ଼ିଶାବାସୀଙ୍କ ସ୍ୱାର୍ଥ ଓ କଲ୍ୟାଣ ଦୃଷ୍ଟିରୁ ସେ କଟକ ମେଡିକାଲ କଲେଜ ପ୍ରତିଷ୍ଠାକୁ ଅଧିକ ଯୁକ୍ତିଯୁକ୍ତ ବିଚାର କରି ଆର୍ଥିକ ଅନୁଦାନ ଦେଇଥିଲେ । ଚାହିଁଥିଲେ ସେ ନିଜେ ଏଭଳି ହସ୍‌ପିଟାଲଟି ନିଜ ଗଡ଼ ବାରିପଦା ଠାରେ କରିପାରିଥାନ୍ତେ । କଟକର 'ଉତ୍କଳ ସାହିତ୍ୟ ସମାଜ' ଗୃହ, ଶ୍ରୀରାମଚନ୍ଦ୍ର ଭବନ (ଟାଉନ୍‌ହଲ୍), ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରେସ୍, ବାଲେଶ୍ୱର ଶ୍ରୀରାମଚନ୍ଦ୍ର ସଂସ୍କୃତ ମହାବିଦ୍ୟାଳୟ, ବାଲେଶ୍ୱର ମୟୂରଭଞ୍ଜ କୋଠୀ-ବ୍ରହ୍ମମନ୍ଦିର, ସୁଏଲପୁର ଜଗନ୍ନାଥ ମନ୍ଦିର, ଲକ୍ଷ୍ମୀନାରାୟଣ ମନ୍ଦିର, ବାରିପଦା ରାଜଉଆସ, ପୂର୍ଣ୍ଣଚନ୍ଦ୍ର ଭଞ୍ଜ ମହାବିଦ୍ୟାଳୟ, କୁବୁଲି ପାଠାଗାର, ହସ୍‌ପିଟାଲ, ମହାରାଣୀ ଲକ୍ଷ୍ମୀକୁମାରୀ ଧର୍ମଶାଳା, ବାରିପଦା ଜଗନ୍ନାଥ ମନ୍ଦିର, ମାଣତ୍ରୀ କଖାରୁଆ ବୈଦ୍ୟନାଥ ମନ୍ଦିର, ଅମ୍ବିକା ମନ୍ଦିର ଓ ଖିଚିଂ କିଚେକେଶ୍ୱରୀ ମନ୍ଦିର ଆଦି ଏହି ବଂଶର ଅକ୍ଷୟ କୀର୍ତ୍ତି ।

ଓଡ଼ିଆ ଭାଷା-ସାହିତ୍ୟ ସୁରକ୍ଷାପାଇଁ ପ୍ରଥମେ ଜନଜାଗରଣ ଦେଖାଦେଇଥିଲା ବାଲେଶ୍ୱର ଓ କଟକରେ । ବ୍ୟାସକବି ଫକୀର ମୋହନ ସେନାପତି ବାଲେଶ୍ୱରରୁ ଏବଂ ଗୌରୀଶଙ୍କର ରାୟ କଟକରୁ ଏହାର ନେତୃତ୍ୱ ନେଇଥିଲେ । ଫକୀର ମୋହନଙ୍କୁ ଏଥିପାଇଁ ବାଲେଶ୍ୱରରେ ଉତ୍କଳ ଭାଷା ବିଦ୍ୱେଷୀ ବହୁବଙ୍ଗୀୟ ମାନଙ୍କ ହୀନଚକ୍ରାନ୍ତର ସମ୍ମୁଖୀନ ହେବାକୁ ପଡ଼ିଥିଲା । ମାତ୍ର ଫକୀର ମୋହନଙ୍କ ବିଚକ୍ଷଣ ବୁଦ୍ଧି, ଜନମାନସକୁ ସଂଗଠନ କରିବାର ଦକ୍ଷତା ମାତୃଭାଷା ସାହିତ୍ୟ ବିଷୟରେ ପାଣ୍ଡିତ୍ୟ ତଥା ଇଂରେଜ ଶାସକ ମାନଙ୍କୁ ଓଡ଼ିଆ ଭାଷାର ପ୍ରାଚୀନତା ଓ ବହୁଳ ବ୍ୟବହାର ବିଷୟରେ ବୁଝାଇପାରିବାର ପ୍ରଶାସନିକ କୌଶଳ ଓଡ଼ିଆ ଭାଷାର ସୁରକ୍ଷା ବ୍ୟବସ୍ଥାକୁ ସୁଦୃଢ଼ କରିଥିଲା । ଏହି ସମୟରେ କଟକରୁ ଗୌରୀଶଙ୍କରଙ୍କ ସମ୍ପାଦନାରେ 'ଉତ୍କଳ ଦୀପିକା' ଓ ଫକୀର ମୋହନଙ୍କ ସମ୍ପାଦନାରେ 'ବୋଧଦାୟିନୀ' ଓ ବାଲେଶ୍ୱର 'ସମ୍ବାଦ ବାହିକା' ପତ୍ରିକା ଓଡ଼ିଶାର ଜନମତକୁ ସଂଗଠିତ କରିଥିଲା । ଓଡ଼ିଆ ଭାଷାର ପ୍ରାଚୀନତା, ସମଗ୍ର ଓଡ଼ିଶା ଭୂଖଣ୍ଡରେ ଏହାର ବହୁଳ ବ୍ୟବହାର, ସ୍କୁଲ, କଚେରୀରୁ ଓଡ଼ିଆ ଭାଷା ଉଚ୍ଛେଦ ପାଇଁ ବଙ୍ଗାଳୀ ଅମଲା ମାନଙ୍କର ହୀନ ପ୍ରଚେଷ୍ଟା ବିରୋଧରେ ଅନେକ ଉପାଦେୟ ଲେଖାମାନ ପତ୍ରିକା ଦୁଇଟିରେ ପ୍ରକାଶ ପାଇ ଓଡ଼ିଆ ଜନମାନସକୁ ସତର୍କ କରିଦେଇଥିଲା । ଏଥିପାଇଁ ଏ ଜାତି ବ୍ୟାସକବି ଫକୀରମୋହନ ଓ ଗୌରୀଶଙ୍କରଙ୍କ ଠାରେ ଚିରଋଣୀ । ଏତିକି ବେଳେ ଉତ୍କଳହିତୈଷୀ ଓଡ଼ିଆ - ପ୍ରାଣ

ମହାରାଜା ବୈକୁଣ୍ଠ ନାଥ ଦେ'ଙ୍କ ପୃଷ୍ଠ ପୋଷକତାରେ ଦେ'ଙ୍କ ଉତ୍କଳ ପ୍ରେସରୁ 'ଉତ୍କଳ ଦର୍ପଣ' (୧୮୭୩), 'ନବ ସମ୍ବାଦ' (୧୯୮୨), ଓଡ଼ିଆ ଓ ନବସମ୍ବାଦ (୧୮୮୮), ପଶ୍ଚିମ ଓଡ଼ିଶାର ବାମଣ୍ଡା ରାଜ୍ୟରୁ ସାହିତ୍ୟ – ସଂସ୍କୃତିପ୍ରେମୀ ମହାରାଜା ବାସୁଦେବ ସୁଚଳ ଦେବଙ୍କ ପୃଷ୍ଠପୋଷକତାରେ ଓ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦନାରେ 'ସମ୍ବଲପୁର ହିତୈଷିଣୀ' (୧୮୮୯) ପତ୍ରିକା ପ୍ରକାଶ ପାଇଥିଲା । ସମ୍ବାଦ ପରିବେଷଣ ସହିତ ସାହିତ୍ୟ ଆଲୋଚନା କ୍ଷେତ୍ରରେ ଉକ୍ତ ପତ୍ରିକା ଗୁଡ଼ିକର ଭୂମିକା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଫଳରେ ପ୍ରେସ ପ୍ରତିଷ୍ଠା, ସମ୍ବାଦପତ୍ର ଓ ବିବିଧ ପୁସ୍ତକ ପ୍ରକାଶନ ଦ୍ୱାରା ନବୀନ ଶିକ୍ଷିତ ଯୁବଗୋଷ୍ଠୀଙ୍କୁ ଭାଷା ସାହିତ୍ୟ ଅନୁରାଗୀ ହେବା ପାଇଁ ଏହା ବହୁ ପ୍ରେରଣା ଯୋଗାଇଥିଲା ।

ଅନୁରୂପ ଭାବରେ ମୟୂରଭଞ୍ଜ ମଧ୍ୟ ଓଡ଼ିଆ ଭାଷା ସାହିତ୍ୟ ସୁରକ୍ଷା କ୍ଷେତ୍ରରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲା । ସଂସ୍କୃତି ପ୍ରେମୀ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବ ଶିକ୍ଷାଗୁରୁ ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ମହାପାତ୍ରଙ୍କ ଦ୍ୱାରା ପ୍ରଭାବିତ ହୋଇ ମାତୃଭାଷା ସାହିତ୍ୟର ଶ୍ରୀବୃଦ୍ଧି ପାଇଁ ସଂକଳ୍ପ ବଦ୍ଧ ହୋଇଥିଲେ । ନିଜ ଗଡ଼ ବାରିପଦା ଠାରେ ପ୍ରେସ (ମୁଦ୍ରାଯନ୍ତ୍ର) ପ୍ରତିଷ୍ଠା କରି ସ୍ୱୀୟ ପୃଷ୍ଠପୋଷକତାରେ 'ଉତ୍କଳ ପ୍ରଭା' (୧୮୯୧) ନାମକ ଏକ ମାସିକ ପତ୍ରିକା ପ୍ରକାଶ କରିଥିଲେ । ଉକ୍ତ ପତ୍ରିକା (୧୮୯୧-୯୫) ପର୍ଯ୍ୟନ୍ତ ନିୟମିତ ପ୍ରକାଶିତ ହୋଇଥିଲା । ଏଥିରେ ଓଡ଼ିଶାର ବହୁ ବିଶିଷ୍ଟ କବି ଓ ଲେଖକ ମାନଙ୍କର ରଚନା ସବୁ ସ୍ଥାନ ପାଇଥିଲା । ଉତ୍‌କୃଷ୍ଟ ରଚନା ପାଇଁ ସେ ଲେଖକ ମାନଙ୍କୁ ପୁରସ୍କୃତ କରି ସେମାନଙ୍କ ମନରେ ନୂତନ ପ୍ରେରଣା ଜାତ କରିବା ସହିତ ନବୀନ ଯୁବ ଲେଖକଙ୍କୁ ଉତ୍ସାହ ପ୍ରଦାନ କରୁଥିଲେ । 'ଉତ୍କଳ ପ୍ରଭା' ପ୍ରକାଶ ପାଇବା ପୂର୍ବରୁ ସେ ଘୋଷଣା କରିଥିଲେ, "ଦେଶର ଶିକ୍ଷିତ ମଣ୍ଡଳୀ ଉତ୍ସାହ ଓ ଧନର ଅଭାବରୁ ପ୍ରବନ୍ଧ ଓ ଗ୍ରନ୍ଥାଦି ଲେଖିବାକୁ ଯତ୍ନବାନ ହେଉନାହାନ୍ତି । ଏ ଅଭାବ ଦୂର କରିବା ଉଦ୍ଦେଶ୍ୟରେ ମୟୂରଭଞ୍ଜରୁ 'ଉତ୍କଳ ପ୍ରଭା' ନାମ୍ନୀ ମାସିକ ପତ୍ରିକା ଆଗାମୀ ବୈଶାଖ ମାସ ଠାରୁ ପ୍ରକାଶ କରାଯିବ । ଏଥିରେ ସାହିତ୍ୟ, ବିଜ୍ଞାନ, ଦର୍ଶନ, ରାଜନୀତି, ସାଧାରଣ ଧର୍ମ, ଓ ନୀତି ସମ୍ବନ୍ଧୀୟ ପ୍ରବନ୍ଧ ମାନ ସନ୍ନିବେଶିତ ହେବ । ଉତ୍‌କୃଷ୍ଟ ପ୍ରବନ୍ଧ ଲେଖକ ମାନେ ପୁରସ୍କୃତ ହେବେ । ବର୍ଷକ ମଧ୍ୟରେ ଛ'ଜଣ ଗଦ୍ୟ ଲେଖକଙ୍କୁ ୧୨୦ ଟଙ୍କା ଗୁଣାନୁସାରେ ପ୍ରଦତ୍ତ ହେବ । କାବ୍ୟ, ନାଟକ ବା ଆଖ୍ୟାୟିକାର ଲେଖକ ଏବଂ ବୈଜ୍ଞାନିକ ବା ଐତିହାସିକ ପ୍ରବନ୍ଧ ଲେଖକ ମାନେ

ପୁରସ୍କାର ଯୋଗ୍ୟ ପୁସ୍ତକ ପତ୍ରିକାର ସମ୍ପୂର୍ଣ୍ଣ ପ୍ରକାଶ କଲେ ୨୦୦ଟଙ୍କା ଏବଂ ଆଂଶିକ ପ୍ରକାଶ କଲେ ୬୦ ଟଙ୍କା ପୁରସ୍କାର ପାଇବେ । ଲେଖକ ମାନେ ପୁରସ୍କୃତ ପ୍ରବନ୍ଧ ବା ପୁସ୍ତକ ସ୍ୱତନ୍ତ୍ର ପ୍ରକାଶ କରିବାକୁ ଇଚ୍ଛାକଲେ ମୟୂରଭଞ୍ଜ ଯନ୍ତ୍ରାଳୟରେ କେବଳ କାଳି, କାଗଜର ମୂଲ୍ୟ ଦେଇ ୫୦୦ ଖଣ୍ଡ ଛାପା କରାଇ ପାରିବେ ।" (ମୃତ୍ୟୁଞ୍ଜୟ ଗ୍ରନ୍ଥାବଳୀ-୧ମ ଖଣ୍ଡ, ୧ମ ସଂ, ପୃ - ୪୧୬) ମହାରାଜାଙ୍କର ଏହି ଘୋଷଣା ଫଳରେ ବହୁ ଉତ୍ସାହୀ ଲେଖକ ବାଣି ଆରାଧନାରେ ଲେଖନୀ ଧାରଣ କରିଥିଲେ ଏବଂ ସ୍ୱଳ୍ପକାଳ ମଧ୍ୟରେ ବହୁ ବିଶିଷ୍ଟ ଲେଖକ ମାନଙ୍କର ବିବିଧ ଉତ୍‌କୃଷ୍ଟ ରଚନା ଦ୍ୱାରା 'ଉତ୍କଳ ପ୍ରଭା' ପତ୍ରିକା ଶ୍ରୀମଣ୍ଡିତ ହୋଇଥିଲା ।

ଶ୍ରୀ ଚୈତନ୍ୟ ପ୍ରସାଦ ରାୟ, ଗୋବିନ୍ଦ ଚନ୍ଦ୍ର ମହାପାତ୍ର ଓ ରାଜେଶ୍ୱର ମହାପାତ୍ର ବିଭିନ୍ନ ସମୟରେ ଏହାର ସମ୍ପାଦନା ଦାୟିତ୍ୱ ବହନ କରିଥିଲେ । ଉକ୍ତ ପତ୍ରିକାରେ ୧ମ ଭାଗ ୧ମ ସଂଖ୍ୟା ଠାରୁ ୫ମ ସଂଖ୍ୟା ପର୍ଯ୍ୟନ୍ତ ଚୈତନ୍ୟ ପ୍ରସାଦ ରାୟ, ୬ଷ୍ଠରୁ ୮ମ ସଂଖ୍ୟା ପର୍ଯ୍ୟନ୍ତ ଗୋବିନ୍ଦ ଚନ୍ଦ୍ର ମହାପାତ୍ର ଏବଂ ୯ମ ରୁ ପତ୍ରିକା ବନ୍ଦ ପର୍ଯ୍ୟନ୍ତ ରାଜେଶ୍ୱର ମହାପାତ୍ର ଥିଲେ ଏହାର ସମ୍ପାଦକ । ଉକ୍ତ ପତ୍ରିକାର ୧ମ ଭାଗ/୧ମ ସଂଖ୍ୟାରେ ସମ୍ପାଦକ ଶ୍ରୀ ଚୈତନ୍ୟ ପ୍ରସାଦ ରାୟ ଲେଖିଥିଲେ, 'ଓଡ଼ିଆ ଭାଷାରେ ପ୍ରକୃତରେ ସାହିତ୍ୟ ନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ । ଉତ୍କଳ ସାହିତ୍ୟ ମଧ୍ୟରେ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, କବିସୂର୍ଯ୍ୟ ପ୍ରଭୃତିଙ୍କ ରଚିତ ଖଣ୍ଡ ଦଶ କାବ୍ୟ, ଜଗନ୍ନାଥ ଦାଶଙ୍କ ଭାଗବତ ଏବଂ ସାରଳା ଦାସଙ୍କ ମହାଭାରତ ଓ ରାମାୟଣ ଏହାକି ଗୋଟିଏ ଜାତିର ସାହିତ୍ୟକୁ ଲକ୍ଷ୍ୟ ? ଯେଉଁ ଗ୍ରନ୍ଥ ପାଠ କଲେ ସମାଜସ୍ଥ ସାଧାରଣ ଲୋକର ସ୍ୱପ୍ନ କର୍ତ୍ତବ୍ୟବୋଧ ଜନ୍ମେ ଏବଂ ଯାହା ସମସ୍ତଙ୍କୁ ନୀତିଶିକ୍ଷା, ଚରିତ୍ର ଗଠନ ଓ ସାମାଜିକତା ଶିକ୍ଷା ନିମନ୍ତେ ସାହଯ୍ୟ କରିପାରେ ତାହା ପ୍ରକୃତ ସାହିତ୍ୟ ଅଟେ । ଏଭଳି ସାହିତ୍ୟ ଓଡ଼ିଆଙ୍କର ନାହିଁ । ସୁତରାଂ ଉତ୍କଳ ସମାଜର ଉନ୍ନତିର ଉପାୟ ନାହିଁ । ଏହି ଅଭାବ ପୂରଣ କରିବା ନିମନ୍ତେ 'ଉତ୍କଳ ପ୍ରଭା'ର ଉତ୍କଳ କ୍ଷେତ୍ରରେ ଆବିର୍ଭାବ ।" (ଉତ୍କଳ ପ୍ରଭା/୧ମ ଭାଗ/୧ମ ସଂ - ପୃ -୪)

ଏଥିରେ ମଧୁସୂଦନ ରାଓଙ୍କ 'ଋଷି ପ୍ରାଣେ ଦେବାବତରଣ' ଦାର୍ଶନିକ ଗାଢ଼ କବିତା, ଶ୍ରୀରାମ ବନବାସ (ଦୀର୍ଘ କବିତା), ରାଧାନାଥ ରାୟଙ୍କ 'ଚିଲିକା', 'ମହାଯାତ୍ରା', 'ଯଯାତି କେଶରୀ' କାବ୍ୟ, ଗଂଗାଧର ମେହେରଙ୍କ 'ଇନ୍ଦୁମତୀ' କାବ୍ୟ, ଫକୀର ମୋହନ ସେନାପତିଙ୍କ 'ଜହ୍ନମାମୁଁ', 'ନିଦାଘ ନିଶିଥ ସ୍ୱପ୍ନ', 'ବିଦେଶୀର

ଚିନ୍ତା', ସାଧୁ ଚରଣ ରାୟଙ୍କ 'ମହାମିଳନ', 'ଆକାଶ', ଚନ୍ଦ୍ର ମୋହନ ମହାରଣାଙ୍କ 'ଖଣ୍ଡଗିରି', 'ଯେ ଗଲାଣି ସେତ ଆଉ ନୁହେଁ ଫେରିବାର', 'କପିଳାସ' ପଦ୍ୟ ଓ ଖଣ୍ଡ କବିତା, ଲାଲା ରାମନାରାୟଣ ରାୟଙ୍କ 'ବାସବ ବିଜୟ', ଶ୍ରୀ କହ୍ନେଇ ଲାଲ ବସୁଙ୍କ 'ବୈଦେହୀ ବିଳାପ', ରାଧାଶ୍ୟାମ ଛିଡଙ୍କ 'ପୌର୍ଣ୍ଣମାସୀ ନିଶୀ',ନରେନ୍ଦ୍ର ମୋହନ ଆଦିତ୍ୟଙ୍କ 'କମଳିନୀ', ଭୋଳାନାଥ ସାମନ୍ତରାୟଙ୍କ 'ଶ୍ରୀ ରାଧାକୃଷ୍ଣ', ଜୟକୃଷ୍ଣ ମହାପାତ୍ରଙ୍କ 'ପଲ୍ଲୀ ଗ୍ରାମର ଶୋଭା', ରାମକୃଷ୍ଣ ସାହୁଙ୍କ 'ଲକ୍ଷ୍ମୀ', ଶ୍ରୀ ନାଥ ଗୁପ୍ତଙ୍କ 'କରୁଣା କାବ୍ୟ','ରମାନାଥ ଦାସଙ୍କ 'ପ୍ରଭାତ' ଆଦି ପଦ୍ୟ ଓ ଦୀର୍ଘ କବିତା ପ୍ରକାଶ ପାଇଥିଲା । ଏଥିରେ ଔପନ୍ୟାସିକ ରାମଶଙ୍କର ରାୟଙ୍କ 'ବିବାସିନୀ' ଉପନ୍ୟାସ ଧାରାବାହିକ ଭାବରେ ମଧ ପ୍ରକାଶ ପାଇଥିଲା ।

ପ୍ରବନ୍ଧ ଆଲୋଚନା ଓ ସମାଲୋଚନା ମଧରେ ଶ୍ରୀ ଚକ୍ରବର୍ତ୍ତୀଙ୍କ 'ମହାପୂଜା', ଚନ୍ଦ୍ରବସୁଙ୍କ 'ଧର୍ମ ଓ ସମାଜ', ଶିକ୍ଷା ନିବିଶଙ୍କ 'ସ୍ତ୍ରୀ ଶିକ୍ଷା', ବିଶ୍ୱନାଥ କର ମହାଶୟଙ୍କ 'ସ୍ତ୍ରୀ ଶିକ୍ଷା', 'ସମାଲୋଚନା', 'ସମ୍ପାଦକୀୟ ଆଲୋଚନା', ସାଧୁଚରଣ ରାୟଙ୍କ ସ୍ୱାଧୀନତା, ଶ୍ରୀ ନାମଧାରୀ ବ୍ୟକ୍ତିଙ୍କ 'ଶିକ୍ଷକ ଓ ଛାତ୍ର', ଶିବ ନାରାୟଣ ରାୟଙ୍କ 'ବିଲାତୀ', 'ସୁଖ କେଉଁଠାରେ', 'ସାକାର ଓ ନିରାକାର ଉପାସନା' ସମ୍ବନ୍ଧରେ ଦୁଇ ଚାରି ଗୋଟି କଥା, ଗଣପତି ଦାସଙ୍କ 'ହିତବାଦକ', ଉତ୍କଳ ସାହିତ୍ୟ ଗୋବିନ୍ଦ ଚନ୍ଦ୍ର ମହାପାତ୍ର ଶର୍ମାଙ୍କ 'ମାଦଳା ପାଞ୍ଜି' ସମାନ ଗ୍ରନ୍ଥରୁ ଉଦ୍ଧୃତ ବିବରଣୀ ଆଦି ପ୍ରକାଶିତ । ଏହି ପତ୍ରିକାର ୧ମ ଭାଗ/ ୧ମ ସଂଖ୍ୟାରେ ସଂପାଦକ ଚୈତନ୍ୟ ପ୍ରସାଦ ରାୟଙ୍କ 'ସୂଚନା', ପରବର୍ତ୍ତୀ ସଂଖ୍ୟାରେ ବିଜୟ ଚନ୍ଦ୍ର ମଜୁମଦାରଙ୍କ 'ସାହିତ୍ୟ ଚର୍ଚ୍ଚା', 'ବିପ୍ଳବ ଏବଂ ସମାଲୋଚନା', ରାମନାରାୟଣ ରାୟଙ୍କ 'କବି ଉପେନ୍ଦ୍ର ଭଞ୍ଜ' ଆଲୋଚନା ଆଦି ପ୍ରକାଶ ପାଇଥିଲା ।

ଲାଲା ମହାଶୟ 'କବି ଉପେନ୍ଦ୍ର ଭଞ୍ଜ' ଙ୍କ କାବ୍ୟାଦିକୁ କୁରୁଚିପୂର୍ଣ୍ଣ ଅଶ୍ଳୀଳ ଦୋଷଯୁକ୍ତ କହି ତ୍ରୀବ୍ର ସମାଲୋଚନା କରିବା ସହିତ ଆଧୁନିକ କବି ରାଧାନାଥ ରାୟଙ୍କୁ ପ୍ରଶଂସା କରାଯାଇଥିଲା । ଏଥିରେ ଭଞ୍ଜ ପ୍ରେମୀ ଉତ୍‌କ୍ଷିପ୍ତ ହୋଇ 'ଉତ୍କଳ ଦୀପିକା'ରେ ଏହାର ପ୍ରତିବାଦ ମାନ ପ୍ରକାଶ କରିଥିଲେ । ଏହି ବିବାଦ ଏତିକିରେ ନରହି ଖୁବ୍ ଭୟଙ୍କର ରୂପ ଧାରଣ କରିଥିଲା । ଫଳରେ ଉତ୍କଳର ସାରସ୍ୱତ ସମାଜ ଭଞ୍ଜପନ୍ଥୀ ଓ ରାଧାନାଥ ପନ୍ଥୀ ଦ୍ୱିବିଧ ଗୋଷ୍ଠୀରେ ବିଭକ୍ତ ହୋଇ ପରସ୍ପର ବିଦ୍ରୂପ, କଟାକ୍ଷ ରୂପକ ବିଷ ଉଦ୍‌ଗାରରେ ଲିପ୍ତ ରହିଥିଲେ । ଏହାଦ୍ୱାରା ପ୍ରାଚୀଦ ଭଞ୍ଜ

ସମର୍ଥକଙ୍କ ଦ୍ୱାରା କଟକରୁ ଇନ୍ଦ୍ରଧନୁ ଏବଂ ଆଧୁନିକ ଶିକ୍ଷିତ ସମ୍ପ୍ରଦାୟ ସମର୍ଥକ ରାଧାନାଥ ପନ୍ଥୀ ଦ୍ୱାରା ବାମଣ୍ଡାରୁ 'ବିଜୁଳି' ପତ୍ରିକା ଦୁଇଟିର ଆବିର୍ଭାବ ଘଟିଥିଲା । ସେତେବେଳେ ଏହି ମସୀଯୁଦ୍ଧ ଉତ୍କଳ ସାରସ୍ୱତ ଆକାଶକୁ କଳଙ୍କ କାଳିମା ବୋଳି ଦେଇଥିଲା । 'ବିଜୁଳି' ବାମଣ୍ଡାରୁ ପ୍ରକାଶ ପାଇ ରାଧାନାଥଙ୍କ ସପକ୍ଷ ନେବାରେ ବାମଣ୍ଡାଧିପତି ମହାରାଜା ବାସୁଦେବ ସୁଢଳ ଦେବ ଓ ମୟୁରଭଞ୍ଜାଧିପତି ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ସ୍ୱୀକୃତି ଓ ସମର୍ଥନ ଥିଲା । କାରଣ ରାଧାନାଥଙ୍କ ଭଳି କବି ପ୍ରତିଭା ଓ ବିନୟୀ ବ୍ୟକ୍ତିଙ୍କ ପ୍ରତି ଉତ୍କଳର ରାଜନ୍ୟବର୍ଗ ଓ ଶିକ୍ଷିତ ଗୋଷ୍ଠୀଙ୍କର ଭକ୍ତି ଓ ସମ୍ମାନ ଅତୁଟ ରହିଥିଲା । ଯା'ବି ହେଉ 'ଉତ୍କଳ ପ୍ରଭା' ଥିଲା ପ୍ରକୃତରେ ଆଧୁନିକ ସମାଲୋଚନା ସାହିତ୍ୟର ମୂଳଦୁଆ ।

'ଉତ୍କଳ ପ୍ରଭା' (୧୮୯୪)ର ୫ମସଂଖ୍ୟାରେ ଶ୍ରୀ ଗୋବିନ୍ଦ ଚନ୍ଦ୍ର ମହାପାତ୍ରଙ୍କ 'ପ୍ରାଚୀନ କବିଙ୍କ ବୃତ୍ତାନ୍ତ' ଶୀର୍ଷକ ପ୍ରବନ୍ଧରେ କବି ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ବିଶ୍ୱନାଥ ଖୁଣ୍ଟିଆ, ଲୋକନାଥ ବିଦ୍ୟାଧର ପ୍ରଭୃତିଙ୍କ ଜୀବନୀ ଓ ରଚନା ପ୍ରକାଶ ପାଇଥିଲା । ଐତିହାସିକ ଓ ସାହିତ୍ୟିକ ଦୃଷ୍ଟିକୋଣରୁ ଏହା ତାଙ୍କର ସର୍ବପ୍ରଥମ ପ୍ରୟାସ । ଉକ୍ତ ପତ୍ରିକାରେ ଗୋବିନ୍ଦ ଚନ୍ଦ୍ର ମହାପାତ୍ର 'ମହାଭାରତ'ର ଓଡ଼ିଆ ଅନୁବାଦ ଧାରାବାହିକ ଭାବରେ ପ୍ରକାଶ କରୁଥିଲେ । ଏଭଳି ଜାତୀୟ କାର୍ଯ୍ୟକୁ ସେ ମହାରାଜା ଶ୍ରୀରାମଚନ୍ଦ୍ରଙ୍କ ଆଦେଶକ୍ରମେ କରିଥିଲେ । ଏହି ଅନୁବାଦ ଖୁବ୍ ସରଳ, ପ୍ରାଞ୍ଜଳ ଓ ଜନବୋଧ୍ୟ ଥିଲା ଏବଂ ପାଠକ ମହଲରେ ଖୁବ୍ ଆଦୃତି ଲାଭ କରିଥିଲା । ପରେ ଏହା 'ଓଡ଼ିଶା ସାହିତ୍ୟ ଏକାଡେମୀ' ଦ୍ୱାରା ୧୮ ଖଣ୍ଡରେ ପ୍ରକାଶିତ ହୋଇଥିଲା ।

'ଉତ୍କଳ ପ୍ରଭା'ରେ ସୁସାହିତ୍ୟିକ ଚନ୍ଦ୍ରମୋହନ ମହାରଣାଙ୍କ 'ଖଣ୍ଡଗିରି', 'କପିଳାସ' ପଦ୍ୟ, ବିଶ୍ୱନାଥ କର ମହାଶୟଙ୍କ 'ମହାସ୍ରୋତ', 'ସ୍ତ୍ରୀ ଶିକ୍ଷା' ପ୍ରବନ୍ଧ, ମଧୁସୂଦନ ରାଓଙ୍କ 'ଋଷିପ୍ରାଣେ ଦେବାବତରଣ' ପଦ୍ୟ, ରାଧାନାଥ ରାୟଙ୍କ 'ଚିଲିକା' କାବ୍ୟ, ଗୋବିନ୍ଦ ଚନ୍ଦ୍ର ମହାପାତ୍ର ଶର୍ମାଙ୍କ 'ମୋ ଶିଶୁ' 'ଦୃଶ୍ୟରାଜି', 'ହିମାଚଳ' ପଦ୍ୟ, ବାବୁ କହ୍ନେଇଲାଲ ବସୁଙ୍କ 'ବୈଦେହୀ ବିଳାପ', ଲାଲା ରାମନାରାୟଣ ରାୟଙ୍କ 'ବାସବ ବିଜୟ –୧ମସର୍ଗ' ପଦ୍ୟ, ବିଜୟ ଚନ୍ଦ୍ର ମଜୁମଦାରଙ୍କ 'ସାହିତ୍ୟ ଚର୍ଚ୍ଚା' ଆଲୋଚନା, ଗଣପତି ଦାସଙ୍କ 'ହିତବାଦ କି ?'ପ୍ରବନ୍ଧ ଆଦି ଉତ୍କୃଷ୍ଟ ରଚନା ଭାବରେ ବିବେଚିତ ହୋଇ ରାଜ ପୁରସ୍କାର ଲାଭ କରିଥିଲା । ଫକୀରମୋହନ ଚନ୍ଦ୍ରମୋହନ ମହାରଣାଙ୍କ ଏଭଳି କୃତିତ୍ୱକୁ ସ୍ୱୀକାର କରି 'ଉତ୍କଳ ଭ୍ରମଣ'ରେ ଲେଖିଥିଲେ :

"ଆହେ ଚନ୍ଦ୍ର ମହାରଣେ ହେଉ ହେଉ ହେଉ
ମେଲିଦିଅ ଆଉଥରେ କବିତାର ଢେଉ,
ଛପାଇବେ ରାମଚନ୍ଦ୍ର ଚନ୍ଦା କିହେ ଆଉ
ନେବ ମାରି ଟଙ୍କା ମୁଠେ ଠୁକିଦେଇ ବାହୁ ।"

(ଫକୀରମୋହନ : ଗ୍ରନ୍ଥାବଳୀ ୧ମଖଣ୍ଡ/୨ୟ ସଂ ୧୯୬୩ - ପୃ -୨୦୪)

ପରବର୍ତ୍ତୀ କାଳରେ 'ଉତ୍କଳ ପ୍ରଭା'ରେ ପ୍ରକାଶିତ ରଚନା ମଧ୍ୟରୁ ଶ୍ରେଷ୍ଠ ରଚନା ନିର୍ବାଚନ କ୍ଷେତ୍ରରେ ପକ୍ଷପାତିତା ହେବା ଫଳରେ ଜନ ଅସନ୍ତୋଷ ଦେଖାଯିବା ସହ ପତ୍ରିକାର ପାଠକ ଓ ଲେଖକ ସଂଖ୍ୟା ହ୍ରାସ ପାଇ କ୍ରମେ ବନ୍ଦ ହୋଇଯାଇଥିଲା । ତା' ସତ୍ତ୍ୱେ ଆଧୁନିକ ଓଡ଼ିଆ ସାହିତ୍ୟର ବିକାଶ ପର୍ବରେ ଏହି ପତ୍ରିକାର ଅବଦାନକୁ ଏ ଜାତି ଅସ୍ୱୀକାର କରିପାରିବ ନାହିଁ । କବିବର ରାଧାନାଥ ଯଥାର୍ଥରେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବଙ୍କ ମାତୃଭାଷା ଓ ସାହିତ୍ୟ ପ୍ରୀତିକୁ ପ୍ରଶଂସା କରି 'ଚିଲିକା' କାବ୍ୟରେ ଲେଖିଥିଲେ :

"ପାହିଲାଣି ଘୋର ତାମସୀ ଯାମିନୀ
ଫୁଟିବ ଉତ୍କଳ ଭାଷା କମଳିନୀ ।
+ + +
କବିରୂପେ ଏବେ ଉଦୟ ଅଚଳେ
ରବିବଂଶ-ମଣି ଉଦିତ ଉତ୍କଳେ ।
ଶ୍ରୀମାନ ଶ୍ରୀରାମଚନ୍ଦ୍ର-ଆଖ୍ୟା ଧାରୀ
ଉତ୍କଳ-ଅଜ୍ଞାନ-ତମ-ଧ୍ୱଂସକାରୀ,
ସୌଦାମିନୀ ଲାସ୍ୟେ ସମୁଜ୍ଜ୍ୱଳ ଶିଖ-
ମେଘାସନ-କୁଞ୍ଜ-ବିହାର-ରସିକ,
ଅଶ୍ୱ-ସଞ୍ଚାଳନେ ଅଦ୍ଭୁତ-କୌଶଳୀ
ଦୃଷ୍ଟିଭେଦୀ ଯାର ବଜ୍ରନାଦୀ ନଳୀ ।
ବୀଣାପାଣୀ-ପୂଜାଯୋଗ୍ୟ-କୁଞ୍ଜକୁଳ
ଫୁଟିବାର ଏହି କାଳ-ଅନୁକୂଳ ।
ସେ ପଦ୍ମ ଫୁଟିବ କବି ହୃଦ-ସରେ
ନବୋଦିତ ଏହି ଭଞ୍ଜ ରବି କରେ ।

(ଚିଲିକା : ରାଧାନାଥ ଗ୍ରନ୍ଥାବଳୀ, ୧ମ ମୁଦ୍ରଣ - ୧୯୦୨, ପୃ : ୧୨୯)

ବ୍ୟାସକବି ଫକୀରମୋହନ ମହାରାଜଙ୍କୁ ଜଣେ ସାହିତ୍ୟ ଅନୁରାଗୀ, ସାଧୁ, ଧର୍ମପ୍ରାଣ ବ୍ୟକ୍ତି ଭାବରେ ଚିତ୍ରଣ କରିଛନ୍ତି । ମହାରାଜାଙ୍କ ଉତ୍କଳ ହିତୈଷୀ ଗୁଣରେ ସେ ଖୁବ୍ ମୁଗ୍ଧ ହୋଇଥିଲେ । 'ଉତ୍କଳ ସାହିତ୍ୟ ସମାଜ' ଓ 'ଉତ୍କଳ ସମ୍ମିଳନୀ' ଭଳି ଜାତୀୟ ଅନୁଷ୍ଠାନରେ ସେ ନିଷ୍ଠାପର ଭାବରେ ମହାରାଜାଙ୍କ ସହିତ କର୍ତ୍ତବ୍ୟ ସମ୍ପାଦନ କରିଥିଲେ । ବ୍ୟାସକବି ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କୁ ପୁତ୍ରଭଳି ଯେଭଳି ସ୍ନେହ ଦୃଷ୍ଟିରେ ଦେଖୁଥିଲେ, ତାଙ୍କର ଦେଶହିତୈଷୀ ଗୁଣ ପାଇଁ ସେତିକି ସମ୍ମାନ ଦେଉଥିଲେ । ଅନୁରୂପ ଭାବରେ ମହାରାଜା ମଧ୍ୟ ବ୍ୟାସକବିଙ୍କୁ ପିତୃତୁଲ୍ୟ ଭକ୍ତି କରୁଥିଲେ ଏବଂ ତାଙ୍କର - ସାହିତ୍ୟ ପ୍ରତିଭାକୁ ସମ୍ମାନ ଦେଉଥିଲେ । ଫକୀର ମୋହନ 'ଉତ୍କଳ ଭ୍ରମଣ' କାବ୍ୟରେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବଙ୍କ ଗୁଣଗାନ କରି ଲେଖିଛନ୍ତି :

"କୋଟି ତାରା ମଧ୍ୟେ ଯେହ୍ନେ ଶୋଭାପାଏ ଚନ୍ଦ୍ର
ଓଡ଼ିଶା ମଣ୍ଡଳେ ମହାରାଜ ରାମଚନ୍ଦ୍ର ।
ଧନେ ମାନେ ଜାତିକୁଳେ ରୂପେ କ୍ଷମତାରେ,
ଏତେ ଗୁଣ ପୂର୍ଣ୍ଣ କାହିଁ ଅଛି ଏକାଧାରେ ?
ନବୀନ ବୟସ ଏଣେ ଅତୁଳ ସମ୍ପତ୍ତି,
ନାଟ ଖେଳ ଘେନି କାଟୁଥାନ୍ତି ଦିନରାତି ।
ସେ ସକଳ କଥା କିଛି ନ ପକାଇ ମନେ;
ଦିନରାତି ଲାଗିଅଛି ଶାସ୍ତ୍ର ଅଧ୍ୟୟନେ ।
ଏତେ ପଢ଼ ନାହିଁ ବାପା ବସି ରାତିସାରା,
କୋମଳ ଅଙ୍ଗକୁ ଆହା ବାଧିଯିବ ପରା !
ମନ ମଧ୍ୟେ ଦୃଢ଼ରୂପେ ବାନ୍ଧିଥିଲି ଆଶା,
ଘୁଞ୍ଚାଇବ ତୁମେ ମାତୃଭାଷାର ଦୁର୍ଦ୍ଦଶା ।
ଆପଣ ତ ହେଲେ ଏବେ ଇଂରାଜୀ ପଢୁଆ,
ମାତୃଭାଷା କହିବାକୁ ଲାଗିବ ଅଡୁଆ ।
ନାହିଁ ନାହିଁ ମହାରାଜ ! ଭଲ ହେଉ ନାହିଁ,
କିଛି ହେଲେ୍ କର ମାତୃଭାଷା ରକ୍ଷାପାଇଁ ।
ଶତଶତ ଦେଇଥିଲ ଆଗେ ଟଙ୍କା ଥୋକେ,

ଟପକରି ଗିଳିଦେଲେ ପାଖଥିବା ଲୋକେ ।
ଢେର ଦିନୁଁ ଓଡ଼ିଶାରେ ପିଟା ଅଛି ଢୋଲ,
ବାଲେଶ୍ୱରେ ପିଟାଇଛ 'ରାମଚନ୍ଦ୍ର ଟୋଲ' ।
ଆହୁରି ପୁଞ୍ଜେ କି ଛ'ଟା ଅଛି ଦରକାର,
କ୍ରମେ କ୍ରମେ କରିଯିବ ବାପା ଖବରଦାର ।
ଆଶା ଅଛି ଓଡ଼ିଆଙ୍କୁ ଅନାଇବ ବାରେ,
ଅବଶ୍ୟ କୀରତି ବାନା ଉଡ଼ିବ ସଂସାରେ ।
ରହୁ ତୁମ୍ଭ ଚିତ୍ତ ଭାଗବାନଙ୍କ ଚରଣେ,
ପୁତ୍ର ନିର୍ବିଶେଷେ ପ୍ରତିପାଳ ପ୍ରଜାଗଣେ ।
ଦୀର୍ଘଜୀବୀ ହୁଅ ବାପା କରୁଛି କାମନା,
କରନ୍ତୁ ଈଶ୍ୱର ତୁମ୍ଭ ମଙ୍ଗଳ ସାଧନା ।

(ଉତ୍କଳ ଭ୍ରମଣ - ଫକୀରମୋହନ ଗ୍ରନ୍ଥାବଳୀ, ପୃ - ୨୦୨)

କେବଳ ଏତିକି ନୁହେଁ ମହାରାଜା ଥିଲେ ପ୍ରକୃତରେ ଜଣେ ଗୁଣଗ୍ରାହୀ ବ୍ୟକ୍ତି । ଜ୍ଞାନୀ, ପଣ୍ଡିତ ଓ ଗୁଣୀ ବ୍ୟକ୍ତିଙ୍କୁ ସେ ଖୁବ୍ ଶ୍ରଦ୍ଧା ଓ ଭକ୍ତି କରୁଥିଲେ ଏବଂ ତାଙ୍କୁ ନିଜ ରାଜବାଟୀକୁ ଆମନ୍ତ୍ରଣ କରୁଥିଲେ । କପଟୀ, ଓ ଦୁଷ୍ଟ ବ୍ୟକ୍ତି ତାଙ୍କ ପାଖକୁ ଭିଡୁନଥିଲେ । ରାଜ୍ୟ ଶାସନ ବ୍ୟବସ୍ଥାର କଡ଼ା ନିୟମ ସେମାନଙ୍କ ପାଇଁ କୋକୁଆ-ଭୟ ତୁଲ୍ୟ ଥିଲା ।

ଭକ୍ତକବି ମଧୁସୂଦନ ରାଓ, ପଲ୍ଲୀକବି ନନ୍ଦ କିଶୋର ବଳ, ସ୍ୱଭାବ କବି ଗଙ୍ଗାଧର ମେହେର, ଗୋପାଳ ଚନ୍ଦ୍ର ପ୍ରହରାଜ, ଗୋପୀନାଥ ନନ୍ଦଶର୍ମା, ବାଗ୍ମୀ ବିଶ୍ୱନାଥ କର, ବାଣୀ ସାଧକ ମୃତ୍ୟୁଞ୍ଜୟ ରଥ, ସୁସାହିତ୍ୟିକ ଚନ୍ଦ୍ରମୋହନ ମହାରଣା, ଔପନ୍ୟାସିକ ରାମଶଙ୍କର ରାୟ, ପ୍ରାବନ୍ଧିକ ଭୋଳାନାଥ ସାମନ୍ତରାୟ, 'ସମ୍ବାଦ ବାହିକା' ସମ୍ପାଦକ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ, ପଣ୍ଡିତ ନୀଳମଣି ବିଦ୍ୟାରତ୍ନ, ଜମିଦାର ସାମନ୍ତ-ରାଧା ଚରଣ ଦାସ, ସାହିତ୍ୟିକ ଶଶୀଭୂଷଣ ରାୟଙ୍କ ଭଳି ଉତ୍କଳର ବରପୁତ୍ର ତଥା ରାଜନ୍ୟବର୍ଗଙ୍କ ସହିତ ମହାରାଜାଙ୍କର ନିବିଡ଼ ସାରସ୍ୱତ ସମ୍ପର୍କ ପ୍ରତିଷ୍ଠା ହୋଇଥିଲା । ବିଶେଷକରି ମହାରାଜାଙ୍କ ପୃଷ୍ଠପୋଷକତାରେ ପ୍ରକାଶିତ 'ଉତ୍କଳ ପ୍ରଭା' ଏହି ସାରସ୍ୱତ ସମ୍ପର୍କକୁ ମଧୁ-ମିଶ୍ରିତ କରିଥିଲା ।



# ଫକୀରମୋହନଙ୍କ ରୋଗଶଯ୍ୟାର ବନ୍ଧୁ
# ପୂର୍ଣ୍ଣଚନ୍ଦ୍ର ଦାସ

ପ୍ରେମ ପ୍ରଣୟର ପ୍ରଖ୍ୟାତ କବି, ବିଶିଷ୍ଟ ଶିକ୍ଷାବିତ୍, ଗବେଷକ, ପ୍ରାବନ୍ଧିକ ଓ ସମାଲୋଚକ ଡକ୍ଟର ମାୟାଧର ମାନସିଂହ ତାଙ୍କ ରଚିତ 'ସରସ୍ୱତୀ ଫକୀରମୋହନ' (୧୯୭୨) ପୁସ୍ତକରେ ଲେଖିଛନ୍ତି "କିଏ ଏହି ବାଲେଶ୍ୱରର ଜମିଦାର ପୁତ୍ର ପୂର୍ଣ୍ଣଚନ୍ଦ୍ର ଦାସ ? ସେ ଯେ ଆଜି ସମଗ୍ର ଓଡ଼ିଆ ଜାତିର ନମସ୍ୟ ! ତାଙ୍କର ଚରିତ ସମଗ୍ର ଜାତି ଜାଣିବା ଉଚିତ୍ ।" (୧) (ସରସ୍ୱତୀ ଫକୀରମୋହନ- ଡ. ମାୟାଧର ମାନସିଂହ, ପୃ -୧୮୭) ବ୍ୟାସକବି ଫକୀରମୋହନ ଏହି ପୂର୍ଣ୍ଣଚନ୍ଦ୍ର ଦାସଙ୍କ ବିଷୟରେ ସ୍ୱୀୟ 'ଜୀବନ ଚରିତ'ରେ ଲେଖିଛନ୍ତି, "ମୋର କଟକବାସ ସମୟରେ ମୁଁ ଉପନିଷଦ ପଢୁଥିଲି ଏବଂ ତହିଁର ଓଡ଼ିଆ ଅନୁବାଦ କରୁଥିଲି । ଗୋଡ଼-ବିନ୍ଧା-ବେମାର ମୋ ଜୀବନର ଚିର ସହଚର । ବାଲେଶ୍ୱରର ଜଣେ ପ୍ରସିଦ୍ଧ ଜମିଦାରଙ୍କର ପୁତ୍ର ପୂର୍ଣ୍ଣଚନ୍ଦ୍ର ଦାସ, ସେ ସମୟରେ ମୋ ପାଖରେ ରହି, କଟକ କଲେଜରେ ଏଫ୍.ଏ. ପଢୁଥିଲା । ମୋ ଗୋଡ଼ବିନ୍ଧା ବେମାରି ସମୟରେ ସେ ମୋର ଅନେକ ସେବା କରିଅଛି । ଉପନିଷଦ୍ ଅନୁବାଦ ସମୟରେ ମଧ୍ୟ ସେ ମୋତେ ବହୁତ ସାହାଯ୍ୟ କରିଅଛି । ମୁଁ ରୋଗଶଯ୍ୟାରେ ପଡ଼ି ଅନୁବାଦ କରୁଥାଏ ଏବଂ କବିତା ଗୁଡ଼ିକ ଡାକି ଦେଉଥାଏ - ସେ ସେଗୁଡ଼ିକ ଲେଖୁଥାଏ । ସେ ସମୟରେ ପୂର୍ଣ୍ଣଚନ୍ଦ୍ର ସାହାଯ୍ୟ କରିନଥିଲେ, ଉପନିଷଦ୍ ଅନୁବାଦ ବାହାରିବାର କୌଣସି ସମ୍ଭାବନା ନଥିଲା ।" (ଫ. ଗ୍ରନ୍ଥାବଳୀ, ଦ୍ୱିତୀୟ ସଂ. ୧୯୬୩ ମସିହା, ପୃ - ୧୯୫)

ଏହି ପୂର୍ଣ୍ଣଚନ୍ଦ୍ର ଦାସ ହେଉଛନ୍ତି ବାଲେଶ୍ୱର ସହରର ବାରବାଟୀସ୍ଥ ଜମିଦାର ଭଗବାନ ଚନ୍ଦ୍ର ଦାସଙ୍କ ବଡ଼ପୁଅ । ଭଗବାନ ଚନ୍ଦ୍ର ଦାସଙ୍କ ପିତା ମଦନ ମୋହନ ଦାସ ଏବଂ ତାଙ୍କ ପିତା ଉଦ୍ଧବ ଚରଣ ଦାସ ବାଲେଶ୍ୱରର ପ୍ରତିଷ୍ଠିତ ଜମିଦାର ଭାବରେ

ପରିଚିତ ଥିଲେ । ଅଚଳାଚଳ ଭୂସମ୍ପତ୍ତି, ବାଣିଜ୍ୟ ବ୍ୟବସାୟ ତଥା ମହାଜନି କାରବାର ଦ୍ୱାରା ଓଡ଼ିଶାରେ ଖ୍ୟାତି ଅର୍ଜନ କରିଥିଲେ । ମାତ୍ର ଭଗବାନ ଚନ୍ଦ୍ର ଦାସ ବ୍ରାହ୍ମଧର୍ମ ଗ୍ରହଣ କରିବା ଫଳରେ ତାଙ୍କ ଜ୍ୟେଷ୍ଠପୁତ୍ର, ପୂର୍ଣ୍ଣଚନ୍ଦ୍ର ମଧ୍ୟ ବ୍ରାହ୍ମ ସମ୍ପ୍ରଦାୟର ମେଦିନୀପୁର ଜିଲ୍ଲା ଦିଘା ନିବାସୀ ଗୋପାଳଚନ୍ଦ୍ର ଘୋଷଙ୍କ କନ୍ୟା ଛାୟାମୟୀ ଘୋଷଙ୍କୁ ବ୍ରାହ୍ମମତରେ ବିବାହ କରିଥିଲେ । ଛାୟାମୟୀ ଘୋଷଙ୍କୁ ବିବାହକରି ଜଳପଥରେ ବଳଙ୍ଗ ନଦୀକୂଳରେ ଡଙ୍ଗାରେ ବଙ୍କଶାଳ ଘାଟରେ ପହଞ୍ଚିଲା ବେଳେ ତାଙ୍କ ପରିବାରର ଅନ୍ୟାନ୍ୟ କୁଟୁମ୍ବ ବର୍ଗଙ୍କ ସହିତ ଭଗବାନ ବାବୁ ଓ ପୂର୍ଣ୍ଣଚନ୍ଦ୍ରଙ୍କର ମନାନ୍ତର ହୋଇଥିଲା । ଏପରିକି ସେମାନେ ପୂର୍ଣ୍ଣଚନ୍ଦ୍ରଙ୍କୁ ଆହତ କରି ନଦୀ କୂଳରେ ମଧ୍ୟ ପକାଇ ଦେଇଥିଲେ ।

ବ୍ୟାସକବି ଏହି ପୂର୍ଣ୍ଣଚନ୍ଦ୍ରଙ୍କ ପିତା ଭଗବାନ ଚନ୍ଦ୍ର ଦାସଙ୍କ ବିଷୟରେ ତାଙ୍କ ରଚିତ 'ଉତ୍କଳ ଭ୍ରମଣଂ' ପୁସ୍ତକରେ ଲେଖିଛନ୍ତି :

"ଭାଇ ଭଗବାନ ଦାସେ କରେ ନମସ୍କାର
କର କର ସତ୍ୟଧର୍ମ ମହିମା ପ୍ରଚାର ।
ଲାଗି ପଡ଼ିଥାଅ ଭାଇ ନ ହୁଅ ନିରାଶ,
ଦିନେହେଲେ ହେବ ସତ୍ୟ ମହିମା ପ୍ରକାଶ ।।"

(ଫ. ଗ୍ର. ୧୯୬୩, ପୃ - ୨୦୩)

ବିଶେଷକରି ଓଡ଼ିଶାରେ ଏହି ବ୍ରାହ୍ମଧର୍ମର ପ୍ରଚାର ଓ ପ୍ରସାର ସର୍ବପ୍ରଥମେ ଆରମ୍ଭ ହୋଇଥିଲା ବାଲେଶ୍ୱର ସହରରେ । ବ୍ରାହ୍ମ ସମାଜର ଆଦି ପ୍ରଚାରକ ଇଶାନ୍ ଚନ୍ଦ୍ର ବସୁ ୧୮୬୫ ମସିହାରେ ବାଲେଶ୍ୱର ଆସି ବ୍ରାହ୍ମଧର୍ମ ପ୍ରଚାର କରିଥିଲେ । ପରେ ବାଲେଶ୍ୱର ନିମକ ମାହାଲରେ ନବନିଯୁକ୍ତ କିରାଣୀ ପ୍ରସନ୍ନ କୁମାର ଚାଟାର୍ଯୀ ୧୮୬୬ ମସିହା ଝାଡ଼େଶ୍ୱର ମନ୍ଦିର ପଶ୍ଚାଦ୍‌ଭାଗରେ ଥିବା ତାଙ୍କ ବସାରେ ପ୍ରତି ରବିବାର ରାତ୍ରୀରେ ବ୍ରହ୍ମୋପାସନା କରୁଥିଲେ । ଏହାପରେ ମୋତିଗଞ୍ଜ ବଜାରର ପଶ୍ଚିମ ପାର୍ଶ୍ୱସ୍ଥ ସୁଏଲପୁର ଗ୍ରାମରେ ଥିବା ମୟୂରଭଞ୍ଜ ରାଜାଙ୍କ କୋଠିରେ ସମ୍ଭବତଃ ୧୮୬୭/୬୮ ମସିହା ଗ୍ରୀଷ୍ମକାଳରୁ ଉପାସନା କାର୍ଯ୍ୟ ପ୍ରକାଶ୍ୟରେ ଆରମ୍ଭ ହେଲା । ସେତେବେଳେ ବାଲେଶ୍ୱରର ଯେଉଁ ବିଶିଷ୍ଟ ବ୍ୟକ୍ତିମାନେ ନିୟମିତ ଏହି ଉପାସନାରେ ଯୋଗ ଦେଉଥିଲେ, ସେମାନେ ହେଲେ ଦାମୋଦର ପ୍ରସାଦ ଦାସ, ଗୋବିନ୍ଦ ପ୍ରସାଦ

ଦାସ, ଜୟକୃଷ୍ଣ ଚୌଧୁରୀ, ଭୋଳାନାଥ ସାମନ୍ତରାୟ ଏବଂ ଫକୀରମୋହନ ସେନାପତି । ପରବର୍ତ୍ତୀ କାଳରେ ବ୍ରାହ୍ମଧର୍ମ ଓଡ଼ିଶାରେ ପ୍ରସାର ଲାଭ କଲା ।

ମହର୍ଷି ଦେବେନ୍ଦ୍ର ନାଥ ଠାକୁରଙ୍କ ଦ୍ୱାରା ୧୮୬୪ ମସିହାରେ କଟକରେ ପ୍ରତିଷ୍ଠିତ 'ଆଦି ବ୍ରାହ୍ମସମାଜ'ର ପ୍ରଧାନ ସହଯୋଗୀ ଥିଲେ ବାବୁ ଜଗନ୍‌ମୋହନ ରାୟ, ଗୌରୀ ଶଙ୍କର ରାୟ ଏବଂ ଜଗନ୍ ମୋହନ ଲାଲା ଏବଂ ତ୍ରୈଲୋକ୍ୟନାଥ ମୁଖୋପାଧ୍ୟାୟ । ୧୮୭୧ ମସିହାରେ ଅଧ୍ୟାପକ ହରନାଥ ଭଟ୍ଟାଚାର୍ଯ୍ୟ କଟକରେ 'ଉତ୍କଳ ବ୍ରାହ୍ମସମାଜ' ପ୍ରତିଷ୍ଠା କରିଥିଲେ । ତାଙ୍କ ମୁଖ୍ୟ ସହଯୋଗୀ ଶିଷ୍ୟମାନେ ହେଲେ ପ୍ୟାରୀମୋହନ ଆଚାର୍ଯ୍ୟ, ମଧୁସୂଦନ ରାଓ ଓ ଚତୁର୍ଭୁଜ ପଟ୍ଟନାୟକ । ଏହାଙ୍କ ପରେ ବାଗ୍ମୀ ବିଶ୍ୱନାଥ କର, ଭକ୍ତକବି ମଧୁସୂଦନ ରାଓଙ୍କ ଠାରୁ ବ୍ରାହ୍ମଧର୍ମରେ ଦୀକ୍ଷିତ ହୋଇଥିଲେ । କଟକ କଲେଜର ଦର୍ଶନ ବିଭାଗର ଅଧ୍ୟାପକ ହରନାଥ ଭଟ୍ଟାଚାର୍ଯ୍ୟ, ଜଗନ୍ ମୋହନ ରାୟ, ମଧୁସୂଦନ ରାଓ, ବିଶ୍ୱନାଥ କର ଏହି ଧର୍ମରେ ଦୀକ୍ଷିତ ହୋଇଥିଲେ । ଫଳରେ ଏମାନଙ୍କ ରଚନାବଳୀରେ ବ୍ରାହ୍ମଧର୍ମର ପ୍ରଭାବ ବହୁଳ ଭାବରେ ଦେଖାଯାଏ ।

ପୂର୍ଣ୍ଣଚନ୍ଦ୍ର ଦାସଙ୍କ ପିତା ଭଗବାନ ଚନ୍ଦ୍ର ଦାସ କଲିକତାରେ ବ୍ରାହ୍ମଧର୍ମର ପ୍ରବର୍ତ୍ତକ କେଶବଚନ୍ଦ୍ର ସେନ୍‌ଙ୍କ ଠାରୁ ଏହିଧର୍ମରେ ଦୀକ୍ଷିତ ହୋଇଥିଲେ । ବାଲେଶ୍ୱରରେ ବ୍ରାହ୍ମଧର୍ମର ପ୍ରସାର ବ୍ୟାପକ ହେବା ଫଳରେ ଫକୀରମୋହନଙ୍କ ପରବର୍ତ୍ତୀ ଗୋବିନ୍ଦ ଚନ୍ଦ୍ର ପଣ୍ଡା (ସିନ୍ଧିଆ), ଧ୍ରୁବଚରଣ କର (ବେଲଦା ଗ୍ରାମ), ବେଳେବେଳେ ଲକ୍ଷ୍ମୀନାରାୟଣ ସାହୁ, (ବାରବାଟୀ), ପ୍ରଫୁଲ୍ଲ ପଟ୍ଟନାୟକ ମଧ ବ୍ରାହ୍ମୋପାସନାରେ ଯୋଗ ଦେଉଥିଲେ ।

ଭଗବାନ ଦାସଙ୍କ ସହିତ ଫକୀରମୋହନ ସେନାପତିଙ୍କର ନିବିଡ଼ ସମ୍ପର୍କ ଥିଲା । ଫକୀରମୋହନ ହିଁ ବାଲେଶ୍ୱରରେ ସର୍ବପ୍ରଥମେ ନାରୀଶିକ୍ଷା ଉଦ୍ଦେଶ୍ୟରେ ସର୍ବସାଧାରଣଙ୍କ ପାଇଁ ବାଳିକା ସ୍କୁଲ ପ୍ରତିଷ୍ଠା କରିଥିଲେ । ତାଙ୍କ ପୂର୍ବରୁ ଆମେରିକୀୟ ବାପ୍‌ଟିଷ୍ଟ ମିସନାରୀ ମାନେ ଯେଉଁ ବାଳିକା ସ୍କୁଲ ସ୍ଥାପନ କରିଥିଲେ, ତାହା ଥିଲା ଏକପ୍ରକାର ଟ୍ରେନିଂ ବାଳିକା ବିଦ୍ୟାଳୟ, ଯେଉଁଥିରେ ହେଡ ପଣ୍ଡିତ ଥିଲେ ବିଶ୍ୱନାଥ ଶତପଥୀ । ତାହା ମିସନ୍ ବାଳକ ସ୍କୁଲର ଏକ ଅଂଶରେ ମଧ ହେଉଥିଲା । ମାତ୍ର ଫକୀରମୋହନଙ୍କ ପ୍ରତିଷ୍ଠିତ ବାଳିକାସ୍କୁଲକୁ ସହରର କୌଣସି ଭଦ୍ରଲୋକ ନିଜ ଝିଅକୁ

ପଠାଇବାକୁ ରାଜି ହେଲେ ନାହିଁ । ଫକୀରମୋହନ ଲେଖିଛନ୍ତି, "ଅବଶେଷରେ ମୋ ଝିଅ, ବଡ଼ ଭାଇ ନିତ୍ୟାନନ୍ଦ ସେନାପତିଙ୍କ ଝିଅ ଆଉ ଗୋଟିଏ ଜ୍ଞାତି କନ୍ୟା ଏବଂ ଆଉ ଗୋଟିଏ ବାହାରର ଝିଅ । ଏହି ଚାରିଗୋଟି କନ୍ୟାଙ୍କୁ ଘେନି କାର୍ଯ୍ୟାରମ୍ଭ କରାଗଲା ।" (ଗବେଷଣା ପତ୍ର - ୧ମବର୍ଷ/୨ୟଙ୍କ -/ ଅକ୍ଟୋବର ନଭେମ୍ବର - ୨୦୦୩ - ପୃ ୬) ଫକୀରମୋହନଙ୍କ ପ୍ରଥମ ସ୍ତ୍ରୀ ଲୀଳାବତୀର କନ୍ୟା 'ମହିଳା ମଣି' ଥିଲା ଏହି ସ୍କୁଲର ଛାତ୍ରୀ । ଉକ୍ତ ସ୍କୁଲ ପ୍ରତିଷ୍ଠା ପାଇଁ ଫକୀରମୋହନଙ୍କୁ ସହରର ଗଣ୍ୟମାନ୍ୟ ଭଦ୍ରଲୋକ ଓ କଚେରୀର ବଡ଼ ସାନ ଅମଲା ମାନଙ୍କ ଦ୍ୱାରା କମ୍ ସମାଲୋଚନାର ଶରବ୍ୟ ହେବାକୁ ପଡ଼ିନଥିଲା । ବାଲେଶ୍ୱରର ରାଜା ଶ୍ୟାମାନନ୍ଦ ଦେ ମଧ୍ୟ ତାଙ୍କୁ ପ୍ରକାଶ୍ୟରେ ତିରସ୍କାର କରିଥିଲେ । ଅଥଚ ତାଙ୍କ ସୁଯୋଗ୍ୟ ପୁତ୍ର ମହାରାଜା ବୈକୁଣ୍ଠନାଥ ଦେ ବାହାଦୁର ନାରୀଶିକ୍ଷାର ବିକାଶ ପାଇଁ ସମସ୍ତ ପ୍ରକାର ଉଦ୍ୟମ କରିଥିଲେ ଏବଂ ପ୍ରତିବର୍ଷ ବାଲେଶ୍ୱରର ସମସ୍ତ ବାଳିକା ବିଦ୍ୟାଳୟର ପ୍ରତ୍ୟେକ ଛାତ୍ରୀଙ୍କୁ ପାରିତୋଷିକ ଦେଉଥିଲେ । ଥରେ ତାଙ୍କ ବୈଠକଖାନାରେ ଏହି ପୁରସ୍କାର ବିତରଣୀ ସଭା ଅନୁଷ୍ଠିତ ହୋଇଥିଲା । ସହରର ସମସ୍ତ ବାଳିକା ସ୍କୁଲର ଛାତ୍ରୀ, ସମ୍ଭ୍ରାନ୍ତ ଭଦ୍ରବ୍ୟକ୍ତି ଉପସ୍ଥିତ ଥିଲେ । ମାତ୍ର କମିଶନର ଏବଂ କଲେକ୍ଟର ସାହେବଙ୍କ ମେମ୍‌ମାନେ ପହଞ୍ଚି ନଥିଲେ । ଏହି ସମୟରେ ବାରବାଟୀର ଅନ୍ୟତମ ଜମିଦାର ବାବୁ ଭଗବାନ ଚନ୍ଦ୍ର ଦାସ ହଠାତ୍ ଠିଆହୋଇ ଖୁବ୍ ଚିହାରଟାଏ କରି କହିଲେ, ଏହି ଘରେ ଏହି ସ୍ଥାନରେ ଫକୀରମୋହନ ବାଳିକା ସ୍କୁଲ ବସାଇଲେ ବୋଲି ରାଜା ଶ୍ୟାମାନନ୍ଦ ତାହାଙ୍କୁ ତିରସ୍କାର କରିଥିଲେ । ବର୍ତ୍ତମାନ ପୁରସ୍କାର ପାଇବା ଆଶାରେ ତିନିଚାରିଜଣ ଛାତ୍ରୀ ଉପସ୍ଥିତ ।" (ଗବେଷଣା ପତ୍ର -ଅକ୍ଟୋବର- ଡିସେମ୍ବର - ୨୦୦୩, ପୃ - ୭) । ଫକୀରମୋହନ ତାଙ୍କ ଜୀବଦଶାରେ ସ୍ୱଅନୂଦିତ 'ମହାଭାରତ'କୁ ମୁଦ୍ରଣ କରି ବିକ୍ରି କରିବାର ସୁବନ୍ଦୋବସ୍ତ କରିଥିଲେ ଏବଂ 'ସମ୍ବାଦ ବାହିକା'ରେ ଏଥିପାଇଁ ବାରମ୍ବାର ବିଜ୍ଞାପନ ଦେଇ ଗ୍ରାହକ ମାନଙ୍କଠାରୁ ଅଗ୍ରୀମ ଅର୍ଥ ମଧ୍ୟ ସଂଗ୍ରହ କରିଥିଲେ । ପୂର୍ଣ୍ଣଚନ୍ଦ୍ରଙ୍କ ପତ୍ନୀ ଛାୟାମୟୀ ଦାସ ଜଣେ ସ୍ୱାଧୀନତା ସଂଗ୍ରାମୀ ଥିଲେ । ବାଲେଶ୍ୱରରେ ନାରୀ ଶିକ୍ଷାର ପ୍ରସାର, ନାରୀମାନଙ୍କ ସାମାଜିକ ଜୀବନଧାରାର ବିକାଶ, ସମାଜସେବା, ପାରିବାରିକ ଜୀବନରେ ପ୍ରଚଳିତ କୁସଂସ୍କାର, ଅନ୍ଧବିଶ୍ୱାସ, ରକ୍ଷଣଶୀଳ ଭାବନାର ଶିକାର ହେଉଥିବା ନାରୀମାନଙ୍କୁ ସତ୍ ପରାମର୍ଶ, ଦିଗ୍‌ଦର୍ଶନ ଦେବାରେ ସେ ଥିଲେ ସର୍ବପ୍ରଥମ ପଥପ୍ରଦର୍ଶକ । ନିଜ ଘର କାର୍ଯ୍ୟ ପଛେ

ପଢ଼ିଥାଉ, କିନ୍ତୁ ସେ ଅନ୍ୟ ଘରକୁ ଯାଇ ପୀଡ଼ିତ ରୋଗୀକୁ ଔଷଧ ଦେବା, ନିଃସହାୟ ବୋହୂ ଝିଅଙ୍କୁ ସିଲେଇ ଶିକ୍ଷା ଓ ପ୍ରାଥମିକ ଶିକ୍ଷା ଦେବାରେ ଆଗଭର ଥିଲେ । ନିଜ ସଂସାର ବା ଘର କଥା ଆଗେ ନବୁଝି ଲୋକମାନଙ୍କ ସେବାକାର୍ଯ୍ୟରେ ଜୀବନ ଉତ୍ସର୍ଗ କରୁଥିଲେ । ଏଥିପାଇଁ ତାଙ୍କର ସ୍ୱାମୀଙ୍କ ସହମତି ଓ ପୂର୍ଣ୍ଣସହଯୋଗ ବରାବର ରହୁଥିଲା । ବାଲେଶ୍ୱରର କେତେଜଣ ବିଶିଷ୍ଟ ନାରୀଙ୍କୁ ଯଥା - ବିଭା ସରକାର, ଆଶା ବିଶ୍ୱାସ, ଡାକ୍ତର ଅନୀଲ ବିଶ୍ୱାସଙ୍କ ପତ୍ନୀ ଓ ଅନ୍ୟମାନଙ୍କୁ ନେଇ ସେ ପ୍ରଥମେ 'ନାରୀ ସମିତି' ଗଠନ କରିଥିଲେ । ବାଲେଶ୍ୱର କାଳୀ ମନ୍ଦିର ପାଖ ବିଭା ସରକାରଙ୍କ ଘରେ ତାହାର ବୈଠକ୍ ବସୁଥିଲା । ବାଲେଶ୍ୱର 'ଉତ୍କଳ ବାଳାଶ୍ରମର' ସେ ଥିଲେ ପ୍ରଥମ ନାରୀ ସୁପରିନ୍‌ଟେଣ୍ଡେଣ୍ଟ । ପ୍ରାୟ ଦୁଇବର୍ଷକାଳ ସେ ଏହି ଦାୟିତ୍ୱରେ ରହି ସୁଚାରୁ ରୂପେ କାର୍ଯ୍ୟ ସମ୍ପାଦନ କରିଥିଲେ । ନିରାଶ୍ରୟ ପିଲାମାନଙ୍କୁ ଆଶ୍ରୟ ଦେବା ଏବଂ ସେମାନଙ୍କ ସେବା ଶୁଶ୍ରୂଷାରେ ଯତ୍ନବାନ୍ ଥିଲେ । ସମାଜର ଅସହାୟା, ନିର୍ଯାତିତା, ପ୍ରସବ ଯନ୍ତ୍ରଣାରେ କଷ୍ଟ ପାଉଥିବା ନାରୀମାନଙ୍କୁ ବିପଦ ବେଳେ ସେ ଅଣ୍ଟାଭିଡ଼ି ସାହାଯ୍ୟ ଓ ସହଯୋଗ କରୁଥିଲେ । ଭାରତଛାଡ଼ ଓ ଅସହଯୋଗ ଆନ୍ଦୋଳନ ବେଳେ ନବକୃଷ୍ଣ ଚୌଧୁରୀ, ରମାଦେବୀଙ୍କ ଦିଗ୍‌ଦର୍ଶନରେ ଛାୟାମୟୀ ଦାସ ବାଲେଶ୍ୱରର ନେତୃତ୍ୱ ନେଇ ଅନ୍ୟାନ୍ୟ ନାରୀ ସଂଗ୍ରାମୀ ଯଥା - ଗୋଦାବରୀ ଦେବୀ (ବୟୋଜ୍ୟେଷ୍ଠ ସ୍ୱାଧୀନତା ସଂଗ୍ରାମୀ ତଥା ବାଲେଶ୍ୱରର ପୂର୍ବତନ ବିଧାୟକ ଶ୍ରୀଯୁକ୍ତ ରବୀନ୍ଦ୍ର ମୋହନ ଦାସଙ୍କ ସ୍ତ୍ରୀ), ଫୁଲମଣି ମହାପାତ୍ର (ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଭୈରବଚନ୍ଦ୍ର ମହାପାତ୍ରଙ୍କ ସ୍ତ୍ରୀ), ସୁଭଦ୍ରା ମହତାବ (ହରେକୃଷ୍ଣ ମହତାବଙ୍କ ସ୍ତ୍ରୀ)ଙ୍କ ସହିତ ବିଦେଶୀ ଲୁଗା ଓ ଜିନିଷପତ୍ର ସବୁ ଟାଉନ୍‌ହଲ ସାମନାରେ ଜୁଡ଼ଜୁଡ଼ ପୋଡ଼ିଥିଲେ । ହରେକୃଷ୍ଣ ମହତାବଙ୍କୁ ଧରିବା ପାଇଁ ଯେତେବେଳେ ପୋଲିସ୍ ଖୋଜୁଥିଲେ, ସେତେବେଳେ ପୂର୍ଣ୍ଣଚନ୍ଦ୍ର ଦାସ ତାଙ୍କୁ ନିଜଘରେ ସୁରକ୍ଷା ଦେଇଥିଲେ ଏବଂ ଏକଥା ଜାଣି ପୋଲିସ୍ ଯେତେବେଳେ ତାଙ୍କ ଘରମଧ୍ୟକୁ ପ୍ରବେଶ କରିବାକୁ ଚାହିଁଲେ ଛାୟାମୟୀ ଦାସ ମହତାବଙ୍କୁ ନାରୀ ବେଶରେ ସଜାଇ ଜମିଦାର ଉଆସର ଅନେକ ନାରୀମାନଙ୍କ ଗହଣରେ ବାହାରକୁ ପଠାଇବାର ବିଚକ୍ଷଣ ବୁଦ୍ଧି ସୃଷ୍ଟି କରିଥିଲେ । ସ୍ୱାଧୀନତା ଆନ୍ଦୋଳନ ବେଳେ ପୂର୍ଣ୍ଣଚନ୍ଦ୍ର ଦାସ ଝାଡ଼ାଯିବା ବାହାନାରେ ଡାଳ ମଧ୍ୟରେ ରୁଟି ତରକାରୀ ନେଇ ଭୂୟାଁକୋଠା ପଛପାଖ (ଆଜିର ଫକୀରମୋହନ କଲେଜର ବାଣିଜ୍ୟ ବିଭାଗ) ଜଙ୍ଗଲରେ ସ୍ୱାଧୀନତା ସଂଗ୍ରାମୀ ମାନଙ୍କୁ ଖାଦ୍ୟ

ଯୋଗାଉଥିଲେ । ସେତେବେଳେ ଭୂୟାଁକୋଠା ସହ ଶାନ୍ତିକାନନ ପାର୍ଶ୍ୱପଥ ମଲ୍ଲିକାଶପୁର ଅଞ୍ଚଳ ଗଛପତ୍ରଭରା ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ୧୯୩୦/୧୯୩୧ ମସିହା ବେଳକୁ ସେନାପତିଙ୍କ ବାସଗୃହ କଂଗ୍ରେସ ସେବାଦଳ ମାନଙ୍କ ପୁଣ୍ୟ ଆଶ୍ରୟସ୍ଥଳ ଥିଲା । ସ୍ୱାଧୀନତା ସଂଗ୍ରାମୀ ମାନଙ୍କର ଏହା ଥିଲା ଯିବା ଆସିବାର ନିଛାଟିଆ ଚରାଭୂଇଁ ।

କିଛି ଭୂ-ସମ୍ପତ୍ତି ବିକ୍ରୟ ଜନିତ କାରଣରୁ ଫକୀରମୋହନ ଓ ପୁତ୍ର ମୋହିନୀ ମୋହନଙ୍କ ମଧ୍ୟରେ ହୋଇଥିବା ମନାନ୍ତର କ୍ରମେ କଟକ ଅଦାଲତରେ ମୋକଦ୍ଦମା ରୂପ ନେଇଥିଲା । ଏଥିପାଇଁ କବି ବହୁ ମାନସିକ ଅଶାନ୍ତି ଭୋଗ କରିଥିଲେ । ନାସ୍ତିକ ପୁତ୍ର ପ୍ରତି ତାଙ୍କର ସମସ୍ତ ଆସ୍ଥା ତୁଟି ଯାଇଥିଲା । କବି ତାଙ୍କର 'ଇଚ୍ଛାପତ୍ର'ର ପ୍ରଥମ ନମ୍ବରରେ ଉଲ୍ଲେଖ କରିଛନ୍ତି "ଯେହେତୁ ଆମ୍ଭର ପୁତ୍ର ମୋହିନୀ ମୋହନ ସେନାପତି, ତାହାର ଜ୍ଞାନ ଜାତ ହେବା ଦିନରୁ ଆମ୍ଭର ଶରୀର ପ୍ରତି, ଆମ୍ଭର ଅର୍ଥ, ମାନ ସମ୍ଭ୍ରମ ପ୍ରତି ନିତାନ୍ତ ନିଷ୍ଠୁର ବ୍ୟବହାର କରି ଆସୁଅଛି । ଆମ୍ଭଙ୍କୁ ଅକାରଣରେ ନିତାନ୍ତ କଷ୍ଟ ଦେବା ତାହାର କର୍ତ୍ତବ୍ୟ ଏବଂ ତାହା ପକ୍ଷରେ ଅତ୍ୟନ୍ତ ଆନନ୍ଦକର ବୋଲି ଜ୍ଞାନକରି ସେ ପ୍ରକାଶ୍ୟ ରୂପେ ଆମ୍ଭମାନଙ୍କୁ ଏବଂ ଆମ୍ଭର ସମସ୍ତ ସମ୍ପତ୍ତିକୁ ତ୍ୟାଗ କରି ଯାଇଅଛି । ଅତଏବ ସେ ଆମର ତେଜ୍ୟ ପୁତ୍ର ଅଟେ ।

ଆମ୍ଭର ମୃତ୍ୟୁ ଉତ୍ତାରୁ ଆମ୍ଭ ସମ୍ପତ୍ତିରେ ତାହାର କିଛିମାତ୍ର ଅଧିକାର ନାହିଁ ଏବଂ ସେ ଧର୍ମଦ୍ରୋହୀ ନାସ୍ତିକ ଥିବା ହେତୁରୁ ଆମ୍ଭ ମୃତ୍ୟୁପରେ ଆମ୍ଭର ପରଲୋକଗତ ଆତ୍ମାପ୍ରତି କୌଣସି ଶ୍ରାଦ୍ଧାଦି କରିବ ନାହିଁ ।" (ସ୍ମୃତି ତରଂଗ....ଶ୍ରୀ ଅଚ୍ୟୁତାନନ୍ଦ ଦାସ/ ୧ମ ପ୍ରକାଶ ୧୯୮୭, ପୃ-୨୭) ବ୍ୟାସକବି ନିଜ ସ୍ଥାବର ଅସ୍ଥାବର ସମ୍ପତ୍ତିର ସୁରକ୍ଷାପାଇଁ ତା ୧୯-୬-୧୯୧୪ ମସିହାରେ ନିଜେ ଏକ 'ଇଚ୍ଛାପତ୍ର' କରିଯାଇଥିଲେ । ମୃତ୍ୟୁପରେ ତାଙ୍କ ସ୍ୱହସ୍ତ ନିର୍ମିତ 'ଶାନ୍ତିକାନନ'ର ସୁରକ୍ଷା ପାଇଁ ଓକିଲ ତଥା ବନ୍ଧୁମାନଙ୍କ ପରାମର୍ଶକ୍ରମେ ୧୯୧୬ ମସିହାରେ ଏକ ଟ୍ରଷ୍ଟବୋର୍ଡ଼ ମଧ୍ୟ ଗଠନ କରିଯାଇଥିଲେ । ଏହି ଟ୍ରଷ୍ଟ ବୋର୍ଡ଼ରେ ସେତେବେଳେ ଗୋଲାବ ଖାଁ, ଉପେନ୍ଦ୍ର ଚନ୍ଦ୍ର ଦତ୍ତ ଗୁପ୍ତ, କାଳିନ୍ଦୀ ନାୟକ, ଅଭିରାମ ନନ୍ଦ, ପ୍ରଫୁଲ୍ଲ ପଟ୍ଟନାୟକ, ଗୋବିନ୍ଦ ପଣ୍ଡା, ମଧୁସୂଦନ ଦାସ, ହିରଣପ୍ରଭା ସେନାପତିଙ୍କ ସହିତ ପୂର୍ଣ୍ଣଚନ୍ଦ୍ର ଦାସ ମଧ୍ୟ ଜଣେ ସଭ୍ୟଥିଲେ । ମୋହିନୀ ମୋହନ ମଧ୍ୟ ଏହି ଟ୍ରଷ୍ଟବୋର୍ଡ଼ ସଭ୍ୟ ମାନଙ୍କ ନାମରେ ମକଦ୍ଦମା କରିଥିଲେ । ମୋହିନୀବାବୁ ଯେହେତୁ ଫକୀରମୋହନଙ୍କ ଏକମାତ୍ର ପୁତ୍ର

ଏବଂ ପିତାଙ୍କ ଅନ୍ତେ ସମ୍ପତ୍ତି ପାଇବାର ଉତ୍ତରାଧିକାରୀ, ସେ ଦୃଷ୍ଟିରୁ କୌଣସି ସଭ୍ୟ କଟକ ଯାଇ ମକଦ୍ଦମାରେ ଜବାବ ଦେଲେ ନାହିଁ । ଫଳରେ ସେ ଏକ ତରଫା ଡିଗ୍ରୀ ପାଇଲେ । ଅବଶ୍ୟ ଟ୍ରଷ୍ଟବୋର୍ଡ଼ ସଭ୍ୟ ପୂର୍ଣ୍ଣଚନ୍ଦ୍ର ଦାସ ଫକୀରମୋହନଙ୍କ ଜୀବଦ୍ଦଶାରେ ପିତା ଓ ପୁତ୍ର ମୋହିନୀମୋହନଙ୍କ ମଧ୍ୟରେ ଆନ୍ତରିକ ବୁଝାମଣା ପାଇଁ ଉଦ୍ୟମ କରିଥିଲେ । କାରଣ ମୋହିନୀମୋହନଙ୍କ ସ୍ତ୍ରୀ ହିରଣ୍ପ୍ରଭା ପୂର୍ଣ୍ଣଚନ୍ଦ୍ର ଦାସଙ୍କ ସ୍ତ୍ରୀ ।ୟାମୟୀ ଦାସଙ୍କର ଦୂର ସମ୍ପର୍କୀୟା ବ୍ରାହ୍ମସମ୍ପ୍ରଦାୟର କନ୍ୟା ଥିଲେ ।

ଯା'ବି ହେଉ ପୂର୍ଣ୍ଣଚନ୍ଦ୍ର ଦାସଙ୍କର ପିତାମହ ପ୍ରତିମ ଫକୀରମୋହନଙ୍କ ପ୍ରତି ସର୍ବଦା କର୍ତ୍ତବ୍ୟ ଓ ସମ୍ମାନବୋଧ ଥିଲା । ସେ ପୁତ୍ର-ଅବହେଳା ଜନିତ ଏକ ପିତାର ସେବା, ଶୁଶ୍ରୂଷା, କରିବା ସଙ୍ଗେସଙ୍ଗେ ତାଙ୍କ ସ୍ନେହାକାଂକ୍ଷୀ ହୃଦୟକୁ ଭଲଭାବରେ ବୁଝିଥିଲେ । ସେଥିପାଇଁ କବିଙ୍କର ବାସଗୃହଠାରୁ ଅଳ୍ପ ଦୂରରେ ତାଙ୍କର ଅନ୍ୟଏକ ଘର ଥିବାରୁ ପ୍ରାୟ ସର୍ବଦା କବିଙ୍କ ସୁଖ ଦୁଃଖରେ ସେ ବରାବର ଉପସ୍ଥିତ ରହୁଥିଲେ । ଏହାହିଁ ପୁତ୍ର ଅଭାବ ଜନିତ ଫକୀରମୋହନଙ୍କ ପାଇଁ ଏକ ଆଶାବାଡ଼ି ସଦୃଶ ଥିଲା ।



# ଚନ୍ଦ୍ରମୋହନ ଓ ଫକୀରମୋହନ

ବ୍ୟାସକବି ଫକୀରମୋହନ ସେନାପତିଙ୍କ ମୃତ୍ୟୁରେ ବ୍ୟଥିତ ହୋଇ ଚନ୍ଦ୍ରମୋହନ ଲେଖିଥିଲେ, ତାଙ୍କ ସହିତ ଉତ୍କଳ ପାଠକବର୍ଗଙ୍କର ଏକ ଘନିଷ୍ଠ ସମ୍ପର୍କ ଥିଲା ପରି "ଅକିଞ୍ଚନ ଲେଖକର ତାଙ୍କ ସହିତ ଏକାଧିକ ସମ୍ପର୍କ ଥିଲା । ଫକୀରମୋହନଙ୍କ ଜନ୍ମ ଉତ୍କଳର ଯେଉଁ ଖଣ୍ଡରେ, ଲେଖକର ଜନ୍ମ ମଧ୍ୟ ସେହି ଖଣ୍ଡରେ । ଏହା ଗୋଟିଏ ସମ୍ପର୍କ ଓ ଦୈବ ସମ୍ପର୍କ । ଫକୀରମୋହନ ସର୍ବଦା, ଅନ୍ତତଃ ଜୀବନର ଶେଷ ଭାଗରେ, ଯେଉଁ ଚର୍ଚ୍ଚା କରୁଥିଲେ, ଏଇ ଅକିଞ୍ଚନ କିୟତ୍ ପରିମାଣରେ ସେହି ଚର୍ଚ୍ଚା କରିଅଛି । ଆମ୍ଭେମାନେ ବାଲ୍ୟକାଳରେ ତତ୍‌ପ୍ରଣୀତ 'ଭାରତବର୍ଷର ଇତିହାସ' ବିଦ୍ୟାଳୟରେ ପଢ଼ିଥିଲୁ । ଏ ତିନୋଟି ସମ୍ପର୍କ ଅନନ୍ୟ ସାଧାରଣ ନୁହେଁ । ମାତ୍ର ଆଉ ଗୋଟିଏ ସମ୍ବନ୍ଧ ଅଛି, ଯାହାକୁ ମୁଁ ଅନନ୍ୟ ସାଧାରଣ କହିଲେ ତାହା ଅତଥ୍ୟ ହେବ ନାହିଁ । ମୁଁ ବାଲ୍ୟକାଳରେ ଯେଉଁ ବିଦ୍ୟାଳୟରେ ପଢ଼ିଥିଲି, ତାହାର ବୟଃକ୍ରମ ପ୍ରାୟ ପଚାଶବର୍ଷ ହେଲା । ଦିନେ ରାଧାନାଥ, ବୈକୁଣ୍ଠନାଥ ଓ ଫକୀରମୋହନ ଯାଇ ରେମୁଣା ମଧ୍ୟୋତ୍କଳ ବିଦ୍ୟାଳୟଟି ସ୍ଥାପନ କରି ଆସିଲେ ।" (ଚନ୍ଦ୍ରମୋହନ ଗ୍ରନ୍ଥାବଳୀ (୧୯୯୧), ଜାନୁଆରୀ, ସଂ. ଡ. ଅରବିନ୍ଦ ଗିରି-ପୃଷ୍ଠା- ୨୩୬)

ଅତଏବ ଚନ୍ଦ୍ରମୋହନ ଅନ୍ୟମାନଙ୍କ ସହିତ ଫକୀରମୋହନଙ୍କ ସ୍ଥାପିତ ରେମୁଣା ମଧ୍ୟୋତ୍କଳ ବିଦ୍ୟାଳୟରୁ ପ୍ରାଥମିକ ଶିକ୍ଷା ସମାପନ କରି ୧୮୮୩ ମସିହାରେ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଅଧ୍ୟୟନ କରୁଥିଲେ । ଦିନେ ପ୍ରାତଃକାଳରେ କୌଣସି ସୁହୃଦଙ୍କ ସହିତ ସୁନହଟ କରଣସାହିରେ ଫକୀରମୋହନଙ୍କୁ ସାକ୍ଷାତ୍ ଏବଂ ସୁଖାଳାପ ଅବସରରେ ଚନ୍ଦ୍ରମୋହନ ଫକୀରମୋହନଙ୍କ ପରିଚୟକୁ ଆସି ।

ତା'ପରେ ୧୮୮୫-୮୭ ମସିହା ପର୍ଯ୍ୟନ୍ତ ଚନ୍ଦ୍ରମୋହନ ରେଭେନ୍‌ସା କଲେଜରେ ଏଫ.ଏ. କ୍ଲାସ୍‌ରେ ପଢ଼ିବାବେଳେ 'ସଂସ୍କାରକ' ପତ୍ରିକାରେ ଏକାଧିକ

କବିତାଲେଖି ରାଧାନାଥ, ମଧୁସୂଦନ ଓ ଫକୀରମୋହନଙ୍କ ଯଥେଷ୍ଟ ପ୍ରତିଭାଜନ ହୋଇଥିଲେ । ସେସମୟରେ ବୟସରେ ଯଥେଷ୍ଟ ତରୁଣ,ସାହିତ୍ୟ କ୍ଷେତ୍ରରେ ଶିଷ୍ୟସ୍ଥାନୀୟ ହେଲେ ମଧ ଚନ୍ଦ୍ରମୋହନଙ୍କ ମତ ପ୍ରତି ଏମାନଙ୍କର ଗଭୀର ଆସ୍ଥା ସୃଷ୍ଟି ହୋଇଥିଲା ।

ବାରିପଦା ରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେଓଙ୍କ ପୃଷ୍ଠପୋଷକତାରେ ପ୍ରକାଶିତ ଉତ୍କଳ ପ୍ରଭା (୧୮୯୨-୯୬) ରେ ଚନ୍ଦ୍ରମୋହନଙ୍କ 'ଖଣ୍ଡଗିରି', 'ଯେ ଗଲାଣି ତ ସେ ତ ଆଉ ନୁହେଁ ଫେରିବାର', 'କପିଳାସ' ତଥା ଅନ୍ୟ କେତେକ କବିତା ପ୍ରକାଶ ପାଇଥିଲା । ଏଥିପାଇଁ ଶ୍ରେଷ୍ଠ କବିତା ରଚୟିତା ଭାବରେ ସେ ମଧ ଏକାଧିକ ବାର ପୁରସ୍କୃତ ହୋଇଥିଲେ । ସେଥିପାଇଁ ଫକୀର ମୋହନ ସେନାପତି 'ଉତ୍କଳ ଭ୍ରମଣ'ରେ ଚନ୍ଦ୍ରମୋହନଙ୍କ ଉଦ୍ଦେଶ୍ୟରେ ଲେଖିଛନ୍ତି- "ଆହେ ଚନ୍ଦ୍ର ମହାରଣେ ହେଉ ହେଉ ହେଉ/ଢାଳିଦିଅ ଆଉଥରେ କବିତାର ଢେଉ/ଛପାଇବେ ରାମଚନ୍ଦ୍ର ଚିନ୍ତାକିହେ ଆଉ/ ମାରିନେବ ଟଙ୍କାମୁଠେ ଠୁକି ଦେଇ ବାହୁ ।" ତତ୍‌ସହିତ ୧୮୯୪ସାଲ୍‌ରେ କଟକ ନର୍ମାଲ୍ ଟ୍ରେନିଂ ସ୍କୁଲ୍‌କୁ କେନ୍ଦ୍ରକରି ଗଢ଼ିଉଠିଥିବା 'ଆଲୋଚନା ସଭା' ଏବଂ ଏହାର ପରିବର୍ତ୍ତୀ ରୂପାନ୍ତର 'ଉତ୍କଳ ସାହିତ୍ୟ ସମାଜ'ରେ ଓଡ଼ିଶାର ରାଜନ୍ୟବର୍ଗ ତଥା ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ପରି ଫକୀରମୋହନ ଓ ଚନ୍ଦ୍ରମୋହନ ଆଜୀବନ ସଭ୍ୟଥିବା ସହିତ ଉଭୟେ ସହକାରୀ ସଭାପତି ଦାୟିତ୍ୱ ବେଶ୍ କେତେବର୍ଷ ବହନ କରିଥିଲେ ।

ବିଶେଷକରି ୧୮୯୭ରେ ପ୍ରକାଶିତ 'ଉତ୍କଳ ସାହିତ୍ୟ'ଥିଲା ଉଭୟ 'ଆଲୋଚନା ସଭା' ଓ 'ଉତ୍କଳ ସାହିତ୍ୟ ସମାଜ'ର ମୁଖପତ୍ର । ପ୍ରଥମେ ଯେଉଁ ସାତଜଣଙ୍କୁ ନେଇ 'ଉତ୍କଳ ସାହିତ୍ୟ' ପତ୍ରିକା ସୂତ୍ରପାତ ହୋଇଥିଲା, ତନ୍ମଧରେ ଫକୀରମୋହନ ଓ ଚନ୍ଦ୍ରମୋହନ ଥଲେ ଜଣେ ଜଣେ ଅନ୍ୟତମ । କାରଣ ଚନ୍ଦ୍ରମୋନହ ୧୮୯୩ରୁ ୧୮୯୯ ପର୍ଯ୍ୟନ୍ତ ଥିଲେ, କଟକ ଟ୍ରେନିଂ ସ୍କୁଲର ସହକାରୀ ଶିକ୍ଷକ ଏବଂ ଫକୀରମୋହନ ସେତେବେଳେ ଓଡ଼ିଶାର ବିଭିନ୍ନ ରାଜ୍ୟର ଦେଓ୍ୱାନ କାର୍ଯ୍ୟ (୧୮୬୯-୧୯୦୪) ରହୁଥିଲେ । 'ଉତ୍କଳ ସାହିତ୍ୟ'୧ମ ଭାଗ ୧ମ ସଂଖ୍ୟାରେ ଚନ୍ଦ୍ରମୋହନଙ୍କ 'ସାହିତ୍ୟ ପତ୍ରିକାର ଉପଯୋଗିତା' ଆଲୋଚନା, 'ମାଧୁରୀ' କବିତା ଏବଂ ଫକୀର ମୋହନଙ୍କ 'ଭଗ୍ନ ଶିବ ମନ୍ଦିର' କବିତା ପ୍ରକାଶ ପାଇଥିଲା । ଟ୍ରେନିଂ ସ୍କୁଲ୍‌ର ପ୍ରଧାନଶିକ୍ଷକ ମଧୁସୂଦନ ରାଓ, ସହକାରୀ ଶିକ୍ଷକ ଚନ୍ଦ୍ରମୋହନ ମହାରଣା, ଫକୀର ମୋହନ ସେନାପତି, ବିଶ୍ୱନାଥ କର, କୃଷ୍ଣ ପ୍ରସାଦ ଚୌଧୁରୀ, ଶ୍ୟାମସୁନ୍ଦର

ନନ୍ଦ, ଭୋଳାନାଥ ସାମନ୍ତରାୟ, ଗୋପାଳ ଚନ୍ଦ୍ର ପ୍ରହରାଜ ତଥା ସାଧୁଚରଣ ରାୟଙ୍କ ଏକତ୍ର ସହାବସ୍ଥାନ ସାହିତ୍ୟ ଚର୍ଚ୍ଚାରେ ଏକ ଅନୁକୂଳ ବାତାବରଣ ସୃଷ୍ଟି କରିଥିଲା । ଏଭଳି ଓଡ଼ିଶାର ବହୁ ବିଜ୍ଞବର, ନିଷ୍ଠାପର ସ୍ୱୀୟ ମାତୃଭାଷା ଅନୁରାଗୀ ସାହିତ୍ୟ ସ୍ରଷ୍ଟାମାନଙ୍କ ଲେଖନୀ ଚାଳନା ତଥା ବାଗ୍ମୀ ବିଶ୍ୱନାଥ କରଙ୍କ ବଳିଷ୍ଠ ସମ୍ପାଦନା ଫଳରେ 'ଉତ୍କଳ ସାହିତ୍ୟ' ପତ୍ରିକାର ସାହିତ୍ୟିକ ଗୌରବ ଚିର ଅକ୍ଷୁଣ୍ଣ ରହିପାରିଲା ।

ଚନ୍ଦ୍ରମୋହନ ୧୮୯୮ରୁ ୧୯୦୨ ମସିହା ପର୍ଯ୍ୟନ୍ତ ପୁରୀ ଜିଲ୍ଲା ସ୍କୁଲ ସମୂହର ଡେପୁଟୀ ଇନସ୍‌ପେକ୍ଟର ଭାବରେ ପୁରୀରେ ଅବସ୍ଥାନ କରୁଥିଲେ । କୌଣସି ସରକାରୀ କାର୍ଯ୍ୟ ଉପଲକ୍ଷରେ କଟକକୁ ଆସି ଫକୀରମୋହନଙ୍କୁ ତାଙ୍କ ବସାରେ ସାକ୍ଷାତ କରିଥିଲେ । କଥୋପକଥନ ପ୍ରସଙ୍ଗରେ ଫକୀରମୋହନଙ୍କ ସଦର ଦ୍ୱାର କାନ୍ଥରେ ମଡ଼ା ହୋଇଥିବା ଏକ ସୁପର୍ଣ୍ଣ ଲତାକୁ ଦେଖି ଚନ୍ଦ୍ରମୋହନ କହିଲେ, "ଆପଣ ଏ ଲତାଟି କାହିଁକି କାନ୍ଥରେ ମଡ଼ାଇଲେ ? ପାନ ଗଛଟିଏ ମଡ଼ାଇଥିଲେ ଭଲ ହୋଇଥାନ୍ତା ।". ଫକୀରମୋହନ ହସି ହସି କହିଲେ, "ଠିକ୍ କହିଅଛ ।" ପାଠକମାନଙ୍କ ମଧ୍ୟରୁ ଅନେକ ଜାଣିଥିବେ, ଫକୀମୋହନ ବହୁତ ପାନ ଖାଉଥିଲେ ।" (ଚନ୍ଦ୍ରମୋହନ ଗ୍ରନ୍ଥାବଳୀ (୧୯୯୧) ସଂ, ଡ. ଅରବିନ୍ଦ ଗିରି ପୃ-୨୩୯) ଉଭୟଙ୍କ ମଧ୍ୟରେ ଏଭଳି ଉକ୍ତି କେତେ ପ୍ରାଣୋଚ୍ଛଳ, ରସାଳ ତଥା ହୃଦ୍ୟ, ସେକଥା ସ୍ପଷ୍ଟ ଅନୁମିତ ।

ଫକୀରମୋହନ ଉପନ୍ୟାସ ଲେଖା ଆରମ୍ଭ କରିଥିବା ଅବସରରେ ଚନ୍ଦ୍ରମୋହନ ଦିନେ ତାଙ୍କୁ କହିଥିଲେ "ଓଡ଼ିଆ ଭାଷାରୁ କେତେ ଗୁଡ଼ିଏ ଶବ୍ଦ ଲୁପ୍ତ ହୋଇ ଯାଉଅଛି । ଆପଣଙ୍କର ଉପନ୍ୟାସ ମଧ୍ୟରେ ସେଗୁଡ଼ିକ ସ୍ଥାନ ଦେଇ ବଞ୍ଚାଇ ରଖନ୍ତୁ । ଭାବୀ ବାଲେଶ୍ୱର ବାସୀ ମଧ୍ୟ ଗୋଧୀ, କାଚାର ପ୍ରଭୃତି ଶବ୍ଦର ଅସ୍ତିତ୍ୱରେ ଅନଭିଜ୍ଞ ହେବେ । ମୋ ଉକ୍ତିର ଯଥାର୍ଥ ସେ ସ୍ୱୀକାର କଲେ ।"

କେବଳ ଏତିକି ନୁହେଁ, ଫକୀରମୋହନଙ୍କ ପରି ଚନ୍ଦ୍ରମୋହନ ମଧ୍ୟ ମୌଳିକ ଓଡ଼ିଆ ପାଠ୍ୟପୁସ୍ତକର ଘୋର ଅଭାବ ଅନୁଭବ କରିଥିଲେ ଏବଂ ନିଜେ ସେଥିପାଇଁ ପାଠ୍ୟପୁସ୍ତକ ରଚନା କ୍ଷେତ୍ରରେ ବ୍ରତୀ ହୋଇଥିଲେ । ଯା'ଫଳରେ 'କଥାକଳୀ' (୧ମ,୨ୟ ଭାଗ) 'ରଚନା ଶିକ୍ଷା', 'ଓଡ଼ିଆ ବ୍ୟାକରଣ', (୧ମ, ୨ୟ ଭାଗ) ପ୍ରଭୃତି ଶିଶୁପାଠ୍ୟ ଗୁଡ଼ିକ ଭର୍ଣ୍ଣାକୁଲାର ଶ୍ରେଣୀର ଶିଶୁଶିକ୍ଷାର ମୂଳଦୁଆ ଗଠନ କରିବା ଦିଗରେ ସୁଦୃଢ଼ ହୋଇପାରିଥିଲା । ମୌଳିକ ଚିନ୍ତା ପ୍ରସୂତ, ବ୍ୟାପକ ଦୃଷ୍ଟିଭଙ୍ଗୀ, ଶିଶୁ ମନ ଉପଯୋଗୀ ବିଷୟ ନିର୍ବାଚନ, ଶିଶୁ ମୁଖରୁଚିଭାଷା ନେଇ ମଧୁମକ୍ଷିକା ପରି ସେ

ଯେଉଁ ପାଠ୍ୟପୁସ୍ତକର ମଧୁଚକ୍ର ସୃଷ୍ଟିକରିଗଲେ, ତାହା ଓଡ଼ିଆ ଶିଶୁ ସାହିତ୍ୟର ଏକଏକ ଅକ୍ଷୟ ସାରସ୍ୱତ ସମ୍ପଦ ।

୧୯୧୮ରେ ଫକୀର ମୋହନଙ୍କ ମୃତ୍ୟୁ ସମ୍ବାଦ ଚନ୍ଦ୍ରମୋହନଙ୍କ ହୃଦୟରେ ଦାରୁଣ ଆଘାତ ଦେଇଥିଲା । ଜଣେ ପ୍ରତିଭାବାନ ସାହିତ୍ୟ ସ୍ରଷ୍ଟା, ଏକାନ୍ତ ଆତ୍ମୀୟଙ୍କୁ ହରାଇ ବ୍ୟଥିତ ଚିତ୍ତରେ ତାଙ୍କ ଜୀବନର ମହନୀୟ ଗୁଣାବଳୀକୁ ସ୍ମରଣକରି ଲେଖିଥିଲେ "ଫକୀରମୋହନଙ୍କ ହୃଦୟ ରସଗୋଲା ପରି ଥିଲା । ତନ୍ମଧ୍ୟରେ ସ୍ନେହ ଓ ଦୟା ଏହି ଦୁଇଟି ସୁରସ ପ୍ରଚୁର ପରିମାଣରେ ଥିଲା । କ୍ରୋଧ ତାଙ୍କ ମନରେ ସ୍ଥାନ ପାଉଥିଲା କି ନାହିଁ, ମୋତେ ଜଣାନାହିଁ । ଏହା ତାଙ୍କ ମନକୁ ଅଭିଭୂତ କରିବାକୁ ଅକ୍ଷମ ଥିଲା । ଆଶ୍ରିତ ବାତ୍ସଲ୍ୟ ତାଙ୍କ ଜୀବନର ଗୋଟିଏ ପ୍ରଧାନ ଲକ୍ଷ୍ୟଥିଲା । ତାଙ୍କ ଜୀବନର ଗୋଟିଏ ଗୋଟିଏ ବିଶେଷ ଘଟଣାରୁ ଗୋଟିଏ ଗୋଟିଏ ଅମୂଲ୍ୟ ଶିକ୍ଷା ମିଳେ ।" (ଚନ୍ଦ୍ରମୋହନ ଗ୍ରନ୍ଥାବଳୀ (୧୯୯୧) ସଂ. ଡ. ଅରବିନ୍ଦ ଗିରି ପୃ-୨୪୦) ଆଜି ସେହି ଅମର ସ୍ରଷ୍ଟାଙ୍କ ଜୟନ୍ତୀ ଅବସରରେ ସେହି ଦୁର୍ଲ୍ଲଭ ଆତ୍ମାର ସଦ୍‌ଗତି କାମନା କରୁଛି ।



# ନିବିଡ଼ ସାରସ୍ୱତ ସମ୍ପର୍କ
# ଗଙ୍ଗାଧର ଓ ଫକୀରମୋହନ

ଗଙ୍ଗାଧର ମେହେର ମୁଖ୍ୟତଃ ଥିଲେ ସ୍ୱଭାବ କବି । ଜନ୍ମ ତାଙ୍କର ସୁଦୂର ପଶ୍ଚିମ ଓଡ଼ିଶାର ବରପାଲି ଗ୍ରାମର ଏକ ଭୁଲିଆ ତନ୍ତବାୟ ପରିବାରରେ । ଶିକ୍ଷାଗତ ଯୋଗ୍ୟତା ଥିଲା ମାତ୍ର ପଞ୍ଚମ ଶ୍ରେଣୀ ଯାଏଁ । କିନ୍ତୁ ସ୍ୱୀୟ କବିତ୍ୱ ପ୍ରତିଭା ବଳରେ ସେ ଆଜି ଅମର ସାରସ୍ୱତ ସ୍ରଷ୍ଟାର ସମ୍ମାନ ପାଇପାରିଛନ୍ତି । ତାଙ୍କ ସୃଷ୍ଟି ସମ୍ଭାର ରାଧାନାଥଙ୍କ ଭଳି ପାଶ୍ଚାତ୍ୟ ସାହିତ୍ୟାଦର୍ଶ ଅନୁସୃତ ନହୋଇ ସମ୍ପୂର୍ଣ୍ଣ ଭାରତୀୟ କାବ୍ୟାଦର୍ଶ ପରିପୁଷ୍ଟ ଥିଲା । ଜଣେ ଚେତନ ସାରସ୍ୱତ ସ୍ରଷ୍ଟାଭାବରେ ସେ ତାଙ୍କର କାବ୍ୟ ସୃଷ୍ଟିରେ ପ୍ରାଚ୍ୟ ମୌଳିକତାକୁ ସମ୍ପୂର୍ଣ୍ଣଭାବରେ ଅକ୍ଷୁଣ୍ଣ ରଖିଥିଲେ । ଫଳରେ ତାଙ୍କ ସାହିତ୍ୟାଦର୍ଶ ପ୍ରତି ତତ୍‌କାଳୀନ ଓଡ଼ିଶାର ସାରସ୍ୱତ ସ୍ରଷ୍ଟା ତଥା ଶିକ୍ଷିତ ମଣ୍ଡଳୀଙ୍କର ଗଭୀର ଆସ୍ଥା ଓ ଆତ୍ମବିଶ୍ୱାସ ସୃଷ୍ଟି ହୋଇଥିଲା । ପରକ୍ଷଣରେ ଏହି ସାରସ୍ୱତ ମାନସ ସହିତ ଗଙ୍ଗାଧରଙ୍କର ମଧ ନିବିଡ଼ ଆତ୍ମୀୟତା ବୃଦ୍ଧି ପାଇଥିଲା । ଏମାନଙ୍କ ମଧ୍ୟରୁ ଫକୀର ମୋହନ, ରାଧାନାଥ, ଚନ୍ଦ୍ରମୋହନ ମହାରଣା, ମଧୁସୂଦନ, ନନ୍ଦକିଶୋର, ଚିନ୍ତାମଣି ମହାନ୍ତି, ଲକ୍ଷ୍ମୀକାନ୍ତ, ଲକ୍ଷ୍ମୀନାରାୟଣ ସାହୁ, ବିଶ୍ୱନାଥ କର, ନୀଳମଣି ବିଦ୍ୟାରତ୍ନ, ଶଶିଭୂଷଣ ରାୟ, ଗୋପାଳଚନ୍ଦ୍ର ପ୍ରହରାଜ, ଉତ୍କଳ ଗୌରବ ମଧୁସୂଦନ ଦାସ, ମୃତ୍ୟୁଞ୍ଜୟ ରଥ, ବ୍ରଜମୋହନ ପଣ୍ଡା, ସାର୍‌ବାସୁଦେବ ସୁଢ଼ଳ ଦେବ, ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ଅନ୍ୟତମ । ଗଙ୍ଗାଧରଙ୍କ ସହିତ ଏମାନଙ୍କର ବ୍ୟକ୍ତିଗତ ମଧୁର ସମ୍ପର୍କ ଚିର ଅତୁଟଥିଲା । ପରସ୍ପର ଚିଠିପତ୍ରର ଆଦାନ ପ୍ରଦାନ କରୁଥିଲେ । ଗଙ୍ଗାଧରଙ୍କ ପୁସ୍ତକ ସମୀକ୍ଷା ଓ ସାହିତ୍ୟ ଆଲୋଚନା କ୍ଷେତ୍ରରେ ନିଜସ୍ୱ ସ୍ୱାଧୀନ ମନ୍ତବ୍ୟ ପ୍ରକାଶ କରୁଥିଲେ । ଅନେକ କ୍ଷେତ୍ରରେ ତାଙ୍କ ରଚନାର ସଂଶୋଧନ ମୂଳକ ପରାମର୍ଶ ମଧ ଦେଉଥିଲେ । ଗଙ୍ଗାଧରଙ୍କ ପାଖକୁ ଲିଖିତ ରାଶିରାଶି ଚିଠିପତ୍ର ଏବଂ ଗଙ୍ଗାଧରଙ୍କ

ସ୍ୱୀୟ ପତ୍ରାବଳୀରୁ ଏକଥା ସ୍ପଷ୍ଟ ସୂଚନା ମିଳେ ।

ଗଙ୍ଗାଧର ଓ ଫକୀରମୋହନଙ୍କ ମଧ୍ୟରେ ଏଭଳି ସମ୍ପର୍କ ଖୁବ୍ ମଧୁମୟ ହୋଇ ଉଠିଥିଲା । ଫକୀରମୋହନଙ୍କ ସାରସ୍ୱତ ବ୍ୟକ୍ତିତ୍ୱ ପ୍ରତି ଗଙ୍ଗାଧରଙ୍କ ଯେଭଳି ସମ୍ମାନ ବୋଧଥିଲା, ତାଙ୍କ ସାହିତ୍ୟ ପ୍ରତି ସେଭଳି ଗଭୀର ଅନୁରାଗ ଓ ଅନୁରକ୍ତି ମଧ ଥିଲା । ଅନୁରୂପ ଭାବରେ ଫକୀରମୋହନ ମଧ ଗଙ୍ଗାଧରଙ୍କ ଉଚ୍ଚାଙ୍ଗ ସାହିତ୍ୟାଦର୍ଶକୁ ଆନ୍ତରିକ ସମର୍ଥନ ଦେବା ସହିତ ତାଙ୍କ କାବ୍ୟ ପ୍ରତିଭାକୁ ଉଚ୍ଚପ୍ରଶଂସା କରିଥିଲେ ।

ଗଙ୍ଗାଧର ସ୍ୱରଚିତ ପୁସ୍ତକଟି ପ୍ରକାଶ କରିବା ମାତ୍ରେ ତାହା ସେ ଫକୀରମୋହନଙ୍କ ନିକଟକୁ ପଠାଉଥିଲେ । ଫକୀରମୋହନ ପୁସ୍ତକଟି ପାଇ ଗଭୀର ମନଯୋଗ ସହକାରେ ତାହାକୁ ଥରେ ନୁହେଁ ଏକାଧିକବାର ମଧ ପାଠ କରୁଥିଲେ । ତା'ପରେ ପୁସ୍ତକ ଉପରେ ଏକ ନିଜସ୍ୱ ମୌଳିକ ମନ୍ତବ୍ୟ ଦେଇ ଗଙ୍ଗାଧରଙ୍କ ନିକଟକୁ ପତ୍ର ଲେଖୁଥିଲେ । ଗଙ୍ଗାଧରଙ୍କ ରଚିତ 'ଉତ୍କଳ ଲକ୍ଷ୍ମୀ', ଇନ୍ଦୁମତୀ, କବିତା କଲ୍ଲୋଳ, ପ୍ରଣୟ ମଞ୍ଜରୀ (ବଲ୍ଲରୀ), କୀଚକବଧ, ତପସ୍ୱିନୀ କାବ୍ୟ ଉପରେ ଫକୀରମୋହନଙ୍କ ନିଜସ୍ୱ ମୌଳିକ ଦୃଷ୍ଟିଭଙ୍ଗୀ, ରଚନାଗତ ପ୍ରଶଂସା ଓ ପ୍ରେରଣା ତଥା ଓଡ଼ିଆ ସାହିତ୍ୟର ଭବିଷ୍ୟତ ସମୁଜ୍ଜ୍ୱଳ ହେବାର ଗଭୀର ଆତ୍ମପତ୍ୟୟ ଓ ଆତ୍ମବିଶ୍ୱାସ ପୂର୍ଣ୍ଣ ଚିଠି ସେ ଗଙ୍ଗାଧରଙ୍କ ନିକଟକୁ ଲେଖୁଥିଲେ ।

ଏହିସବୁ ଚିଠିରୁ ପରସ୍ପର ସାରସ୍ୱତ ସମ୍ପର୍କର ଗଭୀରତା ଯେଭଳି ସୁସ୍ପଷ୍ଟ, ସୁଦୂର ପଶ୍ଚିମ ଓଡ଼ିଶା ସହିତ ଉତ୍ତର, ପର୍ବ ଓ ଦକ୍ଷିଣ ଓଡ଼ିଶାର ସାଂସ୍କୃତିକ ତଥା ଭାଷା ଭିତ୍ତିକ ସମ୍ପର୍କ ସେଭଳି ସମୁଜ୍ଜ୍ୱଳ । ଏପରିକି ବ୍ୟାସକବି ବାମଣ୍ଡା, ସମ୍ବଲପୁର, ପଦ୍ମପୁର ଗସ୍ତକାଳୀନ ଗଙ୍ଗାଧରଙ୍କୁ ସାକ୍ଷାତ କରିବାର ପରମ ଆନନ୍ଦ ଲାଭ କରୁଥିଲେ । ଗଙ୍ଗାଧରଙ୍କ ଶାନ୍ତ ସରଳ ସ୍ୱଭାବ ଓ ଅମାୟିକ ଆଚାର ଫକୀରମୋହନଙ୍କୁ ଯେତିକି ମୁଗ୍ଧ କରିଥିଲା, ତାଙ୍କ ଉଚ୍ଚାଙ୍ଗ ସାହିତ୍ୟାଦର୍ଶ ସେତିକି ତାଙ୍କୁ ବିମୋହିତ କରିଥିଲା ।

ଏହି ଅନାବିଳ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କରେ ବାନ୍ଧିହୋଇ ଗଙ୍ଗାଧର ଏକାଧିକବାର ବାଲେଶ୍ୱର ଆସି ଫକୀରମୋହନଙ୍କ ଘରେ ଆତିଥ୍ୟ ଗ୍ରହଣ କରିଥିଲେ । ଏହାଛଡ଼ା ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ର କଟକ ଏବଂ ଅନ୍ୟ ସ୍ଥାନରେ ଅନୁଷ୍ଠିତ ସାରସ୍ୱତ ସମାବେଶ ତଥା ସମ୍ମିଳନୀରେ ଗଙ୍ଗାଧର ଓ ଫକୀର ମୋହନ ପରସ୍ପର ମଧ୍ୟରେ ସାକ୍ଷାତ ହେଉଥିଲେ । ପୁନଶ୍ଚ ୧୯୧୬ ମସିହା ଡ଼ିସେମ୍ବର ମାସ ଶେଷ ସପ୍ତାହ ଶୀତ ଋତୁରେ ବାଲେଶ୍ୱରଠାରେ ଅନୁଷ୍ଠିତ 'ଉତ୍କଳ ସମ୍ମିଳନୀ'ର ଅଧିବେଶନରେ ଯୋଗ

ଦେବା ପାଇଁ ଆସି ଗଙ୍ଗାଧର ଫକୀରମୋହନଙ୍କ ଘରେ ବେଶ୍ କିଛି ଦିନ କଟାଇଥିଲେ । ସେତେବେଳେ ଫକୀରମୋହନଙ୍କ ବାସଭବନ ଓ ତାଙ୍କ ସାଧନା ପୀଠ-ଶାନ୍ତିକାନନ ତାଙ୍କୁ ଋଷି ଆଶ୍ରମତୁଲ୍ୟ ପ୍ରତୀୟମାନ ହୋଇଥିଲା । ଫକୀରମୋହନଙ୍କ ଉଆସ ଉଦ୍ୟାନ ମଧ୍ୟରେ ଥିବା ତାଙ୍କ ପତ୍ନୀ କୃଷ୍ଣକୁମାରୀଙ୍କ ସମାଧିଟି ଦେଖି ସେ ଖୁବ୍ ଭାବବିହ୍ୱଳିତ ହୋଇଥିଲେ ଏବଂ ବରପାଲି ସ୍ୱଗୃହକୁ ଫେରି 'ସ୍ୱର୍ଗୀୟା କୃଷ୍ଣକୁମାରୀ' ଶୀର୍ଷକ କବିତାଟି ମଧ୍ୟ ରଚନା କରିଥିଲେ । ବାଲେଶ୍ୱରରେ ଗଙ୍ଗାଧର ଓ ଫକୀରମୋହନ ସମଧର୍ମୀ କବି ହୃଦୟ ଦୁଇଟି ପରସ୍ପରକୁ ପାଇ ବେଶ୍ କିଛିଦିନ ଆନନ୍ଦରେ କଟାଇଥିଲେ । ଗଙ୍ଗାଧର ବରପାଲି ଫେରିବା ପରେ ଫକୀରମୋହନ ତାଙ୍କୁ ଏକ ବ୍ୟକ୍ତିଗତ ପତ୍ର ମଧ୍ୟ ଲେଖିଥିଲେ । ଏହି ପତ୍ରଟିର ସ୍ୱରୂପ ହେଉଛି / :

ପ୍ରିୟ ମେହେର ବାବୁ ୪/୧/୧୭

ବାଲେଶ୍ୱର

ମୁଁ ବୋଧକରେଁ ଆପଣ କୁଶଳରେ ଘରେ ପହୁଞ୍ଚିଛନ୍ତି । ମୋ ଘରେ ଖଣ୍ଡେ କମ୍ବଳ ପଡ଼ିଛି । ଅନୁମାନ କରେଁ ଆପଣଙ୍କର ହେବ, ଆପଣଙ୍କ ଶୋଇବା ପଲଙ୍କ ଉପରେ ପଡ଼ିଥିଲା, ଯଦି ଆପଙ୍କର ହୁଏ ଲେଖିବେ ସମ୍ବଲପୁରଗାମୀ କେହି ଲୋକ ହାତରେ ପଠାଇବି ନଚେତ ଶୀଘ୍ର ପ୍ରୟୋଜନ ଥିଲେ ଲେଖିବେ ଡ଼ାକରେ ପଠାଇବି ।

ଆପଣଙ୍କ

ଫକୀର ମୋହନ ସେନାପତି

ଏହି ଦୁର୍ଲଭ ପତ୍ର ଖଣ୍ଡିକରେ ଉଭୟଙ୍କ ମଧ୍ୟରେ ଥିବା ଅନାବିଳ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ଯେ କେତେ ନିବିଡ଼ ଓ ବନ୍ଧୁପ୍ରତି ବନ୍ଧୁର କର୍ତ୍ତବ୍ୟ ଜ୍ଞାନ ଯେ କେତେ ମାନବିକତା-ପୂର୍ଣ୍ଣ ସେ କଥାର ସ୍ପଷ୍ଟ ସୂଚନା ମିଳେ । ଏହି ସାସ୍ୱତ ବନ୍ଧୁତା ସେ କାଳର ସ୍ରଷ୍ଟାମାନଙ୍କ ମଧ୍ୟରେ କେତେ ଆତ୍ମୀୟତାପୂର୍ଣ୍ଣ ଥିଲା, ଏକଥା ଭାବିଲେ ଯେତିକି ଆଶ୍ଚର୍ଯ୍ୟ ଲାଗେ ଏବଂ ଆଜିର ସାରସ୍ୱତ ସ୍ରଷ୍ଟାମାନଙ୍କ ସମ୍ପର୍କ କଥା ଚିନ୍ତାକଲେ ହୃଦୟ ଦୁଃଖରେ ସେତିକି ଭାଙ୍ଗିପଡ଼େ । ଆଜି ସାହିତ୍ୟିକ ମାନଙ୍କର ପରସ୍ପରର ସମ୍ପର୍କ ଯୋଜନ ଯୋଜନ ବ୍ୟାପୀ ଦୂରତ୍ୱପୂର୍ଣ୍ଣ । ପରସ୍ପରକୁ ସମାଲୋଚନା, ଭର୍ତ୍ସନା, ବିଦ୍ରୁପ କରିବାରେ କୁଣ୍ଠା ନାହିଁ । ଏହାଦ୍ୱାରା ପରସ୍ପର ସମ୍ପର୍କ ତିକ୍ତ ହେବା ସହିତ ସାମାଜିକ ଜୀବନଧାରାରେ ଏକ କଳୁଷିତ ପରମ୍ପରା ସୃଷ୍ଟି ହେଉଛି ।

ଏହିଦୃଷ୍ଟିରୁ ଗଙ୍ଗାଧର ଓ ଫକୀରମୋହନଙ୍କ ମଧ୍ୟର ସମ୍ପର୍କ କେତେ ଉଦାର, ଉନ୍ନତ, ବନ୍ଧୁବତ୍ସଳ ଓ ଭାତୃତ୍ୱପୂର୍ଣ୍ଣ ଥିଲା, ତାହା ଗଙ୍ଗାଧରଙ୍କ ରଚିତ 'ଫକୀରମୋହନଙ୍କ ସ୍ୱର୍ଗାରୋହଣ' କବିତା ଏବଂ 'ପୁରାଣ କବି ଫକୀରମୋହନ' ରଚନାରୁ ସ୍ପଷ୍ଟ ହୁଏ । ତାଙ୍କରି ଭାଷାରେ କୁହାଯାଇପାରେ- "ହା ଫକୀର ମୋହନ ! ତୁମ୍ଭର ଜ୍ଞାନଜ୍ୟୋତିପୂର୍ଣ୍ଣ ପ୍ରଶାନ୍ତମୂର୍ତ୍ତି ଅବଲୋକନ କରି ମନପ୍ରାଣ ସ୍ନିଗ୍ଧ ଓ ପବିତ୍ର ହେଉଥିଲା, ତୁମ୍ଭର ସୁଧାମୟ ମଧୁରାଳାପ ଶୁଣି ପ୍ରାଣପୂର୍ଣ୍ଣ ହେଉଥିଲା । ତୁମ୍ଭେ ମହର୍ଷିରୂପେ ଉତ୍କଳରେ ପ୍ରତିଷ୍ଠିତ ଥାଇ ଜାତିର ମାନ ମହତ୍ତ୍ୱ ବୃଦ୍ଧି କରୁଥିଲ । ଆଜି ତୁମ୍ଭଙ୍କୁ ହରାଇ ଆଶା ଓ ନୈରାଶ୍ୟର ଅନିର୍ବାଚନୀୟ ବିଷାଦରେ ହୃଦୟ କମ୍ପିତ ହେଉଅଛି କି ମହତ୍ କ୍ଷତିହୋଇଅଛି ତାହା କଳ୍ପନା କରିବାକୁ ସୁଦ୍ଧା ଅସମର୍ଥ ହୋଇ ପ୍ରାଣ ଅବସନ୍ନ ହୋଇପଡୁଅଛି । (ଗଙ୍ଗାଧର- ଗ୍ରନ୍ଥାବଳୀ-ପରିମାର୍ଜିତ୨ୟ ସଂ- (୧୯୫୭) ପୃ-୪୩୩)

ଏହି ମହାନ୍ ସାରସ୍ୱତ ସ୍ରଷ୍ଟାଙ୍କ ଜୀବନାଦର୍ଶ ଆମ ପାଇଁ ପ୍ରେରଣାର ଉତ୍ସ ହେଉ, ଏହାହିଁ କାମନା ।



# ବ୍ୟାସକବି ଓ କାନ୍ତକବି

ରାଧାନାଥ ଓ ଫକୀରମୋହନଙ୍କ ଯୁଗର ଜଣେ ପ୍ରତିଭାବାନ୍ ସାରସ୍ୱତ ସ୍ରଷ୍ଟା ହେଉଛନ୍ତି କାନ୍ତକବି ଲକ୍ଷ୍ମୀକାନ୍ତ । ସମକାଳୀନ ପ୍ରାଚୀନ ଭାରତୀୟ ପୁରାଣ-ସାହିତ୍ୟ, ରାମାୟଣ ଓ ମହାଭାରତ, ପ୍ରତିବେଶୀ ବଙ୍ଗୀୟ କବି, ଔପନ୍ୟାସିକ-ବଙ୍କିମଚନ୍ଦ୍ର, ଶରତଚନ୍ଦ୍ର, ହେମଚନ୍ଦ୍ର, ନବୀନଚନ୍ଦ୍ର, ମାଇକେଲ ମଧୁସୂଦନ ଦତ୍ତ, କବିଗୁରୁ ରବୀନ୍ଦ୍ରନାଥ, ଆଧୁନିକ ଓଡ଼ିଆ ସାହିତ୍ୟର ରାଧାନାଥ, ଫକୀରମୋହନ, ମଧୁସୂଦନ ଓ ନନ୍ଦକିଶୋରଙ୍କ ରଚନା ତାଙ୍କ ସାହିତ୍ୟିକ ଜୀବନକୁ ପ୍ରାଥମିକ ଅବସ୍ଥାରେ ବହୁ ପ୍ରେରଣା ଯୋଗାଇଥିଲା । ବିଶେଷ କରି ପାଶ୍ଚାତ୍ୟ ଇଂରାଜୀ ସାହିତ୍ୟର Scot, Byran, Tennyson, Milton ପ୍ରଭୃତିଙ୍କ କାବ୍ୟାଦର୍ଶ ଉକ୍ତ ବଙ୍ଗୀୟ କବିମାନଙ୍କ ବିବିଧ ରଚନା ମାଧ୍ୟମ ଦେଇ ପରୋକ୍ଷ ଭାବରେ ଓଡ଼ିଆ କାବ୍ୟ, ନାଟକ, ଉପନ୍ୟାସ, ଗଳ୍ପ ଓ ଚରିତ ସାହିତ୍ୟରେ ପ୍ରତିଫଳିତ ହୋଇଥିଲା । ଫକୀରମୋହନ ଓ ନନ୍ଦକିଶୋରଙ୍କ ସାହିତ୍ୟରେ ମୌଳିକତା ଜାତୀୟ ସାହିତ୍ୟ ପ୍ରତି ବହୁ ସମ୍ଭାବନାର କ୍ଷେତ୍ର ପ୍ରସ୍ତୁତ କରିଥିଲା । ଏହି ପ୍ରସ୍ତୁତ କ୍ଷେତ୍ରରେ ରୋପିତ ବୀଜ ସଦୃଶ ଲକ୍ଷ୍ମୀକାନ୍ତ ନିଜ ସୃଷ୍ଟିରେ ହେଲେ ଆତ୍ମବିଭୋର । ବହୁ ବର୍ଣ୍ଣବିଭାର ଛଟା ଦ୍ୱାରା ଓଡ଼ିଆ ସାହିତ୍ୟକୁ ଦାନ କରିଗଲେ ତାଙ୍କର ଅମୃତମୟ ମୌଳିକ ରଚନାସମ୍ଭାର, ବହୁ ଖଣ୍ଡ-କବିତା, କାହାଣୀ କବିତା (Ballad Poem), ଗୀତିକବିତା, କୀର୍ତ୍ତନ, ପଦାବଳୀ, ନାଟକ, ଗୀତିନାଟ୍ୟ, ଶିଶୁପାଠ୍ୟ, କିଶୋର ଗୀତ, ପ୍ରବନ୍ଧ, ଆଲୋଚନା, କ୍ଷୁଦ୍ରଗଳ୍ପ, ଉପନ୍ୟାସ, ଲାଳିକା (Parody) ଆଦି ।

କାନ୍ତକବିଙ୍କ ପ୍ରତିଭା ଥିଲା ଅନନ୍ୟ । କିଶୋର ଅବସ୍ଥାରେ ଗାଁର ଲୀଳା, ଯାତ୍ରାଦି ଦେଖି ସେ ମୁହେଁ ମୁହେଁ କବିତା ରଚନା କରିପାରୁଥିଲେ । 'ପିଲାବେଳେ ଲୀଳା, ଯାତ୍ରା ଦେଖି ମୁହେଁ ମୁହେଁ କବିତା ରଚନା କରୁଥିଲି ।' (୧) କଲେଜ ଜୀବନରେ ତାଙ୍କର ଏହି ସୃଷ୍ଟି-ପ୍ରତିଭାର ପୂର୍ଣ୍ଣବିକାଶ ଘଟିଥିଲା । ସାରାଟି ଜୀବନ ଦୁର୍ବିସହ

ଦୁରାରୋଗ୍ୟ ବ୍ୟାଧି, ଯନ୍ତ୍ରଣା ଓ ପାରିବାରିକ ଅଶାନ୍ତି ମଧ୍ୟରେ ସନ୍ତୁଳିତ ହୋଇଥିଲେବି ତାଙ୍କ କବି ପ୍ରତିଭା କେବେ ମଳିନ ପଡ଼ିନଥିଲା । ବରଂ ଜୀବନର ଏହି ବିଡ଼ମ୍ବନା ଫକୀରମୋହନଙ୍କ ଭଳି ତାଙ୍କ କବି-ପ୍ରତିଭାକୁ ବହୁ ପ୍ରେରଣା ଯୋଗଇଥିଲା । ପ୍ରସଙ୍ଗୋଚିତ ତାଙ୍କ ନିଜସ୍ୱ ବକ୍ତବ୍ୟ ହେଉଛି- "ସେ ସବୁ ମକଦ୍ଦମା ଛିଣ୍ଡିବାକୁ ନାହିଁ ଏବଂ ଏ ଜୀବନରେ ଛିଣ୍ଡିବାର ସମ୍ଭାବନା ଦେଖାଯାଉ ନାହିଁ । ଏତେ ବିପଦ, ଦୁଶ୍ଚିନ୍ତା, ଅଭାବ ଭିତରେ ଲେଖିବା ଛାଡ଼ିନାହିଁ । କାରଣ ସେଥିରେ ମୁଁ କିଞ୍ଚିତ ସାନ୍ତ୍ୱନା ଓ ଶାନ୍ତିପାଏ । ଜଗଦୀଶ୍ୱରଙ୍କ ମୋର ହାହାମୟ ଜୀବନକୁ ଏତିକି କରୁଣା ଦାନ । ବର୍ତ୍ତମାନ ଜରା-ବ୍ୟାଧିଗ୍ରସ୍ତ ପଙ୍ଗୁ ହୋଇ ଶେଷଦିନକୁ ଅପେକ୍ଷା କରି ଦିନ କାଟୁଛି ଓ ସ୍ତ୍ରୀଙ୍କର ଅକାତର ସେବା ମୋତେ ଜୀଆଁଇ ରଖିଛି ।" (୨) ଏକନିଷ୍ଠ ସାଧନାହିଁ ତାଙ୍କୁ ନିଜସ୍ୱ ସୃଷ୍ଟି ମର୍ଯ୍ୟାଦାର ଗୌରବ ପ୍ରଦାନ କରିଥିଲା । ସଙ୍ଗୀତ ଥିଲା ତାଙ୍କ ଜୀବନର ଚିରସାଥୀ । ତାଙ୍କରି ଭାଷାରେ -

"ସଙ୍ଗୀତ ମୋ ଜୀବନ ସାଥୀ,
ମୋ ଅନ୍ଧ ନୟନ ଆଗେ
ନାନା ଛନ୍ଦେ, ନାନା ରାଗେ
ତାହାର ମୂରତି ଜାଗେ
ଦିବସ ରାତି ।" (୩)

ଲେଖନୀ ଥିଲା ତାଙ୍କ ଜୀବନର ସହଚର । 'କୃଷ୍ଣକୁମାରୀ'ଙ୍କ ଭଳି 'ଲବଙ୍ଗଲତା'ଙ୍କ ଏକନିଷ୍ଠ ସେବା ଓ ଶୁଶ୍ରୁଷା ତାଙ୍କୁ ସର୍ବଦା ମାନସିକ ଶାନ୍ତି ଓ ସାନ୍ତ୍ୱନା ପ୍ରଦାନ କରିଥିଲା ।

ଫକୀରମୋହନ ଥିଲେ କାନ୍ତକବିଙ୍କ ସାହିତ୍ୟିକ ଗୁରୁ । ସେଥିପାଇଁ କାନ୍ତକବି ଲେଖିଛନ୍ତି - "ସେହି ଫକୀରମୋହନ ହିଁ ମୋର ସାହିତିକ ଗୁରୁ ।" (୪) ବୟସରେ ଫକୀରମୋହନ କାନ୍ତକବିଙ୍କଠାରୁ ପଇଁଚାଳିଶ ବର୍ଷ (୧୮୪୩-୧୯୧୮) ବଡ଼ । କିନ୍ତୁ ମୃତ୍ୟୁ କ୍ଷେତ୍ରରେ ପରସ୍ପର ବ୍ୟବଧାନ ଥିଲା ମାତ୍ର ପଇଁତିରିଶ ବର୍ଷ (୧୮୮୮-୧୯୫୩) ଅର୍ଥାତ୍ ଫକୀରମୋହନ ୭୫ ବର୍ଷ ବୟସରେ ଏବଂ କାନ୍ତକବି ୬୫ ବର୍ଷ ବୟସରେ ମୃତ୍ୟୁବରଣ କରିଥିଲେ । ଫକୀରମୋହନଙ୍କ ଅପେକ୍ଷା ବୟସରେ ଦଶବର୍ଷ ପୂର୍ବରୁ କାନ୍ତକବିଙ୍କ ବିୟୋଗ ଘଟିଥିଲା ।

ଲକ୍ଷ୍ମୀକାନ୍ତଙ୍କ ପିତା ଚୌଧୁରୀ ଭାଗବତ ପ୍ରସାଦ ସାମନ୍ତରାୟ ମହାପାତ୍ର ଥିଲେ ଫକୀରମୋହନଙ୍କ ସମସାମୟିକ । ଭାଗବତବାବୁ କଟକ ପ୍ୟାରୀମୋହନ ଏକାଡ଼େମୀ ସ୍କୁଲର ଶିକ୍ଷକ ଥିବାବେଳେ ଫକୀରମୋହନଙ୍କ ସହିତ ତାଙ୍କର ପରିଚୟ । ଫକୀରମୋହନଙ୍କୁ ଓଡ଼ିଆ ସାହିତ୍ୟର ଜଣେ ଅମର ସ୍ରଷ୍ଟା ଭାବରେ ସେ ଖୁବ୍ ଭକ୍ତି ଓ ସମ୍ମାନ କରୁଥିଲେ । ପରେ ଭାଗବତବାବୁ ଆଇନ୍ ପରୀକ୍ଷାରେ ପାଶ୍ କରି ଶିକ୍ଷକତା ଛାଡ଼ି ବାଲେଶ୍ୱରରେ ଓକିଲାତି କରିଥିଲେ । ବାଲେଶ୍ୱରରେ କିଛିବର୍ଷ ଓକିଲାତି କଲାପରେ ଭଦ୍ରକରେ ଅଦାଲତ ଖୋଲିବାରୁ ନିଜର ପାରିବାରିକ ତଥା ସମ୍ପତ୍ତିବାଡ଼ିର ଦାୟିତ୍ୱ ବୁଝିବା । ସୁବିଧା ଦୃଷ୍ଟିରୁ ଭଦ୍ରକ କୋର୍ଟକୁ ଜୀବିକାର୍ଜନର କ୍ଷେତ୍ର ଭାବରେ ଗ୍ରହଣ କଲେ । ବାଲେଶ୍ୱରର ଓକିଲାତି ଜୀବନରେ ତାଙ୍କର ଫକୀରମୋହନ ତଥା ସହରର ବିଶିଷ୍ଟ ବ୍ୟକ୍ତିମାନଙ୍କ ସହିତ ସୁସମ୍ପର୍କ ପ୍ରତିଷ୍ଠା ହୋଇଥିଲା । ଭାଗବତବାବୁ ବାଲେଶ୍ୱରସ୍ଥ ସୁନହଟର ପ୍ରସିଦ୍ଧ ଜମିଦାର ସାମନ୍ତ ପରିବାରରୁ ବିବାହ କରିଥିଲେ । ତାଙ୍କ ପତ୍ନୀ ରାଧାମଣି ଦେବୀ ମଧ ଜଣେ ସାହିତ୍ୟପ୍ରେମୀ ଥିଲେ । ସାମନ୍ତ ପରିବାର ସହିତ ଫକୀରମୋହନଙ୍କ ଦୀର୍ଘଦିନର ସାରସ୍ୱତ ସମ୍ପର୍କ ଗଢ଼ି ଉଠିଥିଲା । ଫକୀରମୋହନ ସେନାପତି, ରାଧାନାଥ ରାୟ, ଭୋଳନାଥ ସାମନ୍ତରାୟ, ରାଜନାରାୟଣ ଦାସ (ଓରଫ -ରାଜାରାମ) ବୈକୁଣ୍ଠନାଥ ଦେ, ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକଙ୍କ ଏକତ୍ର ସମାବେଶରେ ରାଧାଚରଣ ଦାସ (ଫକବାବୁ) ଘର ସାହିତ୍ୟ ଚର୍ଚ୍ଚାର କେନ୍ଦ୍ରବିନ୍ଦୁ ହୋଇଉଠିଥିଲା ।

ଲକ୍ଷ୍ମୀକାନ୍ତ କୈଶୋର ଜୀବନ ସୁନହଟର ସେହି ପ୍ରସିଦ୍ଧ ସାମନ୍ତ ବଂଶ (ରାଜାରାମବାବୁ) ମାମୁଁଙ୍କ ଘରେ କଟିଥିଲା । ବାଲେଶ୍ୱର ଜିଲ୍ଲାସ୍କୁଲରୁ ଏଣ୍ଟ୍ରାନ୍ସ୍ ପାଶ୍ କରି କଟକ ରେଭେନ୍ସା କଲେଜରୁ ଆଇ.ଏ., ବି.ଏ (୧୯୧୩) ପାଶ କରିଥିଲେ । ବାଲେଶ୍ୱରରେ ଏହି ସମୟରେ ଭାଗବତବାବୁଙ୍କର ଫକୀରମୋହନଙ୍କ ସହିତ ବହୁବାର ସାକ୍ଷାତ୍ ଘଟିଥିଲା । କଥା ପ୍ରସଙ୍ଗରେ ଫକୀରମୋହନ ଭାଗବତବାବୁଙ୍କ ଠାରୁ ତାଙ୍କ ପୁତ୍ର ଲକ୍ଷ୍ମୀକାନ୍ତଙ୍କ ବିଷୟରେ ଶୁଣିଥିବେ ବା କେତେବେଳେ ପିତାପୁତ୍ରଙ୍କ ସହିତ ଫକୀରମୋହନଙ୍କର ସାକ୍ଷାତ ଓ ସୁଖାଳାପ ମଧ ହୋଇଥିବ ।

କାନ୍ତକବିଙ୍କ ବିବାହ ପ୍ରସଙ୍ଗ ତାଙ୍କ ଜୀବନରେ ଏକ ଅଭୁଲା ସ୍ମୃତି କହିଲେ ଚଳେ । ବିବାହ ବା ସାଂସାରିକ ବନ୍ଧନ ବୋଲି କ'ଣ ଜାଣିନଥିବା ଦୁଇଟି ସରଳ

ନିଷ୍ପାପ ଶିଶୁ-ହୃଦୟ ଯେତେବେଳେ ପରସ୍ପରକୁ ଭଲପାଇବା, ପ୍ରେମ କରିବା ବି ଶିଖିନଥିଲେ, ସେତେବେଳେ ଉଭୟର ମନୋରାଜ୍ୟରେ ବର-କନ୍ୟାର ବିଶ୍ୱାସ ଲଦି ଦେଇ ଆତ୍ମୀୟସ୍ୱଜନ ବୟସ୍କ ଅଜା-ଆଈ ଲେଖାଯୋଖାମାନେ କୌତୁହଳ ସୃଷ୍ଟି କରି ବେଶ୍ ମାନିସକ ଆନନ୍ଦ ପାଉଥିଲେ । ଲକ୍ଷ୍ମୀକାନ୍ତ ମାମୁଁଘରେ ଥିବାବେଳେ ଏଭଳି ଏକ ଘଟଣା ବର୍ଣ୍ଣନା କରି ଲେଖିଛନ୍ତି, "ଦିନକର କଥା, ମୋର ଖୁବ୍ ମନେ ଅଛି । କାଲିକାର କଥା ପରି ଜଳ ଜଳ ହୋଇ ଆଖି ଆଗରେ ଝଲସି ଯାଉଛି । ମୋର ପିତାଙ୍କର ମାମୁଁ, ମୋର ଅଜା, ମଜା ଦେଖିବା ପାଇଁ କନ୍ୟାପିତାଙ୍କୁ କହି ତାଙ୍କ କନ୍ୟାକୁ ଅଣାଇଲେ । ଏଣେ ମୋତେ ଡକାଇ ପଠାଇଲେ । ମୁଁ ଆସିଲାରୁ ଦୁହିଁଙ୍କୁ କୋଳରେ ବସାଇ ଲୁଗାକାନିରେ ହାତଗଣ୍ଠି ପକାଇ ଦେଇ ଖୁବ୍ ଆନନ୍ଦ ଉପଭୋଗ କଲେ । ମୁଁ ଲାଜରେ ଏଡ଼େ ବକଟେ ହୋଇଗଲି । ଅଜାଙ୍କର ମଉଜ କହିଲେ ନସରେ । ଶ୍ୱଶୁର ବି ହସୁଥାନ୍ତି । ଏହି ସାମାନ୍ୟ ଘଟଣାଟି ମୋ ସ୍ମୃତି ପଟରେ ଏପରି ଉଜ୍ଜ୍ୱଳ, ଏପରି ନବୀନ ହୋଇ ରହିଛି ଯେ, ଏ ପରିଣତ ବୟସରେ ମନେ ପଡ଼ିଲାକ୍ଷଣି ମନ ଏକ ଅଜଣା ଆନନ୍ଦ-ବିଷାଦରେ ଭରି ଉଠୁଛି ।" (୫) ସେତେବେଳେ ହୁଏତ ଲାଜେଇ ଯାଉଥିବା କଅଁଳ ହୃଦୟ ଦୁଇଟିର ଦୁଃଖ ବୁଝିବାକୁ କେହି ନଥିଲେ । କିଏ ଜାଣିଥିଲା, ପିଲାଦିନର ଏହି କୌତୂହଳ ଯୌବନରେ ବାସ୍ତବ ରୂପ ନେବ ଏବଂ ଲକ୍ଷ୍ମୀକାନ୍ତ ଓ ଲବଙ୍ଗଲତା ପରସ୍ପର ସୁଖ ଦୁଃଖର ଜୀବନ-ସାଥୀ ହେବେ । ଏଭଳି ଘଟଣା ଯେଭଳି ରୋମାଣ୍ଟିକ ସେଭଳି ନାଟକୀୟ ମଧ୍ୟ । ଫକୀରମୋହନ ଥିଲେ କାନ୍ତକବିଙ୍କ ବୈବାହିକ ସମ୍ବନ୍ଧରେ ମଧ୍ୟସ୍ଥ । ଫକୀରମୋହନଙ୍କ ମଧ୍ୟସ୍ଥତା ଅଭାବରୁ ହୁଏତ ଲକ୍ଷ୍ମୀକାନ୍ତଙ୍କ ଜୀବନଧାରାର ମାର୍ଗ ଭିନ୍ନ ମୋଡ଼ ନେଇଥାନ୍ତା । ଦୂରଦୃଷ୍ଟି ସମ୍ପନ୍ନ ଫକୀରମୋହନ୍ କବି ହୃଦୟରେ ଅନ୍ୟ ଜଣେ ନବୀନ ସ୍ରଷ୍ଟାଙ୍କ ହୃଦୟ ବ୍ୟଥାକୁ ଠିକ୍ ବୁଝିପାରିଥିଲେ ଏବଂ ପରସ୍ପର ମିଳନର ମାଙ୍ଗଳିକ ଦାୟିତ୍ୱ ନିଜେହିଁ ବହନ କରିଥିଲେ ।

ଲକ୍ଷ୍ମୀକାନ୍ତଙ୍କ ବୈବାହିକ ଜୀବନର ପ୍ରଥମ ପ୍ରସ୍ତାବକ ଥିଲେ ନିଜେ ତାଙ୍କର ପିତା ଭାଗବତବାବୁ । ବାଲେଶ୍ୱର ଟାଉନସ୍ଥ ସୁନହଟର ପ୍ରସିଦ୍ଧ ଜମିଦାର ସାମନ୍ତ ପରିବାରରେ ଲାଲମୋହନ ଦାସ ଥିଲେ ଭାଗବତବାବୁଙ୍କର ଅନ୍ତରଙ୍ଗ ବାଲ୍ୟବନ୍ଧୁ । ବାଲେଶ୍ୱରରେ ଥିବା ବେଳେ ଏବଂ ପରେ ବାଲେଶ୍ୱର ଆସିଲେ ଅଧିକାଂଶ ବେଳେ ଲାଲମୋହନଙ୍କବାବୁଙ୍କ ଘରେ ରହୁଥିଲେ । ଲାଲମୋହନବାବୁଙ୍କ ଟିକିଝିଅ ଲବଙ୍ଗଲତାକୁ ସେ ଖୁବ୍ ସ୍ନେହ କରୁଥିଲେ । ବାତ୍ସଲ୍ୟ ବନ୍ଧନରେ ଆବଦ୍ଧ ହୋଇ କୋଳାଗ୍ରତ କରି

ସେହ୍ନବଶରେ ଲବଙ୍ଗଲତାକୁ ନିଜର ପୁତ୍ରବଧୂ କରିବାର ମନ୍ତବ୍ୟ ଦେଇଥିଲେ । ସ୍ନେହବଶରେ ଭାଗବତବାବୁ ଲବଙ୍ଗଲତା ପାଇଁ ପ୍ରତିଥର କିଛିନା କିଛି ଖେଳନା, ଷ୍ଟେସ୍‌ନାରୀ ଜିନିଷ, ଖଜା ମିଠା ବି ନେଇ ଯାଉଥିଲେ । ବେଳେବେଳେ ଲକ୍ଷ୍ମୀକାନ୍ତ ମଧ୍ୟ ପିତାଙ୍କ ସହିତ ଲାଲମୋହନବାବୁଙ୍କ ଘରକୁ ଯାଉଥିଲେ । ଯୁବକ ଲକ୍ଷ୍ମୀକାନ୍ତଙ୍କ ଅପରିଣତବୟସ୍କା ଲବଙ୍ଗଲତାଙ୍କ ପ୍ରତି ସ୍ୱାଭାବିକ ଆକର୍ଷଣ ଭାବ ସୃଷ୍ଟି ହୋଇଥିଲା । କେତେ ଥର ଯୁବ-ଚପଳତାର ବଶବର୍ତ୍ତୀ ହୋଇ ଲବଙ୍ଗଲତାଙ୍କୁ ନିଜ କଣ୍ଠର ଗୀତ ଶୁଣାଉଥିଲେ ଏବଂ ନାଚୁଥିଲେ ମଧ୍ୟ । ବାଳିକା ଲବଙ୍ଗଲତା ଅତ୍ୟନ୍ତ ଆଗ୍ରହ ସହିତ ତାହା ଶୁଣୁଥିଲେ ଏବଂ ଦେଖୁଥିଲେ । କିନ୍ତୁ ଯେଉଁ ଦିନ ସେ କିଶୋରୀ ବୟସରେ ପାଦ ଦେଲେ, ଦେହ ଓ ମନର ପରିବର୍ତ୍ତନ ଅନୁଭବ କଲେ, ସେଦିନ ଲକ୍ଷ୍ମୀକାନ୍ତଙ୍କ ସହିତ ନିଜର ବିବାହ ପ୍ରସ୍ତାବ ଜାଣି ବେଶ୍ ସମ୍ଭ୍ରମ ଓ ସଙ୍କୋଚବୋଧ କରିଥିଲେ ।

ଇତ୍ୟବସରେ (କନ୍ୟା ବିବାହଯୋଗ୍ୟ ହେବାରୁ) ଲାଲମୋହନବାବୁ ଭାଗବତବାବୁଙ୍କୁ ବିବାହ କାର୍ଯ୍ୟ ସାରି ଦେବା ପାଇଁ ବାରମ୍ବାର ଅନୁରୋଧ କଲେ । କିନ୍ତୁ ପୁତ୍ର ଲକ୍ଷ୍ମୀକାନ୍ତର ଏହା ଦ୍ୱାରା ପାଠପଢ଼ାରେ ବ୍ୟାଘାତ ହେବ ଜାଣି ଭାଗବତବାବୁ ସମୟ ଗଡ଼ାଇଲେ । ଦୀର୍ଘ ପ୍ରତୀକ୍ଷା ଲାଲମୋହନବାବୁଙ୍କ ପକ୍ଷରେ ନିରାଶାସୂଚକ ଜାଣି କନ୍ୟାକୁ ଅନ୍ୟତ୍ର ବିବାହ ଦେବେ ବୋଲି ଭାଗବତବାବୁଙ୍କର ଅନୁମତି ଚାହିଁଲେ । ଏକଥା ଲକ୍ଷ୍ମୀକାନ୍ତଙ୍କୁ ଅଛପା ରହିଲା ନାହିଁ । ଏଥିରେ ଲକ୍ଷ୍ମୀକାନ୍ତଙ୍କ ହୃଦୟରେ ଦାରୁଣ ଆଘାତ ଜାତ ହେଲା । ହଠାତ୍ ଫକୀରମୋହନବାବୁଙ୍କୁ ସାକ୍ଷାତ୍ ଅବସରରେ ତାଙ୍କ କାନରେ ଏକଥା ପଡ଼ିଲା । ଲକ୍ଷ୍ମୀକାନ୍ତ ଓ ଲବଙ୍ଗଲତାଙ୍କ ବିବାହ ପ୍ରସ୍ତାବକୁ ଭାଗବତବାବୁ ଭାଙ୍ଗି ଦେଉଥିବାର ଜାଣି ସେ ଦୁଃଖ ପ୍ରକାଶ କଲେ ଏବଂ କୌତୂହଳପୂର୍ଣ୍ଣ ଭାବରେ ମୁରବିବ୍ବ ଛାହିର୍ କରି କହିଲେ – 'ଏଥର ଗଲେ ଭାଗବତର କାନମୋଡ଼ି ସବୁ ଠିକ୍ କରିଦେବି ।' (୬) ପରେ ଫକୀରମୋହନ ଭାଗବତବାବୁଙ୍କ ଉପରେ ଏପରି ଚାପ ପକାଇଥିଲେ ଯେ, ଯଥାଶୀଘ୍ର ଲବଙ୍ଗଲତା ସହିତ ପୁତ୍ରର ବିବାହ ନକରିବାର ଉପାୟ ନଥିଲା । ଫଳରେ ଲକ୍ଷ୍ମୀକାନ୍ତଙ୍କ ବେଦନା ବିକ୍ଷୁବ୍ଧ କବି ହୃଦୟଟି ଶାନ୍ତ ହେବା ସହିତ ତାଙ୍କ ସୃଷ୍ଟି ପ୍ରତିଭାର ଅସରନ୍ତି ସ୍ଫୁରଣ ଘଟିଥିଲା । ତାଙ୍କ ସାହିତ୍ୟ ଅନୁରାଗୀ ପାଠକ, ସମ୍ପାଦକ ତଥା ସାହିତ୍ୟିକମାନଙ୍କ ଠାରେ ସେ 'କାନ୍ତକବି' ନାମରେ ପରିଚିତ ହେଲେ ।

କଟକ କଲିଜିଏଟ୍ ସ୍କୁଲରେ ପଢ଼ିଲାବେଳକୁ ଲକ୍ଷ୍ମୀକାନ୍ତ ବାଲେଶ୍ୱରୁ ପ୍ରକାଶିତ 'ସମ୍ବାଦ ବାହିକା' ରେ ଲେଖାଲେଖି କରୁଥିଲେ । ରେଭେନ୍‌ସା କଲେଜରେ ପଢ଼ିଲା

ବେଳେ ବ୍ରଜସୁନ୍ଦର ଦାସ ଓ ଗୋପବନ୍ଧୁଙ୍କ ସହିତ ତାଙ୍କର ସୁସମ୍ପର୍କ ସୃଷ୍ଟି ହୋଇଥିଲା । ବ୍ରଜସୁନ୍ଦର ଦାସ ଥିଲେ 'ମୁକୁର' ପତ୍ରିକାର ସମ୍ପାଦକ । ସେ ଯେଉଁଭଳି ଛାତ୍ରବତ୍ସଳ ଥିଲେ ସେଭଳି ସ୍ନେହୀ ଥିଲେ । କୌଣସି କଲେଜ ପଢ଼ୁଆ ଯୁବକଠାରେ ସୃଷ୍ଟି-ପ୍ରତିଭା ଦେଖିଲେ ସର୍ବଦା ଉତ୍ସାହ ଓ ପ୍ରେରଣା ଦେଉଥିଲେ । ଲକ୍ଷ୍ମୀକାନ୍ତଙ୍କ କବି-ପ୍ରତିଭାରେ ଆକୃଷ୍ଟ ହୋଇ ତାଙ୍କୁ ଓଡ଼ିଶାର ବିଭିନ୍ନ ଐତିହାସିକ, ପୌରାଣିକ କିମ୍ବଦନ୍ତୀମୂଳକ କଥା ସତ୍ୟ ଓ ବାସ୍ତବଧର୍ମୀ ଲେଖା ଲେଖିବାକୁ ପ୍ରବର୍ତ୍ତାଇଲେ । ଫଳରେ ଲକ୍ଷ୍ମୀକାନ୍ତ ଭଦ୍ରାକାଳୀ (କିମ୍ବଦନ୍ତୀ), କ୍ଷୀରଚୋରା ଗୋପୀନାଥ (କିମ୍ବଦନ୍ତୀ), ଫାସିଦିଆ ବର (ପଦ୍ୟ କିମ୍ବଦନ୍ତୀ), 'ମାଆ ମାଆ ସେ ଦେଶକୁ ଯିବିନାହିଁ ମୁହିଁ " କବିତା ସେତେବେଳେ 'ମୁକୁର'କୁ ପଠାଇଥିଲେ ଏବଂ ତାହା ମଧ ପ୍ରକାଶ ପାଇଥିଲା । 'ଉତ୍କଳ ସାହିତ୍ୟ'ର ସମ୍ପାଦକ ବିଶ୍ୱନାଥ କର ମହାଶୟ ଉକ୍ତ ଲେଖାଗୁଡ଼ିକୁ ପାଠକରି ଖୁବ୍ ମୁଗ୍ଧ ହୋଇଥିଲେ ଏବଂ ଲକ୍ଷ୍ମୀକାନ୍ତଙ୍କୁ 'ଉତ୍କଳ ସାହିତ୍ୟ' ପତ୍ରିକାକୁ ଲେଖା ପଠାଇବା ପାଇଁ ବ୍ୟକ୍ତିଗତ ଅନୁରୋଧ କରିଥିଲେ । ତାଙ୍କ ଅନୁରୋଧ ରକ୍ଷା କରି ଲକ୍ଷ୍ମୀକାନ୍ତ 'ପ୍ରତିଦାନ' ଗଳ୍ପ ଓ ଅନ୍ୟାନ୍ୟ ଲେଖା 'ଉତ୍କଳ ସାହିତ୍ୟ' କୁ ପଠାଇଥିଲେ ଏବଂ ଏହା ମଧ ପ୍ରକାଶ ପାଇଥିଲା ।

ଫକୀରମୋହନ ସେତେବେଳେ ଓଡ଼ିଆ ପତ୍ର-ପତ୍ରିକାରେ ଲେଖାଲେଖି କରୁଥିବା ଯୁବକମାନଙ୍କ ପ୍ରତି ବେଶ୍ ସତର୍କ ଦୃଷ୍ଟି ରଖୁଥିଲେ । 'ଉତ୍କଳ ସାହିତ୍ୟ' କୁ ପ୍ରତିଦ୍ୱନ୍ଦ୍ୱିତା କଲାଭଳି ପତ୍ରିକାଟି ଥିଲା 'ମୁକୁର' । ଫକୀରମୋହନ ଉଭୟ ପତ୍ରିକାରେ ଲେଖନୀ ଚାଳନା କରୁଥିଲେ ଏବଂ ପତ୍ରିକାଗୁଡ଼ିକର ପାଠକ ମଧ ଥିଲେ । 'ମୁକୁର' ଓ 'ଉତ୍କଳ ସାହିତ୍ୟ' ରେ ପ୍ରକାଶିତ ଲେଖାଗୁଡ଼ିକ ପଢ଼ି ଫକୀରମୋହନ ବେଶ୍ ଆନନ୍ଦ ପାଇଥିଲେ ଏବଂ ଲକ୍ଷ୍ମୀକାନ୍ତଙ୍କ ରଚନା ପ୍ରତି ଗଭୀର ଆସ୍ଥା ପୋଷଣ କରିବା ସଙ୍ଗେସଙ୍ଗେ ତାଙ୍କ ପ୍ରତି ନିଜର ଅହେତୁକ ସ୍ନେହଭାବ ଅଜାଡ଼ି ଦେଉଥିଲେ ।

୧୯୧୦ ମସିହାରେ ଫକୀରମୋହନ କଟକ ଆସି ଶେଖରବଜାରସ୍ଥ 'ସାମନ୍ତ ନିବାସ'ରେ ଅବସ୍ଥାନ କରୁଥିବା ଖବର ଲକ୍ଷ୍ମୀକାନ୍ତ ପାଇଲେ । ସେତେବେଳେ ସେ କଲେଜ ହଷ୍ଟେଲରେ ରହୁଥାନ୍ତି । ଲବଙ୍ଗଲତାଙ୍କ ସହିତ ବିବାହ ନହେବାର ଏକ ଦାରୁଣ ଯନ୍ତ୍ରଣାବୋଧ ମଧ୍ୟରେ ତାଙ୍କର ସମୟ କଟୁଥିଲା । ଲକ୍ଷ୍ମୀକାନ୍ତଙ୍କ ଅନ୍ତରଙ୍ଗ ବନ୍ଧୁ ହରେକୃଷ୍ଣ ସାମନ୍ତ ଓ ଅନ୍ୟ କେତେଜଣଙ୍କୁ ନେଇ ଫକୀରମୋହନଙ୍କୁ ସାକ୍ଷାତ୍ କରିବାକୁ ବାହାରିଲେ । ଲକ୍ଷ୍ମୀକାନ୍ତ ଲେଖିଛନ୍ତି, "ତାଙ୍କ ସହିତ ଯେଉଁଦିନ ମୋର ପ୍ରଥମେ

ଦେଖାହୁଏ, ସେ ମୋତେ ଆନନ୍ଦରେ କୁଣ୍ଢାଇ ତାଙ୍କ ଧଳା ଦାଢ଼ିକୁ ମୋ ମୁହଁରେ ଘଷିବାକୁ ଲାଗିଲେ । ଫକୀରମୋହନଙ୍କ ଅଭ୍ୟାସ- ଏଇଟା ଥିଲା ତାଙ୍କର ସ୍ନେହର ଭାଷା । କହିଲେ -ବାପ,ଯାହା ମନକୁ ଆସୁଛି ତାହା ଲେଖି ଯା । ଆମ ସାହିତ୍ୟ ବଡ଼ ଦରିଦ୍ର; ଭଲ ମନ୍ଦ ପାଇଁ ଭାବ ନା- କାଳାଗ୍ନି ସବୁ ସୁନା-ଭେଲକୁ ପରୀକ୍ଷା କରି ଯିବ ଯେ ।" (୭) ଶେଷରେ ଆଶୀର୍ବାଦ କରି କହିଥିଲେ 'ଫୁଲର ଚନ୍ଦନ ପଡୁ ତୋ ଲେଖନୀରେ -ଆଶୀର୍ବାଦ କରୁଛି ।' (୮) 'ମୁକୁର' ଓ 'ଉତ୍କଳ ସାହିତ୍ୟ'ରେ ବାହାରିଥିବା ଲେଖା କଥା ଉଠାଇ ସେ ପୁଣି କହିଲେ - 'ତୁ ଯାହା ଲେଖିଛୁ, କଳ୍ପନା ଦ୍ୱାରା ହୋଇନପାରେ । ଯାହାର ପ୍ରାଣରେ ବାସ୍ତବ ଅନୁଭୂତି ଘଟିଛି ସେହି କେବଳ ଏଭଳି ଲେଖା ଲେଖିପାରେ । ଲକ୍ଷ୍ମୀକାନ୍ତ ଲଜ୍ଜାରେ ମୁଖ ଅବନତ କଲେ ।" (୯) ଫକୀରମୋହନଙ୍କ ସହିତ ସେଦିନର ସେହି କ୍ଷଣିକ ସାକ୍ଷାତ୍ ଓ ଆଶୀର୍ବାଦ ଲକ୍ଷ୍ମୀକାନ୍ତ କବି ଜୀବନ ଓ ଦାମ୍ପତ୍ୟ ଜୀବିନର ଏକ ମହାର୍ଘ ନିର୍ମାଲ୍ୟ ହୋଇଥିଲା, ଯାହାକୁ ପାଥେୟ କରି କବି ଜୀବନର ସମସ୍ତ ସମ୍ଭାର, ସଫଳତା ଓ ସ୍ୱପ୍ନବିଭୋରତା ସକାଳର କୁସୁମ ଭଳି ଶୁଭ୍ର ବାସ୍ତବତାରେ ଗଢ଼ି ଉଠିଥିଲା । ଫକୀରମୋହନଙ୍କ ଠାରୁ ପରମୁହୂର୍ତ୍ତରେ ବିଚ୍ଛେଦ ତାଙ୍କୁ ଅଶେଷ ଦୁଃଖ ଦେଇଥିଲା କିନ୍ତୁ ତାଙ୍କଠାରୁ ଆଶୀର୍ବାଦ ସ୍ୱରୂପ ସେ ଯାହା ପାଇଥିଲେ ତହିଁରେ ଜୀବନବ୍ୟାପୀ ଋଣୀ ହୋଇ ଯାଇଥିଲେ ।

<u>କବିତା ରଚନା -</u>

ଜୀବନଧର୍ମୀ କବିତା ରଚନା କ୍ଷେତ୍ରରେ ଫକୀରମୋହନ ଥିଲେ କାନ୍ତକବିଙ୍କ ଗୁରୁ । ତାଙ୍କର ସ୍ୱୀକାରୋକ୍ତି ହେଉଛି - "ସେହି ଫକୀରମୋହନ ହିଁ ହେଉଛନ୍ତି ମୋର ସାହିତ୍ୟ ଗୁରୁ । ତାଙ୍କର 'ଉପହାର' ପଢ଼ି ମୁଁ କେତେଗୁଡ଼ିଏ ପ୍ରେମ-କବିତା ମଧ ଲେଖିଥିଲି ।" (୧୦) ଫକୀରମୋହନଙ୍କ ବ୍ୟବହୃତ ଲୋକ କଥିତ ଭାଷା ପ୍ରତି କାନ୍ତକବିଙ୍କ ହୃଦୟର ଆସକ୍ତି ଭାବ ସୃଷ୍ଟି ହୋଇଥିଲା । କଥିତ ଭାଷାରେ ସେ ସର୍ବଦା କବିତାଦି ରଚନା କରିବାର ପ୍ରୟାସ କରିଥିଲେ । ବହୁ ଖଣ୍ଡ କବିତା, ଗୀତି-କବିତା, ପଦାବଳୀ, ଲାଳିକା, କାନ୍ଦଣା (କିଶୋରୀ ଗୀତା) ଯାତ୍ରା ଓ ପାଲାବାଲାଙ୍କ ପାଇଁ କଥିତ ଭାଷାରେ ବହୁ ଗୀତାଦି ସେ ରଚନା କରିଥିଲେ । ଯେଉଁମାନେ ଲୋକକଥିତ ଭାଷା ପ୍ରାଣସ୍ପର୍ଶୀ ନୁହେଁ ବୋଲି ମନ୍ତବ୍ୟ ଦେଉଥିଲେ, ତାଙ୍କୁ ସେ ବିରୋଧ କରୁଥିଲେ । ଫକୀରମୋହନଙ୍କ ରଚିତ 'ମୋ ମାଥା ଗଲେ କାହିଁ ?' କବିତାଟି ପ୍ରକାଶ ପାଇବା

ପରେ ତାହା କାନ୍ତକବିଙ୍କ ହୃଦୟକୁ ଗଭୀର ଭାବରେ ସ୍ପର୍ଶ କରିଥିଲା । ଉକ୍ତ କବିତାର ଅଂଶ ବିଶେଷ ହେଉଛି -

"ବାବା, ମୋ ମାଆ ଗଲେ କାହିଁ ?
କୋଳେ ରଖିଣ ମୋ ମଥା
କହିବେ କାହାଣୀ କଥା
ମୋ ମୁଣ୍ଡ ମୁହଁରେ ହାତ ବୁଲାଇ ବୁଲାଇ
ବାବା, ମୋ ମାଆ ଗଲେ କାହିଁ ।" (୧୧)

ଉକ୍ତ କବିତା ବିଷୟରେ କାନ୍ତକବିଙ୍କ ସ୍ୱୀକାରୋକ୍ତି ହେଉଛି "ଏହାଠୁଁ ବଳି କେଉଁ ଭାଷା ପ୍ରାଣସ୍ପର୍ଶୀ ? ଜୀବନରେ ଏଇ କବିତାଟି ମୁଁ ବହୁବାର ପଢ଼ିଛି । ପଢ଼ୁ ପଢ଼ୁ ତନ୍ମୟ ହୋଇଯାଇଛି ।" (୧୨)

ଗଳ୍ପ ସାହିତ୍ୟ -

ଓଡ଼ିଆ ଗଳ୍ପ ରଚନା କ୍ଷେତ୍ରରେ ଫକୀରମୋହନ ହିଁ ଥିଲେ ଲକ୍ଷ୍ମୀକାନ୍ତଙ୍କ ଆଦର୍ଶ ତଥା ପ୍ରେରଣାଦାତା । ତାଙ୍କ ନିଜସ୍ୱ ସ୍ୱୀକାରୋକ୍ତି ହେଉଛି "ବାସ୍ତବିକ୍ ଫକୀରମୋହନ ହିଁ ଆମର ପ୍ରଥମ ଓ ଶ୍ରେଷ୍ଠ ଗଳ୍ପ ଲେଖକ । ତାଙ୍କ ପରେ ମୁଁ ତାଙ୍କରି ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ଗଳ୍ପ ଲେଖିବାରେ ବ୍ରତୀ ହୋଇଛି । ଫକୀରମୋହନଙ୍କ ଗଳ୍ପ 'ରେବତୀ'ସେତେବେଳେ ପ୍ରକାଶିତ ହୋଇଥାଏ । ଦାମ ଅଣେ । ତାକୁ ପଢ଼ି ମୋ ଆଖି କେତେଥର ଲୁହରେ ଭରି ଯାଇଛି । ସେଇ ଗଳ୍ପଟି ପଢ଼ି ମୁଁ ଲେଖିବାକୁ ପ୍ରେରଣା ଲାଭ କରିଥିଲି । ଫକୀରମୋହନଙ୍କ ପ୍ରେରଣା, ଉତ୍ସାହ ଓ ଆଶୀର୍ବାଦ ମୁଁ ଜୀବନରେ ଭୁଲିନାହିଁ ବା ଭୁଲି ପାରିବି ନାହିଁ ।" (୧୩)

ବାସ୍ତବିକ୍ ଫକୀରମୋହନଙ୍କ ପରେ ଓଡ଼ିଆ ଗଳ୍ପସାହିତ୍ୟର ଧାରାକୁ ପ୍ରବାହମୁଖର କରିଥିଲେ ଲକ୍ଷ୍ମୀକାନ୍ତ । ଫକୀରମୋହନ ସମୁଦାୟ କୋଡ଼ିଏଟି ଗଳ୍ପ ରଚନା କରିଥିଲାବେଳେ ଲକ୍ଷ୍ମୀକାନ୍ତଙ୍କ ଗଳ୍ପ ସଂଖ୍ୟା ଥିଲା ପ୍ରାୟ ସତଷଠିଟି । ଫକୀରମୋହନଙ୍କ ପରବର୍ତ୍ତୀ ବହୁଲେଖକ ଗଳ୍ପ ରଚନା କ୍ଷେତ୍ରରେ ମନୋନିବେଶ କରିଥିଲେବି ଲକ୍ଷ୍ମୀକାନ୍ତଙ୍କ ଗଳ୍ପଗୁଡ଼ିକ ପରି ତାହା ମଣିଷ ଜୀବନ ଓ ମନୋରାଜ୍ୟର ଗହନ ରହସ୍ୟକୁ ଉନ୍‌ମୋଚନ କରିବା ଦିଗରେ ସେତେ ସଫଳ ହୋଇ ପାରିନଥିଲା ।

ବରଂ ଲକ୍ଷ୍ମୀକାନ୍ତଙ୍କ ଗଳ୍ପ ସମ୍ଭାର ଆଧୁନିକ ସଭ୍ୟତା ପ୍ରଭାବିତ ସମାଜିକ ଜୀବନର ବିବର୍ତ୍ତନ ତଥା ମାନବିକ ମୂଲ୍ୟବୋଧକୁ ଆବିଷ୍କାର କରିଥିଲା ।

ଫକୀରମୋହନ ସ୍ୱାଭାବିକ ଈଶ୍ୱର ବିଶ୍ୱାସୀ ଓ ଭାଗ୍ୟବାଦୀ ଥିଲେ । ତେଣୁ ତାଙ୍କ ଗଳ୍ପର ସମୁଦାୟ ଚରିତ୍ରଗୁଡ଼ିକ ସମସ୍ତ ଦୁଃଖ ନିର୍ଯ୍ୟାତନାକୁ ସ୍ୱୀୟ ଭାଗ୍ୟଫଳ ଭାବି ନୀରବରେ ସହ୍ୟ କରିଯାଇଛନ୍ତି । କେତେବେଳେ ନିର୍ଯାତନାକାରୀ ଗୋଷ୍ଠୀ ପ୍ରତି ସ୍ୱର ଉତ୍ତୋଳନ କରିନାହାନ୍ତି । ମାତ୍ର କାନ୍ତକବି ଫକୀରମୋହନଙ୍କ ଭଳି ଅନେକ ଗଳ୍ପରେ ଭାଗ୍ୟବଦୀ ହୋଇଥିଲେବି ପରିବର୍ତ୍ତିତ ସମୟର ପ୍ରାଣସ୍ପନ୍ଦନକୁ ସ୍ୱାଗତ କରିଛନ୍ତି । ରେବତୀ ଗଳ୍ପର 'ରେବତୀ' ଡାକମୁନସୀ ଗଳ୍ପର 'ହରି ସିଂହ' ବଗଲାବଗୁଲୀ ଗଳ୍ପର 'ସପ୍ନା ଓ ଚେମୀ' ପ୍ରଭୃତି ଚରିତ୍ରଗୁଡ଼ିକ ନିଃସହାୟ ଭାବରେ ଭାଗ୍ୟକୁ ଆଦରି ଅଶ୍ରୁ ଝରାଇଥିଲା ବେଳେ, ଲକ୍ଷ୍ମୀକାନ୍ତଙ୍କ 'ଅଧିକାର' ଗଳ୍ପ ପରିବର୍ତ୍ତିତ ସମୟର ଧାରାକୁ ସ୍ୱାଗତ କରିଛି । ଗଳ୍ପର ଚରିତ୍ର 'ହରିଆ' ଗୋପନ ପ୍ରଣୟରେ ଲିପ୍ତଥିବା ଜମିଦାର ପୁତ୍ର 'ବିଚ୍ଛନ୍ଦ' ଓ ନିଜ ସ୍ତ୍ରୀର ମୁଣ୍ଡକୁ କଟୁରୀ ଦ୍ୱାରା ବିଗଡ଼ କରିଦେଇଛି, ସତେ ଯେପରି ଭଗବତୀ ପାଣିଗ୍ରାହୀ 'ଶିକାର'ଗଳ୍ପର 'ଘିନୁଆ' ପରି ।

ଫକୀରମୋହନଙ୍କ 'ଗଳ୍ପସ୍ୱଳ୍ପ'ର ୨୦ଟି ଗଳ୍ପ ମଧ୍ୟରୁ 'ବାଲେଶ୍ୱର ରାହାଜାନୀ' 'ବାଲେଶ୍ୱରୀ ପଙ୍ଗାଲୁଣ', 'କାଳିକା ପ୍ରସାଦ ଗୋରାପ' ଓ 'କମଳା ପ୍ରସାଦ ଗୋରାପ' ଗଳ୍ପ ଗୁଡ଼ିକୁ ଗଳ୍ପ ନକହି ବରଂ ତତ୍‌କାଳୀନ ସମାଜର ବାସ୍ତବ ଘଟଣା ଆଧାରିତ ବିବରଣୀ କହିବା ଅଧିକ ସମୀଚୀନ । ସେହିଭଳି କାନ୍ତକବିଙ୍କ ଗଳ୍ପସମ୍ଭାର ମଧ୍ୟରୁ ଭଦ୍ରକକାଳୀ, ଦପ୍‌ପାଗଣ୍ଡ, କ୍ଷୀରଚୋରା ଗୋପୀନାଥ, ନାରୀର ବୁଦ୍ଧି, ଖୁଦାକା କୁଦରତ୍ ଆଦି କିମ୍ବଦନ୍ତୀମୂଳକ ରଚନାଗୁଡ଼ିକୁ ଗଳ୍ପ କହିବା ପରିବର୍ତ୍ତେ ସ୍ଥାନର ଅଧ୍ୟାତ୍ମିକ ମହାତ୍ମ୍ୟ ତଥା ଈଶ୍ୱର ବିଶ୍ୱାସର ନିଦର୍ଶନ ବୋଲି କୁହାଯାଇପାରେ ।

ଫକୀରମୋହନ ଥିଲେ ସତ୍ୟ, ବାସ୍ତବତାର ପୂଜାରୀ । ତେଣୁ ତାଙ୍କ ଗଳ୍ପଗୁଡ଼ିକର ପ୍ରତ୍ୟେକଟି ଚରିତ୍ର ଓ ଘଟଣାବଳୀ ହେଉଛି ତତ୍‌କାଳୀନ ସମାଜର ବାସ୍ତବ ରୂପଚିତ୍ର । ଲକ୍ଷ୍ମୀକାନ୍ତ ତାଙ୍କ ଗଳ୍ପସାହିତ୍ୟରେ ବାସ୍ତବତାକୁ ରୂପ ଦେବା ସଙ୍ଗେ ସଙ୍ଗେ ନୈତିକତା, ଆଦର୍ଶବୋଧକୁ ପ୍ରତିଷ୍ଠା କରିଛନ୍ତି । ତାହାର ଦୃଷ୍ଟାନ୍ତ ହେଉଛି ତାଙ୍କର ଦପ୍‌ପାଗଣ୍ଡ, ମଙ୍ଗଳିଆ, ଫୂର୍ତ୍ତିବାଜ, ପ୍ରାୟଶ୍ଚିତ୍ତ ଦଶାର ଫେର୍, ପ୍ରଜାପତିଙ୍କ ପରିହାସ, ଭଲଲୋକ ଆଦି ଗଳ୍ପଗୁଡ଼ିକ । ଫକୀରମୋହନଙ୍କ ଅତ୍ୟାଚାରୀ ଚରିତ୍ରର

ପରିଣତି ଅନୁତାପ ଜନିତ ମୃତ୍ୟୁପରି ଲକ୍ଷ୍ମୀକାନ୍ତଙ୍କ 'ପ୍ରାୟଶ୍ଚିତ'ର ଶ୍ରୀହରି ପଟ୍ଟନାୟକ, 'ଭଲଲୋକ' ର ବିଦ୍ୟାଧର ଶେଷରେ ଅନୁତାପ ଅନଳରେ ଦଗ୍ଧୀଭୂତ ହୋଇ ଅସହାୟ ଭାବରେ ମୃତ୍ୟୁବରଣ କରିଛନ୍ତି । ନୀତିବୋଧକୁ ପ୍ରତିଷ୍ଠା କରିବାକୁ ଯାଇ ଶିକ୍ଷାୟତନ ମଧ୍ୟରେ ସ୍ୱାଧୀନ ଯୌନାଭିସାର, ଚାରିତ୍ରିକ ସ୍ଖଳନ, ନୈତିକ ଅଧଃପତନକୁ ଆପେକ୍ଷ କରିଛନ୍ତି । ତାଙ୍କର ଏକା କଥା, କୀର୍ତ୍ତିଚନ୍ଦ୍ର, ନିଆଁହୁଳା, ବ୍ୟାକଗ୍ରାଉଣ୍ଡ, ବଚନରକ୍ଷା, ଗ୍ରହଙ୍କ ପ୍ରତିଶୋଧ, ପ୍ରେମର ମୁକୁଟ, ଭୁଲ, ବୁଢ଼ାବର, ମିଠାକଡ଼ା, ଶେଷରକ୍ଷା, ପରିଣାମ, ପ୍ରଜାପତିଙ୍କ ଅଭିଶାପ, ଭଲଲୋକ, ନବିସ ପ୍ରେମିକ, ମାନସୀ, ମର୍ତ୍ତ୍ୟ ତାଳବେତାଳ ଇତ୍ୟାଦି ଗଳ୍ପ ମାଧ୍ୟମରେ ।

ଫକୀରମୋହନ ତାଙ୍କ ଗଳ୍ପ ଉପନ୍ୟାସରେ ତତ୍‌କାଳୀନ ସାମାଜିକ ଜୀବନର ଅଧୋଗତିକୁ ଯେପରି ବାସ୍ତବ ରୂପ ଦେଇଛନ୍ତି, କାନ୍ତକବି ମଧ୍ୟ ଅନୁରୂପ ଭାବରେ ଚିତ୍ରଣ କରିଛନ୍ତି । ଫକୀରମୋହନ ସମାଜର ପ୍ରତ୍ୟେକ ସ୍ତରରୁ ଯେପରି ଚରିତ୍ର ଓ ପରିବେଷଣକୁ ଗ୍ରହଣ କରିଛନ୍ତି, ଲକ୍ଷ୍ମୀକାନ୍ତ ମଧ୍ୟ ତଦନୁରୂପ ସମାଜର ଧନୀ, ଦରିଦ୍ର, ଶ୍ରମଜୀବୀ, ଗାଁ ଟାଉଟର, ଓକିଲ, ପୋଲିସ୍, ସି.ଆଇ.ଡି., ବୀମା ଏଜେଣ୍ଟ, ଛାତ୍ର-ଛାତ୍ରୀ ସିନେମା ଅଭିନେତ୍ରୀ, ପ୍ରେମିକ-ପ୍ରେମିକା ପ୍ରଭୃତି ବହୁ ଚରିତ୍ର ତଥା ପଲ୍ଲୀଜୀବନର ନାରୀ ସମାଜ, ବିବାହ ଭୋଜି, ଗାଁ ଟାଉଟରୀ, ପ୍ରେମ-ପ୍ରଣୟ ଓ ଶିକ୍ଷାୟତନର ପରିବେଶକୁ ଚିତ୍ରଣ କରିବା ଦିଗରେ ଫକୀରମୋହନଙ୍କ ଭଳି ସଫଳ ହୋଇପାରିଛନ୍ତି ।

ଫକୀରମୋହନଙ୍କ ଭଳି କାନ୍ତକବି ହାସ୍ୟରସ ମାଧ୍ୟମରେ ସାମାଜିକ ଜୀବନର ବିବିଧ ସମସ୍ୟାବଳୀକୁ ସୁନ୍ଦରଭାବରେ ପ୍ରକାଶ କରିଛନ୍ତି । ଏଥିପାଇଁ ଫକୀରମୋହନଙ୍କ ଭଳି ସମାଜର ବିଭିନ୍ନ ଚରିତ୍ର ଏବଂ ଚରିତ୍ର ମୁଖୋପଯୋଗୀ ଭାଷା ମଧ୍ୟ ବ୍ୟବହାର କରିଛନ୍ତି । ଫକୀରମୋହନଙ୍କ 'ପେଟେଣ୍ଟ ମେଡ଼ିସିନ୍' ଗଳ୍ପରେ ମକରା, 'ଗାରୁଡ଼ିମନ୍ତ୍ର'ରେ ପଦୀ ଓ ଶୁକ୍ରୀ, 'ପାଠୋଇ ବହୂ' ଗଳ୍ପରେ ସରସ୍ୱତୀ ଓ ଅର୍ଜୁନା, 'ସଭ୍ୟ ଜମିଦାର'ରେ ବହୂ, 'ଧୂଳିଆବାବା'ରେ ଧୂଳିଆବାବାଙ୍କ ଚେଲା ଚରିତ୍ରଗୁଡ଼ିକ ଗଳ୍ପରେ ହାସ୍ୟରସ ପରିବେଷଣ କରିବା ଦିଗରେ ସଫଳ ହୋଇପାରିଛନ୍ତି । ସେହିଭଳି ଲକ୍ଷ୍ମୀକାନ୍ତଙ୍କ ଶିକାରୀ, ଉଦ୍ଭଟ ପ୍ରେମ, ଫୂର୍ତ୍ତିବାଜ, ମଙ୍ଗଳିଆ, ପ୍ଲଟ, ଓଲଟା ବୁଝିଲେ ରାମ, ପହିଲୁ କେସ୍, ଏକକଥା, କୀର୍ତ୍ତିଚନ୍ଦ୍ର, ଶୁଚିବାଇ, ଓଲଡ଼ଫୁଲ, ବଚନରକ୍ଷା, ଭାଗ୍ୟଦୋଷ, ବନ୍ଧୁର ସାହାଯ୍ୟ, ଭୂତ, ବୁଢ଼ାବର, ମୋ ଭାଗ୍ୟ, ପରୀକ୍ଷା ଫଳ,

ଶିକ୍ଷା ନବିସ ଗଳ୍ପାଦି ହାସ୍ୟରସାତ୍ମକ ଉପାଦାନରେ ଭରପୂର । ଉକ୍ତ ଗଳ୍ପଗୁଡ଼ିକ ଯେ କେବଳ ବିମଳ ହାସ୍ୟରସରେ ପରିପୂର୍ଣ୍ଣ ତା'ନୁହେଁ, ଫକୀରମୋହନଙ୍କ ଭଳି ସ୍ଥଳବିଶେଷରେ ଶାଣିତ ବ୍ୟଙ୍ଗ, ବିଦ୍ରୂପ, ଚଟୁଳ, ଲଘୁହାସ୍ୟ ଓ କୌତୁକାଦିରେ ପୂର୍ଣ୍ଣ । ଏହାଦ୍ୱାରା ସେ ସାମାଜିକ ଜୀବନର ଦୋଷ-ଦୁର୍ବଳତା, ଅନ୍ୟାୟ ଅନାଚାରକୁ ଲୋକଲୋଚନରେ ପ୍ରକାଶ କରିବା ସଙ୍ଗେ ସଙ୍ଗେ ପାଠକ ମନରେ ମାନସିକ ଶାନ୍ତି, ଆନନ୍ଦ ଭରି ଦେଇ ନିଜର ସଂସ୍କାରମୁଖୀ ମନୋଭାବର ପରିଚୟ ଦେଇଛନ୍ତି । ଲକ୍ଷ୍ମୀକାନ୍ତଙ୍କ ଭାଷାରେ - 'ହାସ୍ୟରସର ଉଦ୍ଦେଶ୍ୟ ଯେ କେବଳ ଲୋକଙ୍କୁ ଆମୋଦ ଦେଇ ମନକୁ ହାଲ୍‌କା କରିବା ତାହା ନୁହେଁ । ବ୍ୟଙ୍ଗ, ବିଦ୍ରୂପ, ଶ୍ଳେଷ ଦ୍ୱାରା ଅନେକ ବ୍ୟକ୍ତିଗତ ଓ ସାମୂହିକ ଦୋଷ, ତ୍ରୁଟି ଅନାଚାରକୁ ବିତାଡ଼ିତ କରାଯାଇପାରେ ।"(୧୪)

ଲକ୍ଷ୍ମୀକାନ୍ତ ଥିଲେ ଫକୀରମୋହନଙ୍କ ଭଳି ଜଣେ ଦକ୍ଷ ହାସ୍ୟ-ସାହିତ୍ୟ ସ୍ରଷ୍ଟା, ଅଧିକନ୍ତୁ ଜଣେ ସୁଦକ୍ଷ ହାସ୍ୟରସିକ ଅଭିନେତା ମଧ୍ୟ । ନିଜେ ନହସି ଅନ୍ୟକୁ ହସାଇ ପାରିବାର ଦକ୍ଷତା ତାଙ୍କର ଥିଲା । ହାସ୍ୟ ପରିବେଷଣ ପାଇଁ ଚରିତ୍ର ଉପଯୋଗୀ ଭାଷା, ସଂଳାପ, ପରିବେଶ ସୃଷ୍ଟି କରିବାର ଅଙ୍ଗେଲିଭା ଅନୁଭୂତି ଓ ଅଭିଜ୍ଞତା ଥିଲା ତାଙ୍କର, ଯାହା ତାଙ୍କ ଗଳ୍ପଗୁଡ଼ିକରେ ପ୍ରତ୍ୟକ୍ଷ ଭାବରେ ପ୍ରତିଫଳିତ । ଉଭୟଙ୍କ ଗଳ୍ପରେ ଥିବା ବ୍ୟଙ୍ଗାତ୍ମକ ହାସ୍ୟରସର ଦୃଷ୍ଟାନ୍ତ ନିମ୍ନରେ ସୂଚିତ ହେଲା ।

ଫକୀରମୋହନଙ୍କ ଚରନାରେ -

(୧) "ଏତେ ଦୁଃଖ, ଏତେ ଦୁର୍ଦ୍ଦଶା, ସବୁର ମୂଳକାରଣ ରେବତୀ, ରେବତୀ ପାଠ ପଢ଼ିବାରୁ ପୁଅ ମଲା, ବହୂ ମଲା, ହଳିଆ ଛାଡ଼ିଗଲେ, ବଳଦ ବିକାଗଲା, ଜମିଦାର ଘର ଗାଈ ବାନ୍ଧି ନେଇଗଲେ । ରେବତୀ କୁଲକ୍ଷଣୀ, ସେ କୁଢ଼ଙ୍ଗୀ, ସେ ଲକ୍ଷ୍ମୀଛାଡ଼ି ।" (ରେବତୀ ଫକୀରମୋହନ ଗ୍ରନ୍ଥାବଳୀ, ୧୯୫୬-ପୃ-୫୦୬)

(୨) "ଚନ୍ଦ୍ରମଣିବାବୁ - ମୁଁ ତିନିଦିନ ଲାଗି ଯାଇ ଭୁବନେଶ୍ୱର, ଖଣ୍ଡଗିରି, ଉଦୟଗିରି ରେ ଯେତେ ମହାଦେବ ଅଛନ୍ତି ସମସ୍ତଙ୍କୁ ଦର୍ଶନ କରିବି, କିଛି ଟଙ୍କା ଘେନି ଯାଇଥିବି, ବ୍ରାହ୍ମଣମାନଙ୍କୁ ଦେଲେ ସେମାନେ ଶହେ ମାଠିଆ- ନା, ନା, ହଜାରେ କୁମ୍ଭ- ନାହିଁ ନାହିଁ ସହସ୍ର କୁମ୍ଭ ପୂଜା କରିବେ । ସୁବ ଦୋଷ, ସର୍ବଗ୍ରହ ଅବଳ ଏକାବେଳେକେ କଟିଯିବ, ଦେହ ଖୁବ୍ ଆଚ୍ଛା ହୋଇଯିବ, ଆଉ ନିଶା ଫିସା ଖାଇବାକୁ ମନ ଚଳିବ ନାହିଁ ।"

(ପେଟେଣ୍ଟ ମେଡ଼ିସିନ୍ - ଫ . ଗ୍ରନ୍ଥବଳୀ , ୧୯୫୬ - ପୃ ୫୧୦/୫୧୧)

ଲକ୍ଷ୍ମୀକାନ୍ତଙ୍କ ରଚନାରେ -

(୧) 'ବହିଧୂଆ, ବେଟୁଲ ଧୂଆ, ଚେୟାର ଧୂଆ- ଏସବୁ କେଉଁଠି ଦେଖିଚ ? ବିଛଣାପତ୍ର କଥା ଛାଡ଼, ଏପରିକି କାନ୍ଥର ଛବି କେଲେଣ୍ଡର ପର୍ଯ୍ୟନ୍ତେ ଧୂଆ ; ନୋହିଲେ ଗଙ୍ଗାଜଳ ବା ଗୋବର ପାଣି ପକା ।"

(ଶୁଚିବାଇ-କାନ୍ତ ସାହିତ୍ୟମାଳା - ୨ୟ ଖଣ୍ଡ ପୃ-୮୯୩)

(୨) 'ମନ ହେଲା, କବିଭାଷାରେ ନାଟକୀୟ ସ୍ୱରରେ କହନ୍ତି - ମିନାକ୍ଷୀ, ପ୍ରାଣର ମୀନାକ୍ଷୀ, ହୃଦୟର ମୀନାକ୍ଷୀ ମୋର, ତୋ ପାଇଁ ମୁଁ କ'ଣ ଦେଇ ନପାରେଁ ! ତନୁ ,ମନ, ଜୀବନ ସବୁ ବିସର୍ଜନ କରିପାରରେଁ, ମୁଁ ତୋର କ୍ଷଣିକ ତୃପ୍ତି ପାଇଁ । କହ ପ୍ରିୟେ, ଥରେ ଆଜ୍ଞାକର କଣ ଆଣିବି ! ସ୍ୱର୍ଗରୁ ଅମୃତ, ପାତାଳରୁ ହଳାହଳ, ଦଲ୍ଲୀରୁ ଲଡୁ, ଯାହା କହିବୁ ତାହା -"

(ଚେନାବୁର ପ୍ରେମ- କାନ୍ତ ସାହିତ୍ୟମାଳା -୨ୟ ଖଣ୍ଡ ପୃ - ୧୦୩୨)

ଉକ୍ତ ବ୍ୟଙ୍ଗୋକ୍ତିରେ ଉଭୟ ଫକୀରମୋହନ ଓ ଲକ୍ଷ୍ମୀକାନ୍ତ କୁସଂସ୍କାରପୂର୍ଣ୍ଣ ସମାଜିକ ଜୀବନର ବାସ୍ତବ ଚିତ୍ର ଦେବା ସହିତ ସଭ୍ୟ ସମାଜକୁ ସଂସ୍କାରମୁକ୍ତ କରିବାର ପ୍ରୟାସ କରିଛନ୍ତି । ଗଳ୍ପଗୁଡ଼ିକର ବିଭିନ୍ନ ଚରିତ୍ରର ମୁହଁରେ ଗାଳିକ ଏହି ଧରଣର ଉକ୍ତି ସବୁ ଭରି ଦେଇ ସ୍ୱତଃ ହାସ୍ୟରସ ସୃଷ୍ଟି କରିଛନ୍ତି । ଏହିଭଳି ଉଭୟଙ୍କ ଗଳ୍ପ-ଗୁଡ଼ିକରୁ ଏକାଧିକ ଦୃଷ୍ଟାନ୍ତ ଦିଆଯାଇ ପାରେ । ଲକ୍ଷ୍ମୀକାନ୍ତଙ୍କ 'ଇଦ୍ ର ଚାନ୍ଦ' ଓ 'ବୁଢ଼ାଶଙ୍ଖାରୀ' ଗଳ୍ପ ଦୁଇଟିରେ ହାସ୍ୟରସ ସୃଷ୍ଟି ହୋଇଥିଲେ ବି ଏ ସବୁର ଅନ୍ତଃସ୍ୱର ମୁଖ୍ୟତଃ କରୁଣରସାତ୍ମକ ।

କାନ୍ତକବିଙ୍କ ଗଳ୍ପଗୁଡ଼ିକ ଫକୀରମୋହନଙ୍କ ଭଳି ବର୍ଣ୍ଣନାଧର୍ମୀ । ଫକୀରମୋହନ ଅନେକ ସମୟରେ ବର୍ଣ୍ଣିତ ବିଷୟ ମଧ୍ୟରେ ନିଜେ ଯେପରି ଆତ୍ମପ୍ରକାଶ କରନ୍ତି ଏବଂ ପାଠକମାନଙ୍କୁ ବାରମ୍ବାର ସମ୍ବୋଧନ କରି ଗଳ୍ପାଂଶ କହନ୍ତି, କାନ୍ତକବି ମଧ ତଦ୍ରୂପ ପାଠକମାନଙ୍କୁ ସମ୍ବୋଧନ କରିଛନ୍ତି ତାଙ୍କ ଗଳ୍ପାଂଶ ମଧ୍ୟରେ । ଉଦାହରଣ ସ୍ୱରୂପ (୧) "ପାଠକ ମହୋଦୟ, ଏବେ ଥରେ ଶ୍ରୀହରି ପଟ୍ଟନାୟକ ଓ ତାଙ୍କ ସ୍ତ୍ରୀ କି ଅବସ୍ଥାରେ ଅଛନ୍ତି ଦେଖିବା ଚାଲନ୍ତୁ, ପଟ୍ଟନାୟକଙ୍କର ବୟସ ହୋଇ ଯାଇଥିଲା ।"

(ପ୍ରାୟଶ୍ଚିତ୍ତ -କାନ୍ତ ସାହିତ୍ୟ ମାଳା-୨ୟ ଖଣ୍ଡ ପୃ: ୯୧୦)

(୨) ବରଙ୍କର ସେତେବେଳେ ଅବସ୍ଥା କିପରି ପାଠକେ ଥରେ ଅନୁମାନ କରନ୍ତୁ । ଉଠି ଦୌଡ଼ିବାକୁ ଆରମ୍ଭ କଲା ମାତ୍ରେ ହଠାତ୍ ପଦସ୍ଖଳିତ ହୋଇ ଭୂଇଁରେ କଚାଡ଼ି ପଡ଼ିଲେ । "ପାଠକ, ଗୋଟିଏ କଥା କହିବି । ମାଳିର ବାହାଘର ସମ୍ବନ୍ଧ ଆଗରୁ ଅନ୍ୟ ସ୍ଥାନରେ ସ୍ଥିର ହୋଇଥିଲା । ଗାଁ ଯାକ ସମସ୍ତେ ଓ ଘରଲୋକେ ଜାଣନ୍ତି, ସେହିଠାରୁ ବର ଆସିବ । ବିଦ୍ୟାଧର ଯେ ଇଆଡ଼େ ଏତେକଥା କରିସାରିଲେଣି ସେକଥା କାହାରିକୁ ଗୋଚର ନାହିଁ ।"

(ଭଲଲୋକ -କାନ୍ତ ସାହିତ୍ୟମାଳା -୨ ଖଣ୍ଡ, ପୃ : ୧୦୦୩/୧୦୦୨)

ଏହାଛଡ଼ା ଫକୀରମୋହନ ପଲ୍ଲୀଜୀବନରୁ ଯେଉଁସବୁ ଭାଷାକୁ ସାଉଁଟି ତାଙ୍କ ଗଳ୍ପର ଚରିତ୍ର ମୁଖରେ ପ୍ରକାଶ କରିଛନ୍ତି, କାନ୍ତକବି ମଧ ଅନୁରୂପ ଭାବରେ ସେହି ଭାଷା, ଶବ୍ଦର ପ୍ରୟୋଗ କରିଛନ୍ତି । ଯଥା, ଫକୀରମୋହନ 'ରେବତୀ' ଗଳ୍ପରେ ବୁଢ଼ୀ ମୁହଁରେ କହିଛନ୍ତି - "ଲୋ ରେବତୀ, ଲୋ ରେବି, ଲୋ ନିଆଁ, ଲୋ ଚୂଲି ।" (ଫକୀରମୋହନ ଗ୍ରନ୍ଥାବଳୀ ୧୯୫୬-ରେବତୀ ପୃ: ୫୦୯) ପରି କାନ୍ତକବି ତାଙ୍କ ଗଳ୍ପର ସାଆନ୍ତାଣୀଙ୍କ ମୁଖରେ କହିଛନ୍ତି, "ଲୋ ସାରି, ଲୋ ସାରି, ଆଲୋ ସାରି ।" (ପ୍ରାୟଶ୍ଚିତ୍ତ-କାନ୍ତ ସାହିତ୍ୟମାଳା-୨ୟଖଣ୍ଡ ପୃ: ୯୦୭) ଇତ୍ୟାଦି ଭାଷା ଫକୀରମୋହନୀ ଶୈଳୀର ପରିଚୟ ଦିଏ । ଫକୀରମୋହନଙ୍କ ପରି କାନ୍ତକବିଙ୍କ ରଚନାଶୈଳୀ ଖୁବ ସରଳ, ଅର୍ଥପୂର୍ଣ୍ଣ ତଥା ଇଙ୍ଗିତଧର୍ମୀ । ସାମାଜିକ ତଥା ବ୍ୟକ୍ତି ଜୀବନର ବିବିଧ ସମସ୍ୟା ଓ ଘଟଣାବଳୀକୁ ସୁନ୍ଦର ଭାବରେ ରୂପାୟିତ କରିଛନ୍ତି ତଥା ନିଜର ବିଚାର ବିଶ୍ଳେଷଣ ମାର୍ଜିତ ସତ୍ୟ ବାସ୍ତବତା ଦୃଷ୍ଟିରୁ ସେ ଦୁଷ୍ଟ ଓ ଦୋଷୀକୁ ଦଣ୍ଡ ମଧ ଦେଇଛନ୍ତି । ଫକୀରମୋହନଙ୍କ ଭଳି କାନ୍ତକବିଙ୍କ ଗଳ୍ପସୃଷ୍ଟିରେ ସାମାଜିକ ଜୀବନର ବିବିଧ ଘଟଣା ଓ ସମସ୍ୟାବଳୀର ସଫଳ ରୂପାୟନ ତଥା ବିପୁଳ ଅନୁଭୂତି ଓ ଅଭିଜ୍ଞତାର ପ୍ରମାଣ ମିଳେ ।

ଉପନ୍ୟାସ ସାହିତ୍ୟ :

କାନ୍ତକବିଙ୍କ କରୁଣ ଜୀବନର ଏକ ସ୍ମରଣୀୟ ଅଧ୍ୟାୟ ହେଉଛି ତାଙ୍କ ଔପନ୍ୟାସିକ ପ୍ରତିଭାର ସଫଳ ସୃଷ୍ଟି 'କଣାମାମୁଁ' । ସ୍ୱୀୟ ସମ୍ପାଦିତ 'ଡଗର' ପତ୍ରିକାରେ ଏହା ଆତ୍ମପ୍ରକାଶ କରେ ୧୯୪୭ ମସିହା ସେପ୍ଟେମ୍ବର ୮ତାରିଖରେ, ୧୧ଶ ବର୍ଷ/୬ଷ୍ଠ ସଖ୍ୟାଠାରୁ ଧାରାବାହିକ ଭାବରେ ଏବଂ ହଠାତ୍ ବନ୍ଦ ହୋଇଯାଏ ୧୧ଶ ବର୍ଷ/୩୦ ସଂଖ୍ୟାରେ । ଦୁରାରୋଗ୍ୟ ବ୍ୟାଧି, ପାରିବାରିକ ଜଞ୍ଜାଳ ତାଙ୍କ ମାନସିକ

ସ୍ଥିତାବସ୍ଥାକୁ ଅଶାନ୍ତିମୟ କରି ଦେଇଥିଲା । ଫଳରେ ତାଙ୍କର ଅମର ଲେଖନୀ ପ୍ରସୁତ 'କଣାମାମୁଁ'ର ଲେଖାକାର୍ଯ୍ୟ ଆପେ ଆପେ ବନ୍ଦ ହୋଇଗଲା । ଲେଖକ ୧୯୫୧ ମସିହାରେ କଟକରେ ଅବସ୍ଥାନ କାଳରେ ହିତାକାଂକ୍ଷୀ ବନ୍ଧୁମାନଙ୍କ ଦ୍ୱାରା ଅନୁରୁଦ୍ଧ ହୋଇ ପୁନଶ୍ଚ ଲେଖନୀ ଧରିଲେ । ବହୁ ପ୍ରତୀକ୍ଷାପରେ 'କଣାମାମୁଁ' ପୁନଶ୍ଚ 'ଡଗର'ରେ ଆତ୍ମପ୍ରକାଶ କଲା ୧୯୫୨ ମସିହା ୧୬ଶ ବର୍ଷ/୬ଷ୍ଠ ସଂଖ୍ୟାରୁ । ଧାରାବାହିକ ଭାବରେ ପ୍ରକାଶ ପାଇ ଅସଂପୂର୍ଣ୍ଣ ଭାବରେ ଏହାର ପରିସମାପ୍ତି ଘଟିଲା ।

ଏହି ଉପନ୍ୟାସ ରଚନା କ୍ଷେତ୍ରରେ କାନ୍ତକବି ଫକୀରମୋହନଙ୍କ ଅନୁପ୍ରେରଣା ଲାଭ କରିଥିଲେ । କିନ୍ତୁ ଫକୀରମୋହନଙ୍କ ଠାରୁ କାନ୍ତକବିଙ୍କର ବିଶେଷତ୍ୱ, ତଥା ବୈଶିଷ୍ଟ୍ୟ ହେଉଛି,ଫକୀରମୋହନ ତାଙ୍କ ଉପନ୍ୟାସରେ ଯେଉଁ ସମୟ ପର୍ଯ୍ୟନ୍ତ (ଜଳଭାଗରେ ପର୍ତ୍ତୁଗୀଜ, ଓଲନ୍ଦାଜ, ଦିନାମାର ଜଳଦସ୍ୟୁମାନଙ୍କର ଆକ୍ରମଣ ଫଳରେ ଓଡ଼ିଆ ସାଧବପୁଅର ଅନ୍ତର୍ବାଣିଜ୍ୟ ଓ ବହିର୍ବାଣିଜ୍ୟର ପଥରୁଦ୍ଧ) ଓଡ଼ିଶାର ଚିତ୍ରଅଙ୍କନ କରିଛନ୍ତି କାନ୍ତକବି ଠିକ୍ ତାଙ୍କ ପରବର୍ତ୍ତୀ ସମୟଠାରୁ (ଇଂରେଜମାନଙ୍କ ଆଗମନ) ଚିତ୍ରଣ ଆରମ୍ଭ କରିଛନ୍ତି । ଫଳରେ ଫକୀରମୋହନଙ୍କ ସମୟର ସାମାଜିକ ଜୀବନର ଗତାନୁଗତିକ ଚିତ୍ରଠାରୁ ଆଧୁନିକ ପ୍ରଗତିଶୀଳ ଚେତନାର ପ୍ରତୀକ ସାଂସ୍କୃତିକ ସଂଘର୍ଷ, ସାମାଜିକ ବିପ୍ଳବ, ରାଜନୀତିକ ଆନ୍ଦୋଳନର ବାସ୍ତବ ଚିତ୍ରାଦି କାନ୍ତକବି ଅଙ୍କନ କରିଛନ୍ତି । ଅତଏବ୍ ଫକୀରମୋହନଙ୍କ ଯୁଗରୁଚିଠାରୁ କାନ୍ତକବିଙ୍କ ଯୁଗରୁଚି ଯଥେଷ୍ଟ ଆଧୁନିକତର ।

କିନ୍ତୁ ଅନେକ କ୍ଷେତ୍ରରେ ଫକୀରମୋହନ ଓ କାନ୍ତକବିଙ୍କ ବର୍ଣ୍ଣନା ଓ ରଚନାର ପରିସର ସମାନ୍ତରାଳ । ଫକୀରମୋହନ ତତ୍‌କାଳୀନ ସମାଜର ଇଂରେଜ ଶାସନ, ଗ୍ରାମ୍ୟ ଜୀବନରେ ମହାଜନ, ଟାଉଟର, ଖୋସାମଦକାରୀ, ଦାରୋଗା, ମୁନ୍‌ସୀ, ସିପାହୀ, ଚଉକିଦାରମାନଙ୍କର କାର୍ଯ୍ୟକଳାପ, ସାମାଜିକ ଜୀବନରେ ପ୍ରଚଳିତ ବିବିଧ କୁସଂସ୍କାର, ବ୍ରାହ୍ମଣ କ୍ଷତ୍ରିୟ ଓ କରଣମାନଙ୍କ ଆଧିପତ୍ୟ ବିସ୍ତାର, ନାରୀଶିକ୍ଷା ତଥା ଓଡ଼ିଶାର ଭାଷା ସାହିତ୍ୟ ଓ ସାଂସ୍କୃତିକ ଜୀବନର ବିପର୍ଯ୍ୟୟର ବିବିଧ ସମସ୍ୟାମୂଳକ ବାସ୍ତବଚିତ୍ର ଦେଇଥିବା ସ୍ଥଳେ ଅନୁରୂପ ଭାବରେ କାନ୍ତକବି ମଧ ଚିତ୍ରଣ କରିଛନ୍ତି । ଏ କ୍ଷେତ୍ରରେ କାନ୍ତକବି ଫକୀରମୋହନଙ୍କ ପଦାଙ୍କ ଅନୁସରଣ କରିଛନ୍ତି, ଏଥିରେ ସନ୍ଦେହ ନାହିଁ ।

ଫକୀରମୋହନଙ୍କ ମାମୁଁ (୧୯୧୩) ଏବଂ କାନ୍ତକବିଙ୍କ 'କଣାମାମୁଁ' ୧୯୪୭ ଦୁଇଟି ସମ୍ପୂର୍ଣ୍ଣ ଭିନ୍ନ ଧରଣର ଉପନ୍ୟାସ । 'ମାମୁଁ' ଉପନ୍ୟାସର ଘଟଣାକାଳ ଆରମ୍ଭ ହୁଏ ୧୯୪୮ ଠାରୁ । ବ୍ରିଟିଶ୍ ରାଜତ୍ୱକାଳୀନ ସାମାଜିକ ଜୀବନର ବାସ୍ତବଚିତ୍ର ଏଥିରେ ଅଙ୍କିତ । ମାତ୍ର କାନ୍ତକବିଙ୍କ 'କଣାମାମୁଁ' ଉପନ୍ୟାସର ପରିକଳ୍ପନା ୧୯୪୭ ପୂର୍ବରୁ । ଅର୍ଥାତ୍ ଉପନ୍ୟାସ ଦୁଇଟିର ପରିକଳ୍ପନାଗତ ସମୟର ବ୍ୟବଧାନ ଥିଲା ପ୍ରାୟ ୩୪ବର୍ଷ । ଗୋଟିଏରେ ପରାଧୀନ ଭାରତବର୍ଷରେ ଓଡ଼ିଶାର ଚିତ୍ର ଅନ୍ୟଟିରେ ସ୍ୱାଧୀନତା ପ୍ରାକ୍କାଳର ଚିତ୍ର । ଏପରିକି ଏହାର ପରିସମାପ୍ତି ସ୍ୱାଧୀନତା ପରେ ମଧ୍ୟ ଲିଖିତ ।

ଅତଏବ ସ୍ୱାଧୀନତା ଆନ୍ଦୋଳନର ଶୁଭସୂଚନା 'କଣାମାମୁଁ' ଉପନ୍ୟାସରୁ ମିଳେ । ଆଧୁନିକ ଶିକ୍ଷା ପ୍ରସାର ଫଳରେ ଯୁବପ୍ରାଣରେ ନବୀନ ଉତ୍ସାହ ଓ ଉନ୍ମାଦନା ପ୍ରକାଶ ପାଇଛି । ଏହି ଶିକ୍ଷିତ ଯୁବଗୋଷ୍ଠୀ ସମାଜର ପ୍ରାଚୀନ କୁସଂସ୍କାରପନ୍ଥୀ ସ୍ୱାର୍ଥାନ୍ୱେଷୀମାନଙ୍କ ବିରୁଦ୍ଧାଚରଣ କରିଛନ୍ତି । ଏଥିପାଇଁ ଯଦିଚ ସେମାନେ ସ୍ୱାଗତଯୋଗ୍ୟ ତଥାପି ମୁଷ୍ଟିମେୟଙ୍କ ଇର୍ଷାର ପାତ୍ର । କେତେକ ସ୍ଥଳରେ ଠିକ୍ ନେତୃତ୍ୱର ଅଭାବରୁ ସେମାନେ ଭୁଲ ପଥରେ ପରିଚାଳିତ ହୋଇଛନ୍ତି । ଗ୍ରାମ୍ୟ ଜୀବନରେ କୁସ୍ତି, କସରତ, ସଂଗୀତ, ଥିଏଟର ଆଦି ଦଳ ଗଢ଼ି ଉଠିବା ଫଳରେ ସାମାଜିକ ନୂତନ ଜୀବନଧାରାର ସୂଚନା ଦିଏ । ଉପନ୍ୟାସର ଅଭିନବ ଚରିତ୍ର 'କଣାମାମୁଁ' ନିଜେ ଶିଷ୍ୟମାନଙ୍କୁ କିପରି ବିଦେଶୀ ଶାସନ କବଳରୁ ଦେଶକୁ ସ୍ୱାଧୀନ କରିବାକୁ ହେବ ସେ ବିଷୟରେ ବୁଝାଇଛନ୍ତି । ଉପନ୍ୟାସରେ 'କଣାମାମୁଁ'ଙ୍କ ଭଳି ଏକ ବହୁମୁଖୀ ବ୍ୟକ୍ତିତ୍ୱ ସମ୍ପନ୍ନ ଚରିତ୍ରଟିକୁ ଛାଡ଼ିଦେଲେ ହଗୁରା ଜେନା ମଧ୍ୟ ଏକ ପ୍ରତିନିଧିଶ୍ରେଣୀୟ ଚରିତ୍ର । ଏହି ହଗୁରା ଜେନା ଫକୀରମୋହନଙ୍କ 'ଛଅମାଣ ଆଠଗୁଣ୍ଠ'ର ଗୋବରା ଜେନା ଭଳି, ଯାହା ମାଧ୍ୟମରେ ଲକ୍ଷ୍ମୀକାନ୍ତ ଚଉକିଦାର ଜୀବନର ବହୁ ରୂପ ପ୍ରକାଶ କରିଛନ୍ତି ।

ଫକୀରମୋହନପ୍ରେମୀ ଲକ୍ଷ୍ମୀକାନ୍ତ "ଫକୀରମୋହନ ସାହିତ୍ୟ ପରିଷଦ" ଦ୍ୱାରା ଆମନ୍ତ୍ରିତ ହୋଇ ମୃତ୍ୟୁର ଠିକ୍ ଦୁଇବର୍ଷ ପୂର୍ବରୁ ତା ୨୪-୨-୫୧ ମସିହାରେ ଫକୀରମୋହନ କଲେଜ ହଲରେ ଅନୁଷ୍ଠିତ ଏକ ବାସନ୍ତୀ ସନ୍ଧ୍ୟାର ଶାନ୍ତ-କାନ୍ତ ସାରସ୍ୱତ ପରିବେଶରେ ସମ୍ବର୍ଦ୍ଧିତ ହୋଇଥିଲେ । ସେହି ବର୍ଷ ପୁନଶ୍ଚ ନିଜର ଶାରୀରିକ ଅସୁସ୍ଥତା ସତ୍ତ୍ୱେ ସେ "ଫକୀରମୋହନ ସାହିତ୍ୟ ପରିଷଦ" ଆନୁକୂଲ୍ୟରେ ଅନୁଷ୍ଠିତ

ସାହିତ୍ୟ ସଂଗୀତ ସମ୍ମିଳନୀରେ ମଧ୍ୟ ଯୋଗ ଦେଇଥିଲେ । ଜଣେ ସଂଗୀତପ୍ରେମୀ, ଭାଷାପ୍ରେମୀ, ଦେଶପ୍ରେମୀ ସର୍ବୋପରି ଜଣେ ସାହିତ୍ୟପ୍ରେମୀ ଉତ୍କଳ ଦାୟାଦ ହିସାବରେ ଫକୀରମୋହନଙ୍କ ଆଦର୍ଶକୁ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ପାଳନ କରିଥିଲେ । ତେଣୁ ଓଡ଼ିଆ ସାହିତ୍ୟର କଥାସମ୍ରାଟ ଫକୀରମୋହନଙ୍କ ବିୟୋଗରେ ଦାରୁଣ ଆଘାତ ପାଇ ଶଯ୍ୟାଶାୟୀ ଥାଇବି ସ୍ୱୀୟ ହୃଦୟର ଶ୍ରଦ୍ଧାଞ୍ଜଳିପୂର୍ଣ୍ଣ ନୈବେଦ୍ୟ 'ମହାପ୍ରୟାଣ' କବିତାରେ ଅର୍ପଣ କରିଥିଲେ :-

"ଜଳର ବୁଦ୍‌ବୁଦ୍ ପ୍ରାୟ ମାନବ ଜୀବନ
ଅନ୍ଧକାରେ ବୁଜିଦେଲ ଆଖି,
ସେ ଜୀବନେ ସଂପାଦିଲ କୋଟି ଜୀବନର-
କର୍ମ, ତୁମ୍ଭେ ସାଧକ ଏକାକୀ ।

+ + +

ସେ ଶାନ୍ତିକାନନେ ବସି ନନ୍ଦନ ଆମୋଦେ
ଗାଉଥିବ ଅମର ବଂଶରୀ,
ସଂସାରର କୃତଘ୍ନତା ପାପ ତାପ ଭୁଲି
ରୋଗ, ଶୋକ ଯନ୍ତ୍ରଣା ପାସୋରି ।" (୧୫)

ଓଡ଼ିଆ ଗଳ୍ପ ଓ ଉପନ୍ୟାସର ବିକାଶଧାରରେ ବ୍ୟାସକବିଙ୍କ ପରେ କାନ୍ତକବି ହେଉଛନ୍ତି ଜଣେ ଉପଯୁକ୍ତ ଉତ୍ତରସୂରୀ । ସେ ଫକୀରମୋହନଙ୍କ ପ୍ରଭାବରୁ ସମ୍ପୂର୍ଣ୍ଣ ମୁକ୍ତ ନଥିଲେ କି ସମ୍ପୂର୍ଣ୍ଣ ଆଧୁନିକତାକୁ ମଧ୍ୟ ଗ୍ରହଣ କରିପାରି ନଥିଲେ । ଉଭୟେ ସମକାଳୀନ ଯୁଗଚେତନାକୁ ଯଥାର୍ଥ ଭାବରେ ରୂପ ଦେବାରେ ସଫଳ ହୋଇ ପାରିଥିଲେ । ସେଥିପାଇଁ କାନ୍ତକବି ବାସ୍ତବିକ ଫକୀରମୋହନଙ୍କ ଉପଯୁକ୍ତ ଉତ୍ତର-ଦାୟାଦ ଏବଂ ଓଡ଼ିଆ ଗଳ୍ପ, ଉପନ୍ୟାସ ସାହିତ୍ୟର ଆଦି ଯୁଗ ଓ ଆଧୁନିକ ଯୁଗର ସଂଯୋଗ ସେତୁ । ଲକ୍ଷ୍ମୀକାନ୍ତଙ୍କ ଉପନ୍ୟାସ ଅସଂପୂର୍ଣ୍ଣ ହୋଇପାରେ ମାତ୍ର, ସଫଳତାରେ ଏହା ପୂର୍ଣ୍ଣାଙ୍ଗ । ଅତଏବ୍ ଜାତୀୟକବି ବୀରକିଶୋର ଦାସଙ୍କ ଭାଷାରେ "ଝଡ଼ର ପକ୍ଷୀ ସେ ଝଡ଼ ଦେଖି ହସେ/ ସାରା ଦୁନିଆକୁ ପାରେ ହସାଇ ।" (୧୬) ଯେକି ଚିରଦିନ ଓଡ଼ିଆ ସାହିତ୍ୟ ଦରବାରରେ ଏକ ସାର୍ଥକ ସ୍ରଷ୍ଟାର ଆସନ ପାଇବେ, ଏଥିରେ ସନ୍ଦେହ ନାହିଁ ।

# ପାଦଟୀକା

୧. କାନ୍ତକବି ଲକ୍ଷ୍ମୀକାନ୍ତ ସ୍ମରଣିକା (୧୯୭୧) ତାଳପଦା କାନ୍ତ ସାହିତ୍ୟ ସଂସଦ- "ଦଗ୍ଧ କାଞ୍ଚନର କାନ୍ତି" (ପଟ୍ଟନାୟକଙ୍କ ସାକ୍ଷାତ୍‌କାର) ପୃ :-୧୭
୨. କାନ୍ତକବି ଲକ୍ଷ୍ମୀକାନ୍ତ ସ୍ମରଣିକା "ଦଗ୍ଧ କାଞ୍ଚନର କାନ୍ତି" ପ୍ରବନ୍ଧ ପୃ:-୧୯
୩. ମୋ ସଂଗୀତ (କବିତା) କାନ୍ତ ସାହିତ୍ୟମାଳା (୧ମ ଖଣ୍ଡ-୧୯୬୪) ପୃ:-୬୧୨
୪. କାନ୍ତକବି ଲକ୍ଷ୍ମୀକାନ୍ତ ସ୍ମରଣିକା (୧୯୭୧) କାନ୍ତ ସାହିତ୍ୟ ସଂସଦ ପୃ:-୯୨
୫. 'ମଂଗଳ ମହୁରୀ' ପ୍ରବନ୍ଧ ସାହିତ୍ୟ ମାଳା (୧ମଖଣ୍ଡ) ପୃ:-୪୯୯
୬. 'କାନ୍ତକବି' - କାନ୍ତ ସାହିତ୍ୟ ମାଳା - ୧ମ ଖଣ୍ଡ, (୧୯୬୪) ପୃ:୫
୭. କାନ୍ତକବି ଲକ୍ଷ୍ମୀକାନ୍ତ ସ୍ମରଣିକା (୧୯୭୧) - ତା.କା.ସା.ସଂ- ପୃ:୯୧/୯୨
୮. 'କାନ୍ତକବି' - କାନ୍ତ ସାହିତ୍ୟମାଳା (୧ମଖଣ୍ଡ, ୧୯୬୪) - ପୃ:୫
୯. ତତ୍ରୈବ - କାନ୍ତ ସାହିତ୍ୟମାଳା (୧ମଖଣ୍ଡ, ୧୯୬୪) - ପୃ:୫
୧୦. କାନ୍ତକବି ଲକ୍ଷ୍ମୀକାନ୍ତ ସ୍ମରଣିକା (୧୯୭୧) - ତା.କା.ସା.ସଂ- ପୃ:୯୨
୧୧. 'ପୁଷ୍ପମାଳା'-ଫକୀରମୋହନ ଗ୍ରନ୍ଥାବଳୀ (୧ମ ଖଣ୍ଡ), ୨ୟ ସଂ, ୧୯୬୩ ପୃ:୨୬୪
୧୨. କାନ୍ତକବି ଲକ୍ଷ୍ମୀକାନ୍ତ ସ୍ମରଣିକା (୧୯୭୧) ତା.କା.ସା. ସଂ - ପୃ:୯୨
୧୩. କାନ୍ତକବି ଲକ୍ଷ୍ମୀକାନ୍ତ ସ୍ମରଣିକା (୧୯୭୧) ତା.କା.ସା. ସଂ- ପୃ:୯୧
୧୪. "ସାହିତ୍ୟ ସୃଷ୍ଟିରେ ହାସ୍ୟରସ (ପ୍ରବନ୍ଧ)-କାନ୍ତ ସାହିତ୍ୟ ମାଳା (୧ମ ଖଣ୍ଡ, ୧୯୬୪)- ପୃ:୫୨୦
୧୫. ଫକୀରମୋହନ ପରିକ୍ରମା (୧୯୫୫)- ଫକୀରମୋହନ ସାହିତ୍ୟ ପରିଷଦ (ପୃ: ୨୫୬-୧୫୮)
୧୬. କାନ୍ତକବି ଲକ୍ଷ୍ମୀକାନ୍ତ ସ୍ମରଣିକା (୧୯୭୧) ତା.କା,ସା.ସଂ. (କାନ୍ତକବି ସ୍ମୃତି)- ପୃ:୧୨୪



# ଫକୀରମୋହନଙ୍କ ସାରସ୍ୱତ ପ୍ରେରଣାର ଉତ୍ସ
# କୃଷ୍ଣକୁମାରୀ

"ମୁଁ ଯେ କବିତା ଲେଖିବାକୁ ଶିଖିଛି, ସେଥିରେ ଅନ୍ୟତମ କାରଣ ମୋ ସ୍ତ୍ରୀ, ସେ ମୋ କବିତା ଶୁଣିବାକୁ ବଡ଼ ଭଲ ପାଉଥିଲେ । ପ୍ରଥମେ ତାଙ୍କ ମନୋରଞ୍ଜନ ସକାଶେ ମୁଁ କବିତା ଲେଖୁଥିଲି । ତାଙ୍କର ମୃତ୍ୟୁପରେ ମୋ ମନର ବ୍ୟାକୁଳତା ନିବାରଣ ନିମନ୍ତେ ମୁଁ କବିତା ଲେଖେଁ । ମୋର ଅଧିକାଂଶ କବିତା ଦାରୁଣ ପୀଡ଼ା, ଲାଜ ଓ ମନର ଅସ୍ଥିରତା ସମୟରେ ଲେଖା ।" (ଆତ୍ମଜୀବନ ଚରିତ ଫ. ଗନ୍ଥାବଳୀ (ଦ୍ୱିତୀୟ ସଂସ୍କରଣ (୧୯୬୩) ପୃ-୧୮୬)

ସାରସ୍ୱତ ସାଧନା କ୍ଷେତ୍ରରେ ଫକୀରମୋହନ ସେନାପତିଙ୍କୁ 'ବ୍ୟାସକବି' ଏବଂ 'ସରସ୍ୱତୀ' ସମ୍ମାନର ଅଧିକାରୀ ତଥା ସାହିତ୍ୟ ଜଗତରେ ଶୀର୍ଷସ୍ଥାନ ଆରୋହଣ କରାଇବା କ୍ଷେତ୍ରରେ ଯେଉଁ ମହୀୟସୀ ମହିଳାଙ୍କର ପ୍ରଛନ୍ନ ପ୍ରେରଣା ଥିଲା, ସେ ହେଉଛନ୍ତି ତାଙ୍କ ପ୍ରିୟତମା ପତ୍ନୀ କୃଷ୍ଣକୁମାରୀ । ଫକୀରମୋହନ ପରିସ୍ଥିତି ଚାପରେ କୃଷ୍ଣାକୁମାରୀଙ୍କୁ ଦ୍ୱିତୀୟ ପତ୍ନୀଭାବେ ଗ୍ରହଣ କରିଥିଲେ । ପ୍ରଥମ ପତ୍ନୀ ଲୀଳାବତୀଙ୍କ ସହିତ ଜୀବନର ପନ୍ଦରଟି ବର୍ଷ ଅତିବାହିତ କରିବା ଅବସରରେ ଏକମାତ୍ର କନ୍ୟା ମହିଳାମଣିକୁ ଜନ୍ମଦେଇ ବ୍ୟାଧିଗ୍ରସ୍ତା ହୋଇ ସେ ଇହଲୀଳା ସମ୍ବରଣ କରିଥିଲେ । ଫକୀର ମୋହନଙ୍କ ଭାଷାରେ ସେ ଥିଲେ ଅତ୍ୟନ୍ତ ନିଷ୍ଠୁରା, ଦାମ୍ଭିକା, କର୍କଶଭାଷିଣୀ ଓ ବିରୁଦ୍ଧାଚାରିଣୀ । ତାଙ୍କ ମାନସିକ ଅଶାନ୍ତିର କାରଣ ଥିଲେ ତଥା ତାଙ୍କ ସାହିତ୍ୟ ସାଧନା କ୍ଷେତ୍ରରେ ମଧ୍ୟ ଅନ୍ତରାୟ ସୃଷ୍ଟି କରିଥିଲେ ।

ମାତ୍ର କୃଷ୍ଣାକୁମାରୀ ଥିଲେ ଲୀଳାବତୀ ସ୍ୱଭାବର ବିପରୀତ । ଜଣେ ପତିପରାୟଣା, ସେବାପରାୟଣା, ପ୍ରେମମୟୀ ନାରୀ । ଫକୀରମୋହନଙ୍କୁ ବିବାହ କରିବା ସମୟରେ ତାଙ୍କର ବୟସ ମାତ୍ର ୧୩ବର୍ଷ ଥିଲା । ଫକୀରମୋହନଙ୍କ ଭାଷାରେ

'ସାଂସାରିକ ସମସ୍ତ ପ୍ରକାର ଦୁଃଖ ଦୁର୍ଦ୍ଦଶା ମୋଚନ ସୌଭାଗ୍ୟ ସୁଖ ସମ୍ପତ୍ତି ବର୍ଦ୍ଧନ ନିମନ୍ତେ ଯେମନ୍ତ ଦୟାମୟ ପରମେଶ୍ୱର କୃଷ୍ଣାକୁମାରୀ ଦେବୀଙ୍କୁ ଭାର୍ଯ୍ୟାସ୍ୱରୂପେ ମୋ ନିକଟକୁ ପଠାଇଥିଲେ । ସତ୍ୟନିଷ୍ଠା, ପତିପରାୟଣା, ଧାର୍ମିକତା ସମସ୍ତ ପ୍ରକାର ସଦ୍‌ଗୁଣ ତାଙ୍କଠାରେ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ ଥିଲା । (ଫକୀରମୋହନ ଗ୍ରନ୍ଥାବଳୀ-୧୯୬୩-ପୃ-୬୮)

କୃଷ୍ଣାକୁମାରୀଙ୍କ ବିବାହ କରିବା ପୂର୍ବରୁ ଫକୀରମୋହନ ମୁଖ୍ୟତଃ ଥିଲେ ପାଠ୍ୟପୁସ୍ତକର ରଚୟିତା । ଜୀବନଚରିତ(୧୮୬୬), ସରଳ ଉତ୍କଳ ବ୍ୟାକରଣ (୧୮୬୬), ଭାରତ ବର୍ଷର ଇତିହାସ (୧ମ, ୨ୟ ଭାଗ-୧୮୬୯, ୧୮୭୦) ଓ ଅଙ୍କମାଳା (୧୮୭୦) ପାଠ୍ୟପୁସ୍ତକାଦି ଅନ୍ୟତମ । ଜୀବିତ ଏକ ପୁତ୍ର ଓ କନ୍ୟାର ଜନନୀ ହୋଇ ମାତ୍ର ୩୬ ବର୍ଷ ବୟସରେ ସେ ମୃତ୍ୟୁବରଣ କରିଥିଲେ । କବିଙ୍କୁ ସେତେବେଳେ ୫୨ ବର୍ଷ ବୟସ । ଯୌବନ ଅତିକ୍ରାନ୍ତ ମଧ୍ୟବୟସରେ ପତ୍ନୀବିୟୋଗ ତାଙ୍କୁ ଅଶେଷ ଦୁଃଖ ଦେଇଥିଲା । କୃଷ୍ଣକୁମାରୀଙ୍କ ଜୀବିତାବସ୍ଥାରେ କବି ସଂସ୍କୃତ ରାମାୟଣ, ମହାଭାରତ, ଶ୍ରୀମଦ୍‌ଭଗବତଗୀତା ଅନୁବାଦ, 'ଉତ୍କଳ ଭ୍ରମଣ'(କାବ୍ୟ) ତଥା କବିତା ଓ ପ୍ରବନ୍ଧାଦି ରଚନା କରିଥିଲେ ।

'ପୁଷ୍ପମାଳା' କାବ୍ୟଟି ରଚନା କରିବା ଅବସରରେ ତାଙ୍କର ପତ୍ନୀବିୟୋଗ ଘଟିଥିଲା । ଏହା କବିଙ୍କୁ ଦାରୁଣ ଆଘାତ ଦେଇଥିଲା । ତାଙ୍କ ରଚିତ ପରବର୍ତ୍ତୀ କବିତା, ଗଳ୍ପ, ଉପନ୍ୟାସ ଆଦିରେ ପତ୍ନୀହରା ନିଃସଙ୍ଗ ଜୀବନର କରୁଣଚିତ୍ର ବହୁଭାବରେ ପ୍ରତିଫଳିତ ହୋଇଥିବାର ଦେଖାଯାଏ । 'ପୁଷ୍ପମାଳା' କବିତା ପୁସ୍ତକରେ କବି ପତ୍ନୀ କୃଷ୍ଣକୁମାରଙ୍କ ଉଦ୍ଦେଶ୍ୟରେ ଏକ ଦୀର୍ଘ କବିତା ଲେଖି ତାଙ୍କୁ ଉତ୍ସର୍ଗ କରିଥିଲେ । ଏଥିରେ ସନ୍ନିବେଶିତ 'ପୁଣିକି ଦେଖିବି ସେହି ସହାସ୍ୟ ବଦନ', 'ଚକୁଆ ଚକୋଇ କଥା', 'ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ', 'ଲାବଣ୍ୟମୟୀ', 'ପାସୋରିବା', 'ଦୀପନିର୍ବାଣ', 'ମୋ କ୍ଷୁଦ୍ରତାରା', 'ମହାଧାମରେ', 'ଜଗତ ନୁହେଁ ପୂର୍ଣ୍ଣସୁଖର ସ୍ଥାନ', 'ସମାଧିକ୍ଷେତ୍ର' ଆଦି କବିତାରେ କୃଷ୍ଣକୁମାରୀଙ୍କ ସ୍ମୃତିଚିତ୍ର ସୁସ୍ପଷ୍ଟ । ପୁସ୍ତକର ଉତ୍ସର୍ଗପତ୍ରରେ କବି ଲେଖିଥିଲେ /:

ମୋ କୁଟୀରରାଣୀ କୃଷ୍ଣକୁମାରୀ ସୁନ୍ଦରୀ
ଜୀବନ ବଲ୍ଲଭା ପ୍ରାଣପ୍ରିୟା ସହଚରୀ,
ଛାଡ଼ି ଯାଇଅଛ ମୋର ନୟନପ୍ରତିମା

ମିଶାଇ ହୃଦୟ ରକ୍ତେ ସ୍ୱେ ଗୁଣଗାରିମା

\+ + + +

ବଡ଼ ଶ୍ରଦ୍ଧାକରି ଶୁଣୁଥିଲ ମୋ କବିତା
ବାଲମୀକି ରାମାୟଣ ଭଗବତ ଗୀତା
ଶୁଣନ୍ତ ଗୋ ଦେବୀ ବସି ମନର ଉଲ୍ଲାସେ
ପଢ଼ନ୍ତି କବିତାଗୁଡ଼ି ବସି ତୁମ୍ଭ ପାଶେ
ମଧ୍ୟେ ବ୍ୟବଧାନ କୋଟି କୋଟି ପାରାବାର୍
କିପରି ମୁଁ ଦେବି 'ପୁଷ୍ପମାଳା' ଉପହାର ।

(ଫ. ଗ୍ରନ୍ଥାବଳୀ - ୧୯୬୩, ପୃ - ୨୨୩)

କବି ନିଜର ସତୀସ୍ୱାଧୀ ପ୍ରାଣପ୍ରିୟା ପତ୍ନୀଙ୍କର ଏକ ସମାଧି ତାଙ୍କ ବାସଗୃହ ପଛପଟେ ଉଆସରୁ ଶାନ୍ତିକାନନକୁ ଯିବା ରାସ୍ତାପାର୍ଶ୍ୱକୁ ଲାଗି ପୋଖରୀଘାଟ ଉପରେ ଆମ୍ବଗଛ ଛାଇରେ ନିର୍ମାଣ କରିଥିଲେ । ଏହି ସମାଧି ପୀଠରେ କବି ପ୍ରତ୍ୟହ ବସି ଉପାସନା କରୁଥିଲେ । ଏବେ ଉକ୍ତ ଆମ୍ବଗଛଟି କଟାଯାଇଛି ଏବଂ ପୋଖରୀଟି ମଧ୍ୟ ପୋତାଯାଇଛି । ଉକ୍ତ ସମାଧିରେ ଗ୍ରଥିତ ମାର୍ବଲ ଫଳକରେ ଲେଖାଯାଇଛି-

ଓଁ ତତ୍‌ସତ୍
ସ୍ୱର୍ଗତ କୃଷ୍ଣକୁମାରୀ ଦେବୀ
ଶ୍ରୀ ଫକୀରମୋହନ ସେନାପତିଙ୍କର ଭକ୍ତିମତି ସତୀସାଧ୍ୱୀ ପତିପରାୟଣା ସହଧର୍ମିଣୀ
ଜନ୍ମ : ଶ: ୧୭୮୨ ମାର୍ଗଶୀର ୧୯ ଦିନ ରବିବାର.
ସ୍ୱର୍ଗପ୍ରାପ୍ତି ଶ: ୧୮୧୬ ଭାଦ୍ର ୨୬ ଦିନ ରବିବାର ଶୁକ୍ଳଦଶମୀ

କବିଙ୍କ ପତ୍ନୀପ୍ରେମ ଓ ସାରସ୍ୱତ ପ୍ରେରଣାର ଏହି ସ୍ମୃତିସ୍ତମ୍ଭ ଏ ଜାତି ପାଇଁ ପ୍ରେରଣାର ଉତ୍ସ । ଯାହାକୁ ଦର୍ଶନ କରି କବି ଅବଶିଷ୍ଟ ଜୀବନ ଅତିବାହିତ କରିବା ସହିତ ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି ଓ ସମୃଦ୍ଧି କ୍ଷେତ୍ରରେ ଲେଖନୀ ଧରିବାର ଅଜସ୍ର ଜୀବନୀଶକ୍ତି ପାଇପାରୁଥିଲେ ।



# ଚନ୍ଦ୍ରମୋହନ ଓ ଫକୀରମୋହନଙ୍କ ମଧ୍ୟରେ 'ଶ୍ରୀଧରସ୍ୱାମୀ' ପ୍ରସଙ୍ଗ

ରାଧାନାଥ ଯୁଗର ବିଶିଷ୍ଟ ଶିକ୍ଷାବିତ୍, ସୁସାହିତ୍ୟିକ ଚନ୍ଦ୍ରମୋହନ ମହାରଣା 'ଉତ୍କଳ ସାହିତ୍ୟ' ମାସିକ ପତ୍ରିକାର ୬ଷ୍ଠଭାଗ/୪ର୍ଥ ସଂଖ୍ୟାରେ 'ଶ୍ରୀଧରସ୍ୱାମୀ' ଶୀର୍ଷକ ଏକ ପ୍ରବନ୍ଧ ରଚନା କରିଥିଲେ । ଉକ୍ତ ପ୍ରବନ୍ଧଟି ପ୍ରକାଶ ପାଇବା ପରେ ତତ୍କାଳୀନ ଓଡ଼ିଶାର ଶିକ୍ଷିତ ଗୋଷ୍ଠୀଙ୍କ ମଧ୍ୟରେ ବେଶ୍ ଆଲୋଡ଼ନ ସୃଷ୍ଟି ହୋଇଥିଲା । କାରଣ ଶ୍ରୀଧର ସ୍ୱାମୀଙ୍କ ଭଳି ପ୍ରଚଣ୍ଡ ଧୀଶକ୍ତି ସମ୍ପନ୍ନ ଭାରତ ବିଖ୍ୟାତ ସଂସ୍କୃତ ବିଷାରଦ ପଣ୍ଡିତ, ସିଦ୍ଧ ସାଧକ ତଥା ଶ୍ରୀମଦ୍ ଭାଗବତ ଗୀତାର ସୁବୋଧିନୀ ଟୀକାକାର, ଶ୍ରୀମଦ୍ ଭାଗବତର (ଭାବାର୍ଥ ଦୀପିକା) ଟୀକାର, ଶ୍ରୀବିଷ୍ଣୁ ପୁରାଣର ଟୀକାକାରଙ୍କୁ ଉତ୍କଳବାସୀ କହିବାର ସାହସ ଉତ୍କଳୀୟମାନଙ୍କର ନଥିଲା । ତା'ଛଡ଼ା ସେ ଯେ ବାଲେଶ୍ୱର ଜିଲ୍ଲାର ରେମୁଣାର ସନ୍ନିକଟବର୍ତ୍ତୀ ମୟୂର ଗ୍ରାମ (ମରେଇଗାଁ) ନିବାସୀ ବୋଲି କହିବାର ଯୁକ୍ତିଯୁକ୍ତ ପ୍ରମାଣର  ଘୋର ଅଭାବଥିଲା ।

'ଶ୍ରୀଧରସ୍ୱାମୀ' ପ୍ରବନ୍ଧଟି ରଚନା କରିବା ପୂର୍ବରୁ ଚନ୍ଦ୍ରମୋହନ ତାଙ୍କ ବିଷୟରେ ପ୍ରାଚୀନ ଗ୍ରନ୍ଥ ସବୁକୁ ଅନୁସନ୍ଧାନ କରିଥିଲେ । ମାତ୍ର ସେଥିରେ ତାଙ୍କର ଆତ୍ମ ପରିଚୟ ବିଷୟରେ କୌଣସି ସୂଚନା ପାଇନଥିଲେ । କେବଳ ସେତିକି ନୁହେଁ, ରେମୁଣା ନିବାସୀ 'ବଳଦେବ ବିଦ୍ୟାଭୂଷଣ' (ତାଙ୍କ ରଚିତ ପ୍ରବନ୍ଧଟି ଏବେ ମଧ୍ୟ ଦୁଷ୍ପ୍ରାପ୍ୟ), 'ସାହିତ୍ୟ-ଦର୍ପଣ'କାର ବିଶ୍ୱନାଥ କବିରାଜ ଯେ ଉତ୍କଳବାସୀ ଥିଲେ, ଏକଥା ପ୍ରମାଣ କରିବା ଥିଲା ତାଙ୍କର ଉପରକ୍ତ ପ୍ରବନ୍ଧ ଗୁଡ଼ିକର ମୁଖ୍ୟ ଉଦ୍ଦେଶ୍ୟ ।

କୈଳାସ ବା କପିଳାସର ମାହାତ୍ମ୍ୟ ଅନୁଯାୟୀ ରାଜା ସୌଦାସ କପିଳାସରେ ତପସ୍ୟାକରି ସିଦ୍ଧିଲାଭ କରିଥିଲେ । ସେ ଏହି ସ୍ଥାନଟି ସଂସ୍କାର କରି ବିଶ୍ୱେଶ୍ୱର (ବୁଢ଼ାଲିଙ୍ଗ)ଙ୍କର ସେବା ପୂଜାର ବ୍ୟବସ୍ଥା କରିଥିଲେ । ଉତ୍କଳର ଗଜପତି ଯୁବରାଜ

ଅନଙ୍ଗଭୀମ ଦେବ ଷଣ୍ଢବଧ ଜନିତ ପାପରୁ ମୁକ୍ତ ପାଇଁ କପିଳାସର ଶିବଙ୍କୁ ଦର୍ଶନକରି ଏହାର ନୈସର୍ଗିକ ସୁଷମାରେ ବିମୋହିତ ହୋଇଥିଲେ । ସେ ବିଶ୍ୱେଶ୍ୱରଙ୍କର ମନ୍ଦିର ନିର୍ମାଣ କରି ଏଠାରେ ଥିବା ପୟୋଃମୃତ, ମଣିକର୍ଣ୍ଣିକା ଓ ଜମ୍ବ କୁଣ୍ଡମାନଙ୍କର ସଂସ୍କାର କରାଇଥିଲେ । ଏହାଙ୍କ ବଂଶଧର ଗଜପତି ମହାରାଜା ପ୍ରତାପଭାନୁଦେବ କପିଳାସରେ ଥିବା ଶିଖରେଶ୍ୱର (ଚନ୍ଦ୍ରଶେଖର) ମନ୍ଦିର ଓ ସେବା ପୂଜାର ତତ୍ତ୍ୱାବଧାରକ ରୂପେ ପୁରୀ ଗୋବର୍ଦ୍ଧନ ମଠର ବିଶିଷ୍ଟ ସନ୍ନ୍ୟାସୀ ରାମକୃଷ୍ଣାନନ୍ଦ ସ୍ୱାମୀଙ୍କୁ ସେଠାରେ ନିଯୁକ୍ତ କରିଥିଲେ । ଏହାଙ୍କ ରହିବା ପାଇଁ ବୃଦ୍ଧେଶ୍ୱର ମନ୍ଦିର ପାର୍ଶ୍ୱରେ ଏକ ମଠ ନିର୍ମାଣ କରାଇଥିଲେ । ଏହା ଦଣ୍ଡୀମଠ ବା ବ୍ରହ୍ମଚାରୀ ମଠ ନାମରେ ନାମିତ ।

ଶ୍ରୀଧରସ୍ୱାମୀ ଶ୍ରୀରାଧାକୃଷ୍ଣାନନ୍ଦଙ୍କ ଶିଷ୍ୟତ୍ୱ ଗ୍ରହଣକରି ଶ୍ରୀଲକ୍ଷ୍ମୀ ନୃସିଂହ ଉପାସନା ତଥା ଏଭଳି ମନୋରମ ଶାନ୍ତ ବିଜନ ପରିବେଶ ମଧ୍ୟରେ କଠୋର ତପସ୍ୟା କରି ସିଦ୍ଧିଲାଭ କରିଥିଲେ । ଫଳରେ ନୃସିଂହଙ୍କ କୃପାରୁ ସେ ଶ୍ରୀମଦ୍ ଭଗବତ ଗୀତା, ଶ୍ରୀମଦ୍ ଭାଗବତ, ବିଷ୍ଣୁପୁରାଣ ଆଦି ଏକାଧିକ ସଂସ୍କୃତ ପୁସ୍ତକାଦିର ଟୀକା ରଚନା କରିଥିଲେ । ଗୁରୁ ରାମକୃଷ୍ଣାନନ୍ଦ ଗୋସ୍ୱାମୀଙ୍କ ପରେ ଶ୍ରୀଧରସ୍ୱାମୀ ସେଠାକାର ତତ୍ତ୍ୱାବଧାରକ ଭାବରେ କାର୍ଯ୍ୟଭାର ଗ୍ରହଣ କରିଥିଲେ ।

ଶ୍ରୀଧର ସ୍ୱାମୀଙ୍କ ରଚିତ ଶ୍ରୀମଦ୍ ଭଗବତ ଗୀତାର ସୁବୋଧିନୀ ଟୀକା ପୃଥିବୀ ବିଖ୍ୟାତ । ଏହା ପୃଥିବୀର ବହୁଭାଷାରେ ଅନୂଦିତ । ଶ୍ରୀଧର ସ୍ୱାମୀଙ୍କ ପୂର୍ବରୁ ଶ୍ରୀମଦ୍ ଭଗବତ୍ ଗୀତାର ଶଙ୍କର ଭାଷ୍ୟ, ରାମାନୁଜ ଭାଷ୍ୟ ଆଦି ପ୍ରଚଳିତ ଥିଲା । ମାତ୍ର ଶ୍ରୀଧର ସ୍ୱାମୀଙ୍କ ସୁବୋଧିନୀ ଟୀକା ଅପେକ୍ଷାକୃତ ସରଳ, ସଂକ୍ଷିପ୍ତ ଓ ଭାବ ଗର୍ଭକ ହୋଇଥିବାରୁ ଏହା ବିଶେଷ ଲୋକପ୍ରିୟ ହେଲା । ଫଳରେ ଶ୍ରୀଚୈତନ୍ୟଦେବ ତାଙ୍କର ଶ୍ରୀମଦ୍ ଭାଗବତର ଟୀକାପାଠକରି ଏତେଭାବରେ ଆତ୍ମ ସନ୍ତୋଷଲାଭ କରିଥିଲେ ଯେ, 'ଶ୍ରୀଧର ପ୍ରସାଦେ ଆମି ଭାଗବତ ଜାନି / ଜଗତ୍ ଗୁରୁ ଶ୍ରୀଧର ସ୍ୱାମୀ ଗୁରୁକରି ମାନି' (ଚୈତନ୍ୟ ଚରିତାମୃତ) ସ୍ୱୀକାରୋକ୍ତିରେ ତାଙ୍କୁ ଗୁରୁତୁଲ୍ୟ ଜ୍ଞାନ କରୁଥିଲେ । ଶ୍ରୀଧର ସ୍ୱାମୀ ଥିଲେ ଶଙ୍କରାଚାର୍ଯ୍ୟ ପ୍ରବର୍ତ୍ତିତ ଅଦ୍ୱୈତ ପରମ୍ପରାର ଦାୟାଦ । କିନ୍ତୁ ଜ୍ଞାନ ଓ ଭକ୍ତିର ମଧୁର ସମନ୍ୱୟଧର୍ମୀ ବଳିଷ୍ଠ ମତ ପୋଷଣ କରିଥିବା ହେତୁ ସେ ଭାରତର ବିଭିନ୍ନ ଧର୍ମ ଓ ସମ୍ପ୍ରଦାୟଙ୍କ ମଧ୍ୟରେ ଖୁବ୍ ଆଦରଣୀୟ ଥିଲେ ।

ଶ୍ରୀଧରସ୍ୱାମୀଙ୍କ ସଂସ୍କୃତ ଶାସ୍ତ୍ର, ବେଦ, ଉପନିଷଦରେ ଗଭୀର ଜ୍ଞାନ ଥିଲା । ସଂସ୍କୃତ ଭାଷାରେ ଅସାଧାରଣ ବ୍ୟୁତ୍ପତ୍ତି ଲାଭକରି ନବଦ୍ୱୀପର ପଣ୍ଡିତମାନଙ୍କ

ସାହଚର୍ଯ୍ୟରେ ବହୁ ସମୟ ଅତିବାହିତ କରୁଥିଲେ । ପୁରୀରାଜାଙ୍କ ରାଜସଭାରେ ତାଙ୍କର ଯେଉଁଭଳି ଆଦର ଥିଲା, ସେଭଳି ମଧ୍ୟ ପ୍ରତିପତ୍ତି ଥିଲା । ଶାସ୍ତ୍ରୀୟ ଆଲୋଚନାରେ ଯୋଗଦେବା ପାଇଁ ବେଳେବେଳେ କାଶୀ ମଧ୍ୟ ଗମନ କରୁଥିଲେ । ମାତ୍ର ଓଡ଼ିଶାରେ ଏଭଳି ଯୋଗଜନ୍ମା ସିଦ୍ଧସାଧକ ଲୋକପ୍ରିୟତା ଅର୍ଜନ ନ କରିପାରିବାର ମୁଖ୍ୟ କାରଣ ଥିଲା, ଓଡ଼ିଶାର ଖୁବ୍ ଅଳ୍ପ ସଂଖ୍ୟକ ଲୋକ ସଂସ୍କୃତ ଶ୍ରୀମଦ୍ ଭଗବଦ୍ ଗୀତା, ଶ୍ରୀମଦ୍ ଭାଗବତ ଓ ବିଷ୍ଣୁ ପୁରାଣାଦି ପାଠକରୁଥିଲେ । କିନ୍ତୁ ଏକଥା ସତ୍ୟ ଯେ, ଶ୍ରୀଧରସ୍ୱାମୀ ଓଡ଼ିଶାରେ ଶ୍ରୀମଦ୍ ଭାଗବତ ପାଠର ଆଦର ବଢ଼ାଇଥିଲେ । ଫଳରେ ପଞ୍ଚସଖା ଯୁଗର ବରେଣ୍ୟ ସାଧକ ଜଗନ୍ନାଥ ଦାସ ଶ୍ରୀଧର ସ୍ୱାମୀଙ୍କ ଟୀକା ସହାୟତାରେ ମୂଳ ସଂସ୍କୃତ ଭାଗବତକୁ ହୃଦୟସ୍ଥ କରି ଏହାକୁ ସରଳ ଓ ପ୍ରାଞ୍ଜଳ ଓଡ଼ିଆ ଭାଷାରେ ଅନୁବାଦ କରିବାର ପ୍ରେରଣା ପାଇଥିଲେ । ସେ ଭାଗବତରେ ଲେଖିଛନ୍ତି -

ଶ୍ରୀଧର ନାମେ ବିପ୍ରବର । କଳିଯୁଗରେ ଜନ୍ମ ତାର ।
ଶ୍ରୀମଦ୍ ଭାଗବତ ଯେ ପୁରାଣ । ଅଷ୍ଟାଦଶ ସସ୍ର ଶ୍ଳୋକେଣ

+ + +

ବିପ୍ରକୁଳରେ ଜନ୍ମହୋଇ ଜଗନ୍ନାଥ ଯେ ନାମ ବହି ।
ପ୍ରାକୃତ ବନ୍ଧେ ଭାଗବତ । କହିଲେ ସନ୍ଥ ଜନହିତ ।

(ଦ୍ୱାଦଶ ସ୍କନ୍ଧ/ଓଡ଼ିଆ ଭାଗବତ)

ଶ୍ରୀଧର ସ୍ୱାମୀ ବୃନ୍ଦାବନ, କାଶୀ, ଶ୍ରୀକ୍ଷେତ୍ର ଧାମରେ ଯଦିଓ ବହୁ ସମୟ ଅତିବାହିତ କରିଥିଲେ, କିନ୍ତୁ ତାଙ୍କର ସିଦ୍ଧଭୂମି କପିଳାସର ଶାନ୍ତ, କାନ୍ତ, ମୋହନୀୟ ବିଜନ ପ୍ରକୃତିର ଆକର୍ଷଣକୁ କେବେ ଭୁଲି ପାରିନଥିଲେ । ସେଠାରେ ତାଙ୍କର ବିରାଟ ସମାଧି ଅଦ୍ୟାବଧି ବିଦ୍ୟମାନ । ଏବେ ଏହା ନୂତନ ଭାବରେ ନିର୍ମିତ । ଏହାଛଡ଼ା ଅନ୍ୟାନ୍ୟ ଗୋସ୍ୱାମୀ ମାନଙ୍କର ସମାଧି ମଧ୍ୟ ବିଦ୍ୟମାନ । ଏହା ଏ ଜାତିର ବାସ୍ତବିକ୍ ଏକ ତୀର୍ଥଭୂଇଁ ।

କବିବର ରାଧାନାଥ ଶିକ୍ଷାବିଭାଗର ପରିଦର୍ଶକ ଥିଲାବେଳେ କପିଳାସର ମନଲୋଭା ନୈସର୍ଗିକ ସୌନ୍ଦର୍ଯ୍ୟରେ ମୁଗ୍ଧହୋଇ ଏସବୁ ଉପଭୋଗ ପାଇଁ ବହୁବାର ଏ ସ୍ଥାନକୁ ଆସିଥିଲେ । ତାଙ୍କର ସୌନ୍ଦର୍ଯ୍ୟ ପିପାସୁ ରୂପାନ୍ୱେଷୀ ହୃଦୟରେ ଯେଉଁ

ଭାବନାର ତରଙ୍ଗ ସୃଷ୍ଟି ହୋଇଥିଲା, ତାଙ୍କ ରଚିତ ପାର୍ବତୀ, ନନ୍ଦିକେଶ୍ୱରୀ, ଯଯାତି-କେଶରୀ, ମହାଯାତ୍ରା ଆଦି କାବ୍ୟରେ ବିଭିନ୍ନ ସ୍ଥାନରେ ସୁନ୍ଦର ଭାବରେ ତାହା ପ୍ରତିଫଳିତ ହୋଇଛି । ଅନୁରୂପ ଭାବରେ କବି ଚନ୍ଦ୍ରମୋହନ ମହାରଣା ମଧ୍ୟ ଶିକ୍ଷା ବିଭାଗର ଥାଇ କପିଳାସର ଭୁବନ ମୋହିନୀ ପ୍ରାକୃତିକ ରୂପ ସୁଷମା ଏବଂ ଦେବଦେବୀ ଅଧିଷ୍ଠିତ ଏ ସ୍ଥାନରେ ନିର୍ଜନ ଆଧ୍ୟାତ୍ମିକ ପରିବେଶ ତଥା ଶ୍ରୀଧର ସ୍ୱାମୀଙ୍କ ସମାଧି ପୀଠର ଦର୍ଶନ ପ୍ରତି ବାରମ୍ବାର ଆକୃଷ୍ଟ ହୋଇଥିଲେ । ଫଳରେ ଚନ୍ଦ୍ରମୋହନ 'କପିଳାସ' ନାମକ ଏକ ଦୀର୍ଘ କବିତା ରଚନା କରି ଏ ସ୍ଥାନର ପ୍ରାକୃତ ସୌନ୍ଦର୍ଯ୍ୟକୁ ସୁନ୍ଦର ଭାବରେ ବର୍ଣ୍ଣନା କରିଥିଲେ । ଏହା ମୟୂରଭଞ୍ଜ ବାରିପଦାରୁ ପ୍ରକାଶିତ 'ଉତ୍କଳପ୍ରଭା' (୨ ଭାଗ/ ୧ମସଂ/୧୮୯୧-୯୨)ରେ ପ୍ରକାଶ ପାଇ ପୁରସ୍କାର ଲାଭ କରିଥିଲା । ଚନ୍ଦ୍ରମୋହନ ଏ ସ୍ଥାନରେ ଥିବା 'ଶ୍ରୀଧର ସ୍ୱାମୀ' ତଥା ଅନ୍ୟ ଗୋସ୍ୱାମୀମାନଙ୍କ ସମାଧି ପୀଠ ବିଷୟରେ ବର୍ଣ୍ଣନା କରି ଲେଖିଛନ୍ତି-

ସଂସାର-ବିରାଗୀ ପୁରୁଷ-ବର ନିବସେ ଯହିଁ;
ନ ମୋହି ତାହାର ଭିଆଣେ ମନ ନପାରେ ରହି ।

\+ + +

ଗିରି ଲଲାଟରେ ଶୋଭୁଛି ଜୀର୍ଣ୍ଣ-ପର୍ଣ୍ଣ-କୁଟୀର;
କିମ୍ବଦନ୍ତୀ, ଥିଲେ ଯୋଗୀଏ ଛାଡ଼ିଲେଣି ଶରୀର ।

(କପିଳାସ - ପଦ୍ୟ- ଚନ୍ଦ୍ରମୋହନ ଗ୍ରନ୍ଥାବଳୀ-ପୃ ୪୧୩ )

ବହୁ ପ୍ରାଚୀନ କାଳରୁ ରେମୁଣା ଏକ ବୈଷ୍ଣବପୀଠ ଭାବରେ ଭାରତ ବିଖ୍ୟାତ ଥିଲା । ଶ୍ରୀଚୈତନ୍ୟଙ୍କ ପୂର୍ବରୁ ଏବଂ ପରେ ଆଜି ପର୍ଯ୍ୟନ୍ତ ଏ କ୍ଷେତ୍ରର ମହିମା ପ୍ରକଟିତ ହୋଇଆସିଛି । ଶ୍ରୀଧର ସ୍ୱାମୀ, ବଳଦେବ ବିଦ୍ୟାଭୂଷଣଙ୍କ ଭଳି ବୈଷ୍ଣବ ଅଦ୍ୱୈତ ପରିପନ୍ଥୀ ସାଧକମାନେ ଏଠାରେ ଜନ୍ମଗ୍ରହଣ କରିଥିଲେ । କୃଷ୍ଣଭକ୍ତ ମାଧବେନ୍ଦ୍ର ପୁରୀ ଏବଂ ଈଶ୍ୱରପୁରୀ ମଧ୍ୟ ଏ ସ୍ଥାନକୁ ସାଧନା ପୀଠଭାବରେ ଗ୍ରହଣ କରିଥିଲେ । ଭକ୍ତ ମାଧବେନ୍ଦ୍ର ପୁରୀ ପାଇଁ ଗୋପୀନାଥଙ୍କ ଅପାର ମହିମା ଲୀଳା (କ୍ଷୀରୀ ଚୋରି କରିବା ପ୍ରସଙ୍ଗ) ଏବେ ମଧ୍ୟ ଓଡ଼ିଶାର ଜନମାନସରେ ଜାଗ୍ରତ । ଆଜିବି ମାଧବେନ୍ଦ୍ର ପୁରୀ ସ୍ଥାପିତ ଗୌଡ଼ିୟମଠ ଏଠାରେ ରହିଛି ଏବଂ ମନ୍ଦିରର ଅନତି ଦୂରରେ ରାସ୍ତାକୁ ଲାଗି ତାଙ୍କର ସମାଧି ବିଦ୍ୟମାନ ।

ଶ୍ରୀଧର ସ୍ୱାମୀଙ୍କ ଜନ୍ମପୀଠ 'ମୟୂରଗ୍ରାମ' ବିଷୟରେ ଶ୍ରୀ ଶ୍ୟାମାନନ୍ଦ ପ୍ରକାଶ ବୈଷ୍ଣବ ଗ୍ରନ୍ଥରେ ଉଲ୍ଲେଖ ଅଛି ଯେ, ଶ୍ରୀ ଶ୍ୟାମାନନ୍ଦ ପ୍ରଭୁ ଯେତେବେଳେ ରେମୁଣାର ଶ୍ରୀକ୍ଷୀରଚୋରା ଗୋପୀନାଥଙ୍କୁ ଦର୍ଶନ ପାଇଁ ଯାଆନ୍ତି, ସେତେବେଳେ ସେ ଗୋପୀନାଥଙ୍କୁ ଦର୍ଶନ କରି ଶ୍ରୀ ବଳଦେବ ବିଦ୍ୟାଭୂଷଣଙ୍କ ନାମ ତିନିଥର ଉଚ୍ଚସ୍ୱରରେ ଉଚ୍ଚାରଣ କରନ୍ତି । ତା'ପରେ ସେ 'ମୟୂରଗ୍ରାମ' କୁ ଯାଇ ଶ୍ରୀଧରସ୍ୱାମୀଙ୍କ ଜନ୍ମସ୍ଥାନକୁ ଦର୍ଶନ କରି ସେହି ପବିତ୍ର ଧୂଳିରେ ଗଡ଼ିଯାଆନ୍ତି । ଶ୍ରୀକୃଷ୍ଣଦାସ ବର୍ଣ୍ଣନା କରିଛନ୍ତି -

"ରେମୁଣା ତେ ଦୁଇ ପ୍ରଭୁ ବହୁ ଲୀଳା କୈଲ ।
ଯବନ ଶାହାଜୀ ଆସି ଦର୍ଶନ କରିଲ ।

\+ + +

ଶ୍ରୀଧର ସ୍ୱାମୀର ସ୍ଥାନେ ଗମନ କରିଲ ।
ଦର୍ଶନ ମାତ୍ରକେ ଧୂଳାୟ ଗଡ଼ାଗଡ଼ି ଦିଲ ॥

(ଶ୍ରୀ ଶ୍ୟାମାନନ୍ଦ ପ୍ରକାଶ ୧୦ ମ ଦଶା)

ସାହିତ୍ୟିକ ଚନ୍ଦ୍ରମୋହନ ମହାରଣା 'ଶ୍ରୀଧର ସ୍ୱାମୀ' ପ୍ରବନ୍ଧରେ ଲେଖିଛନ୍ତି, "ଯେଉଁମାନେ ତତ୍ତ୍ୱ ଆବିଷ୍କାର କରନ୍ତି ଓ ଯେଉଁମାନେ ତତ୍ତ୍ୱବୋଧର ପଥ ପ୍ରଶସ୍ତ କରି ଦିଅନ୍ତି, ସେମାନେ ଉଭୟେ ମାନବ ମଣ୍ଡଳୀର ଉପକାରୀ । ତେଣୁ ପ୍ରାତଃ ସ୍ମରଣୀୟ । ଗ୍ରନ୍ଥାକାର ଓ ଟୀକାକାର ଅନ୍ୟୋନ୍ୟ ସମ୍ବନ୍ଧରେ ଏହିପରି ସମ୍ବନ୍ଧ ହୋଇ ଅମରତ୍ୱ ଲାଭ କରନ୍ତି । କାଳିଦାସଙ୍କ ସହିତ ମଲ୍ଲୀନାଥ ଓ ବ୍ୟାସଦେବଙ୍କ ସହିତ ଶ୍ରୀଧର ଏହିପରି ଅମର ହୋଇ ରହି ଅଛନ୍ତି" ସେ ମଧ ଶ୍ରୀଧର ସ୍ୱାମୀଙ୍କ ଜନ୍ମସ୍ଥାନ ବାଲେଶ୍ୱର ଜିଲ୍ଲାର ଅନ୍ତଃପାତୀ ରେମୁଣା ବା ତାହାର ଅଦୂରବର୍ତ୍ତୀ ମୟୂର ଗ୍ରାମ ବା ମରେଇ ଗାଁ ବୋଲି ସ୍ୱୀକାର କରିଛନ୍ତି ।

ଚନ୍ଦ୍ରମୋହନ ମହାରଣା ପୁରୀଜିଲ୍ଲା ସ୍କୁଲ ସମୂହର ଡେପୁଟୀ ଇନ୍‌ସପେକ୍ଟର ଥିବା କାଳୀନ କୌଣସି ସରକାରୀ କାର୍ଯ୍ୟ ବଶତଃ କଟକରେ ଅବସ୍ଥାନ ସମୟରେ ଦିନେ ସନ୍ଧ୍ୟାରେ ଘଟଣା ପ୍ରସଙ୍ଗରେ ରେମୁଣା-ନିବାସୀ ମହାଦେବ ପତିଙ୍କଠାରୁ ସେମାନେ ଶ୍ରୀଧରସ୍ୱାମୀଙ୍କ ବଂଶଧର ବୋଲି ଶୁଣି ଅଭିଭୂତ ହୋଇଥିଲେ । ଚନ୍ଦ୍ରମୋହନ ସେହି ପତିବଂଶ ବିଷୟରେ ଉଲ୍ଲେଖ କରିଛନ୍ତି, "ଅପୁତ୍ରିକ ପତି-ବଂଶଜ କୌଣସି ବ୍ରାହ୍ମଣଙ୍କର ପୋଷ୍ୟପୁତ୍ର ହୋଇ ଆସିଲେ । ସେହି ପତି ବଂଶରେ ପୂର୍ବୋକ୍ତ

ମହାଦେବଙ୍କର ଜନ୍ମ । ସମ୍ଭବତଃ ପଶ୍ଚାତ୍ ମରେଇ ଗାଁର ଦାଶବଂଶ ଲୁପ୍ତହେଲା ଏବଂ ତାହାର ସ୍ୱଳ୍ପ ଭୂସମ୍ପତ୍ତି ପତିମାନେ ଉତ୍ତାରିଧିକାରୀତ୍ୱ ସୂତ୍ରରେ ପ୍ରାପ୍ତ ହେଲେ । ଅଦ୍ୟାପି ମହାଦେବଙ୍କର ଜ୍ଞାତି ସେହି ବ୍ରହ୍ମୋତ୍ତର ଭୂସମ୍ପତ୍ତି ଭୋଗ କରୁଅଛନ୍ତି । xx xx ମହାଦେବଙ୍କ ପିତା ବଳଭଦ୍ର ପତି, ପିତାମହ ହରିହର ପତି, ପ୍ରପିତାମହ ଶିବରାମଦେବ ।" ଶ୍ରୀଧର ସ୍ୱାମୀଙ୍କ ଜନ୍ମସ୍ଥାନ ବିଷୟରେ ପ୍ରବନ୍ଧକ ଶେଷ ସିଦ୍ଧାନ୍ତରେ ଉପନୀତ ହୋଇ ମନ୍ତବ୍ୟ ଦେଇଛନ୍ତି, "ଭୂୟୋଽନୁ ସନ୍ଧାନରେ ଅବଗତ ହେଲି ଯେ ମରେଇ ଗାଁ ଶ୍ରୀଧରଙ୍କ ଜନ୍ମସ୍ଥାନ । ବଡ଼ସୋନ ଓ ଗଙ୍ଗାହାର ବଳଙ୍ଗର ଉପନଦୀ ଦ୍ୱୟ । ଏହି ତଟିନୀ ଦ୍ୱୟର ମଧ୍ୟବର୍ତ୍ତୀ ଓ ବଡ଼ସୋନର କୂଳବର୍ତ୍ତୀ ମରେଇ ଗାଁ ବର୍ତ୍ତମାନ ରେମୁଣାରୁ ପ୍ରାୟ ଦୁଇକ୍ରୋଶ ଉତ୍ତରକୁ ଓ ଗନିପୁର ତାଲୁକର ଅନ୍ତଃପାତୀ ଅଟେ । ମୟୂରଭଞ୍ଜର ସୀମା ମରେଇଗାଁର ସମୀପବର୍ତ୍ତୀ । ଶ୍ରୀଧର ଦାଶ -ସଞ୍ଜ୍ଞକ ଥିଲେ । ତାଙ୍କର କୌଣସି ଉତ୍ତର ପୁରୁଷ ରେମୁଣା ନିବାସୀ ଥିଲେ ।" ଶ୍ରୀଧର ସ୍ୱାମୀଙ୍କ ସ୍ୱହସ୍ତ ଲିଖିତ ଗ୍ରନ୍ଥ ବିଷୟରେ ପ୍ରାବନ୍ଧିକ ଏତିକି କେବଳ କହିଛନ୍ତି, "ଉକ୍ତ ପତିବଂଶଙ୍କ ଗୃହରେ ତାଳପତ୍ରରେ ସଂସ୍କୃତ ଓ ଉତ୍କଳ ଭାଷାରେ ଉତ୍କଳାକ୍ଷରରେ ଲିଖିତ ଅନେକ ଗୁଡ଼ିଏ ଗ୍ରନ୍ଥ ବିଦ୍ୟମାନ । ମାତ୍ର ଉତ୍କୃଷ୍ଟ ଗ୍ରନ୍ଥମାନଙ୍କରୁ ଅଧିକାଂଶ ଅକାଳ କୁଷ୍ମାଣ୍ଡ କୌଣସି କୌଣସି ବଂଶଧର ସ୍ୱଳ୍ପ ମୂଲ୍ୟରେ ଅପାତ୍ରରେ ବିକ୍ରୟ କରି ଅଛନ୍ତି ବା ବନ୍ଧକ ଦେଇ ଅଛନ୍ତି । ସେଗୁଡ଼ିକର ଉଦ୍ଧାର ଏବେ ଅସମ୍ଭବ । ଶୁଣିଲି ଶ୍ରୀଧରଙ୍କ ସ୍ୱହସ୍ତ ଲିଖିତ ଗ୍ରନ୍ଥମଧ ବିଦ୍ୟମାନ, ମାତ୍ର ମୁଁ ସେଗୁଡ଼ିକ ଦର୍ଶନ କରିନାହିଁ ।" (ଚନ୍ଦ୍ରମୋହନ ଗ୍ରନ୍ଥାବଳୀ ସଂ. ଡ. ଅରବିନ୍ଦ ଗିରି- ପୃ-୨୨୧/୨୨୩)

**ଫକୀରମୋହନଙ୍କ ମନରେ ପ୍ରତିକ୍ରିୟା :**

'ଶ୍ରୀଧର ସ୍ୱାମୀ ପ୍ରବନ୍ଧଟି 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶ ପାଇବାପରେ ବୁଦ୍ଧିଜୀବୀ ସାହିତ୍ୟ ପାଠକ ମାନଙ୍କ ମନ ମଧ୍ୟରେ ସ୍ୱାଭାବିକ୍ ପ୍ରତିକ୍ରିୟା ଦେଖା ଦେଇଥିଲା । ଯେଉଁ ପ୍ରତିକ୍ରିୟାରେ ବଶବର୍ତ୍ତୀ ହୋଇ ଫକୀରମୋହନ ସେନାପତି ଲେଖକ ଚନ୍ଦ୍ରମୋହନ ବାବୁ, ଡେପୁଟୀ ଇନସ୍‌ପେକ୍ଟର ପୁରୀକୁ ଏବିଷୟ ନେଇ ତିନିଖଣ୍ଡ ଚିଠି ଲେଖିଥିଲେ । ସେଥିମଧ୍ୟରୁ କଟକରୁ ଦୁଇଖଣ୍ଡ ଚିଠି ଏବଂ ରମ୍ଭାରୁ ଖଣ୍ଡିଏ ଚିଠି । ପ୍ରଥମ ଚିଠିଟିର ଉପାଦେୟ ଅଂଶଥିଲା - 'ପ୍ରିୟତମ ଚନ୍ଦ୍ରମୋହନ- ତୁମ୍ଭଲେଖା ପାଠ କରିବା ଦିନଠାରୁ ଚିନ୍ତା କରି କରି ମୁଁ ଅସ୍ଥିର ହୋଇ ପଡ଼ିଲିଣି ।

ଶ୍ରୀଧରସ୍ୱାମୀ ରେମୁଣା ବାସୀଥିଲେ ବିଶ୍ୱାସଯୋଗ୍ୟ ପ୍ରମାଣ କାହିଁ ? ତୁମ୍ଭେ କେବଳ ଶୁଣାକଥା, ଉଡ଼ାକଥା ଲେଖିଅଛ । ମୁଁ ପଚାରେଁ ତୁମ୍ଭର ବିଶ୍ୱାସ କଣ ? ତୁମ୍ଭେ ଏ ସମ୍ବନ୍ଧେ ଯାହାକିଛି ଜାଣ, ବଡ଼ ବିସ୍ତାରିତ କରି ମୋତେ ଲେଖ । ମୋହର ଯଦି କିଛି ମାତ୍ର ପ୍ରତ୍ୟୟ ଜନମେ ରେମୁଣା ଯିବି । ସେଠାରେ ଯଦି ଦୁଇ ଚାରିମାସ ରହିବାକୁ ହୁଏ, ରହିବି । ବିଶେଷ ଅନୁସନ୍ଧାନ କରିବି । ଘଟଣା ସତ୍ୟହେଲେ ତାହାଙ୍କ ହସ୍ତାକ୍ଷର ମିଳିପାରେ । ମୋହର ଇଚ୍ଛା ତାହାଙ୍କର ଖ୍ୟାତିଜନକ କିଛି କାର୍ଯ୍ୟ କରାଇବି- କେନ୍ଦୁବିଲ୍ୱ ପରି ସେଠାରେ ଯେମନ୍ତ ଗୋଟିଏ ମେଳା ହୁଏ, ସେଥି ସକାଶେ ପ୍ରତ୍ୟେକ ଉତ୍କଳ ପୁତ୍ରର ଯତ୍ନ କରିବା ଉଚିତ । ଏହି ଅଧଃ ପତିତ ଜାତି କୁଳରେ ଶ୍ରୀଧର ଜନ୍ମଗ୍ରହଣ କରିଥିଲେ ବିଶ୍ୱାସ କରିବାକୁ ସାହସ ଅଣ୍ଟୁନାହିଁ । + + ତୁମ୍ଭର ଫକୀରମୋହନ ।” ଏ ବିଷୟରେ ଚନ୍ଦ୍ରମୋନହଙ୍କଠାରୁ ଆଠଦିନ ମଧ୍ୟରେ ସେ କୌଣସି ଉତ୍ତର ନ ପାଇବାରୁ ଦ୍ୱିତୀୟ ଚିଠିଟି ରମ୍ଭାରୁ ଲେଖିଥିଲେ । ସେଥିରେ ଉଲ୍ଲେଖ ଥିଲା “ପ୍ରିୟତମ ଚନ୍ଦ୍ରମୋହନ - ତୁମ୍ଭେ ଶ୍ରୀଧର - ଏତେ ବଡ଼କଥାଟା ଜାଣି ଦୁଇଚାରିଟା ଧାଡ଼ି ଲେଖି କିପରି ତୁନି ହୋଇ ବସିଅଛ ? ମୁଁ ଦିବାରାତ୍ରି ଏହି କଥା ଚିନ୍ତା କରୁଅଛି । ତୁମ୍ଭେ ମୋହର ପୂର୍ବ ପତ୍ରର ଉତ୍ତର ଦେଇଅଛ କି ନାହିଁ କହିପାରୁ ନାହିଁ । ଉତ୍ତର ପାଇଲେ ମୋହର ବକ୍ତବ୍ୟ ବିଷୟ ଲେଖିବି । xxx ଫକୀରମୋହନ ସେନାପତି” । ଏ ବିଷୟରେ ଫକୀରମୋହନ ଚନ୍ଦ୍ରମୋହନଙ୍କ ଠାରୁ କୌଣସି ଉତ୍ତର ନପାଇବାରୁ ସ୍ୱାଭିମାନପୂର୍ଣ୍ଣ ଅନ୍ୟ ଏକ ପତ୍ର କଟକରୁ ଲେଖିଥିଲେ । ସେଥିରେ ସେ ଲେଖିଥିଲେ, “ପ୍ରିୟତମ ଚନ୍ଦ୍ରମୋହନ - ତୁମ୍ଭେ ନିଶ୍ଚୟ ଜାଣିବ ଶ୍ରୀଧରସ୍ୱାମୀ ବିଷୟ ମୋହର ଦିବାରାତ୍ରି ଚିନ୍ତାର କାରଣ ହୋଇଅଛି । ମୋ ଜୀବନର ଅବଶିଷ୍ଟକାଳ ସାଧ୍ୟାନୁସାରେ ଅର୍ଥ ଏହି ବିଷୟରେ ବ୍ୟୟ କରିବାକୁ ଇଚ୍ଛା କରେଁ । ତୁମ୍ଭେ ବି ମୋ ପତ୍ରର ଉତ୍ତର ଦେବନାହିଁ । ସାବଧାନ ହୁଅ ତୁମ୍ଭକୁ ୭ଦିନ ମାତ୍ର ମିଆଦ ଦେଲି । ଏହି ମିଆଦ ମଧ୍ୟରେ ମୋ ପତ୍ରର ଉତ୍ତର ନ ପାଇଲେ ତୁମ୍ଭ ବସାରେ ପହୁଞ୍ଚିବି । ତୁମ୍ଭେ ଇଚ୍ଛା ପୂର୍ବକ ଯଦି ବିପଦରେ ପଡ଼ ମୁଁ ନାଚାର । xxx ଫକୀରମୋହନ ସେନାପତି ।” ଫକୀରମୋହନଙ୍କ ଲିଖିତ ଚିଠି ଫକୀରମୋହନଙ୍କ ଦୁର୍ଲ୍ଲଭ ରଚନାବଳୀ ସଂ. ଡ. ଅରବିନ୍ଦ ଗିରି ପୃ-୪୨୦/୪୨୧ )

ଚନ୍ଦ୍ରମୋହନ ଫକୀରମୋହନଙ୍କର ଦୁଇ ଦୁଇଟା ଚିଠିର ଉତ୍ତର କାହିଁକି ନଦେଲେ ଜାଣିବା କଷ୍ଟକର । ଯାହା ଫଳରେ ଫକୀରମୋହନ ସେହି ପୂର୍ବ ପ୍ରସଙ୍ଗରେ ତୃତୀୟ

ଚିଠିଟି ଲେଖିଥିଲେ. ଏବଂ ପରେ ହୁଏତ ସନ୍ତୋଷଜନକ ଉତ୍ତର ସେ ପାଇଥିବେ । ଯା'ବି ହେଉ ଚନ୍ଦ୍ରମୋହନ କିଛି ଶୁଣାକଥା କିଛି ଅନୁସନ୍ଧାନ ତଥ୍ୟ ଉପରେ ଉକ୍ତ ପ୍ରବନ୍ଧଟି ରଚନା କରିଥିଲେ । ସର୍ବଭାରତୀୟ ସ୍ତରରେ ପାଣ୍ଡିତ୍ୟ ଓ ଭକ୍ତିମତ୍ତାରେ ଖ୍ୟାତିଲାଭ କରିଥିବା 'ଶ୍ରୀଧରସ୍ୱାମୀ' ଙ୍କୁ ଓଡ଼ିଶାର ଯୋଗଜନ୍ମା ହିସାବରେ ଆବିଷ୍କାର କରିବା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଏଥିରେ ଚନ୍ଦ୍ରମୋହନଙ୍କ ଗବେଷଣାତ୍ମକ ମନୋବୃତ୍ତିର ପରିଚୟ ମିଳିଥାଏ । ଅତଏବ୍ 'ଶ୍ରୀଧରସ୍ୱାମୀ' ପ୍ରବନ୍ଧଟିକୁ ଗବେଷଣାତ୍ମକ ଉପାଦାନ ଭାବରେ ଓଡ଼ିଆ ସାହିତ୍ୟରେ ଗ୍ରହଣ କରିନେବା ଉଚିତ । ଚନ୍ଦ୍ରମୋହନ ଶ୍ରୀଧରସ୍ୱାମୀଙ୍କୁ ଓଡ଼ିଆବାସୀଙ୍କ ଲୋକଲୋଚନକୁ ଆଣିବା ଦିଗରେ ପ୍ରଥମ ପ୍ରୟାସ କରି ବହୁ ପ୍ରଶଂସାର ପାତ୍ର ହୋଇପାରିଥିଲେ ।



# କବିସଦନରୁ କବିକାନନ

('ବାଲେଶ୍ୱର ଉତ୍କଳ ଯୁବକଙ୍କର ଗୋଟିଏ ତୀର୍ଥ ।' ଆମ୍ଭେମାନେ ଆଜି ପର୍ଯ୍ୟନ୍ତ ପ୍ରତିଭାର ପୂଜା କରିବାକୁ ଶିଖି ନାହୁଁ । ଯେଉଁ ଦେଶମାନଙ୍କର ସାହିତ୍ୟ ଉନ୍ନତ, ସେଠାରେ କବିଙ୍କର, ଲେଖକଙ୍କର ଜନ୍ମସ୍ଥଳୀ ତୀର୍ଥ ରୂପରେ ପରିଗଣିତ ହୁଏ । ପ୍ରକୃତରେ କବି ଯେଉଁଠାରେ ଜନ୍ମଗ୍ରହଣ କରନ୍ତି ? ସେ ସ୍ଥଳ ସ୍ୱର୍ଗ ବ୍ୟତୀତ ଆଉ କିଛି ନୁହେଁ । x x x x କେବେ ଉତ୍କଳର କବି ପ୍ରତ୍ୟେକ ଉତ୍କଳ ଗୃହରେ ସାଦରରେପୂଜା ପାଇବେ !) - (୧) ଅବକାଶ ପ୍ରାପ୍ତ ଯୁବକ ।

ଏହା ଉତ୍କଳର ବର୍ଷୀୟାନ୍ ସାହିତ୍ୟ ସ୍ରଷ୍ଟା ବ୍ୟାସକବି ଫକୀରମୋହନ ଦର୍ଶନ ଅଭିଳାଷୀ ଅବକାଶ ପ୍ରାପ୍ତ ଯୁବଛାତ୍ର ଗୋଦାବରୀଶ ମିଶ୍ରଙ୍କ ସମବେଦନା ପୂର୍ଣ୍ଣ ଉକ୍ତି ଥିଲା । ଫକୀରମୋହନ ସେନାପତିଙ୍କ ଜନ୍ମମାଟି ବାଲେଶ୍ୱରଥିଲା ବାଗ୍ମୀ ବିଶ୍ୱନାଥ କର, ଚନ୍ଦ୍ରମୋହନ ମହାରଣା, ନନ୍ଦ କିଶୋର ବଳ, ଲକ୍ଷ୍ମୀନାରାୟଣ ସାହୁ, ଶଶୀଭୂଷଣ ରାୟ, ଗୋଦାବରୀଶ ମିଶ୍ର, ଗୋପବନ୍ଧୁ ଦାସ, ମୃତ୍ୟୁଞ୍ଜୟ ରଥ, ନୀଳମଣି ବିଦ୍ୟାରତ୍ନ ପ୍ରଭୃତି ତତ୍‌କାଳୀନ ବହୁ ଉତ୍କଳ ସନ୍ତାନମାନଙ୍କ ପାଇଁ କବି-ତୀର୍ଥଭୂମି । ଏମାନେ ନିଜନିଜ କାର୍ଯ୍ୟ ବଶତଃ ଯେତେବେଳେ ବାଲେଶ୍ୱର ଆସୁଥିଲେ କେହି ଫକୀରମୋହନଙ୍କୁ ସାକ୍ଷାତ୍ ନକରି ଫେରୁନଥିଲେ । ତା'ଛଡ଼ା ଫକୀରମୋହନଙ୍କ ସାହିତ୍ୟର ଭାବମୂର୍ତ୍ତି ଯେ ହୃଦୟ ମଧ୍ୟରେ ଅନୁଭବ କରିଛି ଏବଂ ଯେ ଥରେ ତାଙ୍କ ସୁଖକାପରେ ଆସିଛି, ସେ କେବେହେଲେ ତାଙ୍କୁ ସାକ୍ଷାତ୍ କରିବାକୁ ମଧ୍ୟ ଭୁଲୁ ନଥିଲେ । ଯେଉଁମାନଙ୍କ ସହିତ ତାଙ୍କର ସାକ୍ଷାତ୍ ଘଟୁ ନଥିଲା ମାତ୍ର ଚିଠିପତ୍ରର ସମ୍ପର୍କ ଥିଲା, ସେମାନଙ୍କ ମନମଧ୍ୟରେ ସେନାପତିଙ୍କୁ ଦର୍ଶନ କରିବାପାଇଁ ଏକ ପ୍ରକାର ପ୍ରବଳ ଆବେଗ ପ୍ରକାଶ ପାଉଥିଲା । ଯେଉଁଥିପାଇଁ ଅବକାଶ ପାଇଲାମାତ୍ରେ ହିଁ ସେମାନେ ତାଙ୍କ ଦର୍ଶନ ଅଭିଳାଷୀ ହୋଇ ପଡୁଥିଲେ । "ଆମ୍ଭମାନଙ୍କର ବାଲେଶ୍ୱର ଯିବାର ଏକମାତ୍ର ଉଦ୍ଦେଶ୍ୟ ସେନାପତିଙ୍କର ଦର୍ଶନ ଲାଭ କରିବା । ବାଲେଶ୍ୱରରେ

ପହଞ୍ଚି ସେ ସୁଖ-ଦର୍ଶନ ମିଳିଗଲା । ଏ ମୋହର ପ୍ରଥମ ସାକ୍ଷାତ୍ । କବି ବର୍ତ୍ତମାନ ବୃଦ୍ଧ; ଚର୍ମ ଲୋଳିତ, ଶ୍ରବଣ ଦୋଷଯୁକ୍ତ; କିନ୍ତୁ ତାଙ୍କର ସେହି ଯୌବନ ସୁଲଭ କର୍ମଠତା, ଶୈଶବକାଳୀନ ଚଞ୍ଚଳତା ଟିକିଏ ଊଣା ହୋଇଥିଲାପରି ଜଣା ଯାଉନାହିଁ । ସେ ବର୍ତ୍ତମାନ ସୁଦ୍ଧା ଲେଖନୀ ପରିତ୍ୟାଗ କରିନାହାନ୍ତି । ବର୍ତ୍ତମାନ ସୁଦ୍ଧା ଉତ୍କଳର ସାହିତ୍ୟ-ଉଦ୍ୟାନରେ ସେ ନବୀନ ଲତିକା ରୋପଣ ଛାଡ଼ି ନାହାନ୍ତି । (୨)

ଫକୀରମୋହନ ନିଜେ ଶିକ୍ଷକ ଓ ସାମ୍ବାଦିକ, ଦେୱାନ ଓ ସାହିତ୍ୟିକ ଜୀବନରେ ଓଡ଼ିଶାର ଜନ-ସାଧାରଣଙ୍କ ଠାରେ ବେଶ୍ ପରିଚିତ ହୋଇପାରିଥିଲେ । ତଥାପି ୧୯୦୫ ମସିହାରେ ମୋହନୀମୋହନ ସବ୍‌ଡେପୁଟୀ ହୋଇ ଯେତେବେଳେ ବାଲେଶ୍ୱର ଆସିଲେ, କବି ମଧ ତାଙ୍କ ସହିତ ବାଲେଶ୍ୱର ଫେରି ଆସିଥିଲେ । ଅଳ୍ପ ଦିନ ମଧ୍ୟରେ ମୋହନୀମୋହନ ବାଲେଶ୍ୱରରୁ ପୁନରାୟ କଟକ ବଦଳି ହୋଇଗଲେ । କିନ୍ତୁ ପୁତ୍ର ସହିତ ଆଉ କଟକ ବାହୁଡ଼ି ନଯାଇ ଜୀବନର ଅବଶିଷ୍ଟ ଦିନ ଗୁଡିକ ଜନ୍ମମାଟିରେ ସ୍ନେହାଞ୍ଚଳରେ କଟାଇ ଦେବାକୁ ଶେଷ ନିଷ୍ପତ୍ତି ନେଇଥିଲେ । ଏଭଳି କବି ଏକାକୀ ନିଃସଂଗ ଜୀବନକୁ ଆଦରି ନେବାର ଏକମାତ୍ର କାରଣ ଥିଲା, ନାସ୍ତିକ ପୁତ୍ର ମୋହନୀ ମୋହନଙ୍କ ସହିତ ଆସ୍ତିକ ପିତାଙ୍କର ଅଧିକାଂଶ ସମୟରେ ଘଟୁଥିବା ମତାନୈକ୍ୟ, ଯାହାକି ପାରିବାରିକ ଅଶାନ୍ତି ସୃଷ୍ଟିର ମୂଳ କାରଣ ଥିଲା । ଫକୀରମୋହନ ତାଙ୍କର ବାଲେଶ୍ୱର ରହଣି ଅବସରରେ ପ୍ରାୟ ସକାଳ ଓ ସନ୍ଧ୍ୟାରେ ନିଜ ଗାଁ ତଥା ଆଖପାଖ ଗାଁର ପ୍ରାୟ ଅଧିକାଂଶ ଲୋକଙ୍କ ଘରକୁ ଯାଉଥିଲେ ଏବଂ ସେମାନଙ୍କ ସୁଖ ଦୁଃଖ ବୁଝୁଥିଲେ । "ସାଇପଡ଼ିଶାରେ କାହାରି ଟିକେ ଦେହ ଆରାମ ହେଲେ ବୁଢ଼ା ଦି'ଓଳି ତା'ଘରକୁ ଦଉଡ଼ିବେ । ଔଷଧ ପତ୍ର ବ୍ୟବସ୍ଥା କରିଦେବେ, ପଥି ଯୋଗାଇ ଦେବେ ।" (୩) ସେ ନିଜେବି ଅନେକ କବିରାଜି ଔଷଧ ଜାଣିଥିଲେ ଏବଂ ବିଭିନ୍ନ ପ୍ରକାର କବିରାଜି ଔଷଧ ନିଜେ ପ୍ରସ୍ତୁତ କରୁଥିଲେ । ଲୋକମାନେ ବି ସୁବିଧା ଅସୁବିଧାରେ ତାଙ୍କର ସୁପରାମର୍ଶ ଲୋଡୁଥିଲେ । ଗ୍ରାମର ସାଧାରଣ ଲୋକଙ୍କଠାରୁ ଶିକ୍ଷିତ ଲୋକ ପର୍ଯ୍ୟନ୍ତ ସମସ୍ତଙ୍କ ପ୍ରତି ତାଙ୍କର ବରାବର ସ୍ନେହ ଦୃଷ୍ଟି ଥିଲା । ତା'ଛଡ଼ା ତତ୍‌କାଳୀନ ଯେଉଁ ଉତ୍କଳ ସନ୍ତାନମାନେ ବିଦେଶରେ ରହି ଉଚ୍ଚଶିକ୍ଷା ଲାଭ କରୁଥିଲେ ଏବଂ ଜନ୍ମଭୂମି ଉତ୍କଳର ସେବା ଓ ଉତ୍କଳ ଭାଷା ସାହିତ୍ୟର ଉନ୍ନତି ପାଇଁ ସମସାମୟିକ ପତ୍ର ପତ୍ରିକାରେ ଲେଖାମାନ ଲେଖୁଥିଲେ, ସେମାନଙ୍କ ପ୍ରତି ତାଙ୍କ ହୃଦୟରେ ଏକ ସ୍ୱତଃପ୍ରବୃତ୍ତ ସ୍ନେହ ଅଜାଡ଼ି ପଡୁଥିଲା । "ମୋ ଭଳି ସେତେବେଳର ଲେଖକଙ୍କ ପ୍ରତି

ତାଙ୍କର ଯେ ଶ୍ରଦ୍ଧା, ଆଦର ଓ ପୂର୍ଣ୍ଣପ୍ରାଣର ଅଲକ୍ଷିତ ଆର୍ଶୀବାଦ ତାହା ମୁଁ ଭୁଲିପାରିବି ନାହିଁ । ସେଥିରେ ପୁଣି, କୌଣସି ମାୟାର ଆବରଣ କେବେ ମୁଁ ଦେଖିନାହିଁ ।" (୪)

ସ୍ୱୀୟ ମାତୃଭାଷା ବିପର୍ଯ୍ୟୟମୁଖୀ; ଶ୍ରୀହୀନା ଉତ୍କଳ ଭୂମି ନବ୍ୟ ଶିକ୍ଷିତ ଉତ୍କଳ ସନ୍ତାନଙ୍କଠାରୁ ବହୁ କିଛି ପାଇପାରିବ ଏ ଆଶା ସେ ବରାବର ପୋଷଣ କରିଥିଲେ । "ଦେଖିଲି, କଲିକତାସ୍ଥ କେତେ ଗୁଡ଼ିଏ ଉତ୍କଳୀୟ ଯୁବକଙ୍କର ଫଟୋ ଖଣ୍ଡିଏ ସେ ନିଜର ପଠନାଳୟରେ ରଖିଅଛନ୍ତି ଏବଂ ଶୁଣିଲି, ସେ ସର୍ବଦା ଫଟୋ ଖଣ୍ଡିକୁ ଅନାଇ ଯିକିଏ ନୂତନ ଆଶା ପାନ୍ତି । (୫) ପଣ୍ଡିତ ନୀଳକଣ୍ଠଙ୍କ ଭାଷାରେ; "ସେ ଥିଲେ ଏକ ଆଶା ଓ ବିଶ୍ୱାସର ଅବତାର । ଆମ୍ଭମାନଙ୍କୁ ଦେଖିଲେ ଭବିଷ୍ୟତର କଳ୍ପନା ତାଙ୍କୁ ବୃଦ୍ଧ ବୟସରେ ମଧ୍ୟ ଜୀବନ୍ତ ପ୍ରେରଣା ପ୍ରାଣିତ କରୁଥିଲା । ଆମ୍ଭମାନଙ୍କଠାରେ ସେ ଯେଉଁ ଭବିଷ୍ୟତ ଦେଖି ଏକାବେଳେକେ ଆତ୍ମବିସ୍ମୃତ ହୋଇ ଯାଇଥିଲେ, ସେଥିରେ କୌଣସି ପ୍ରକାର କୃତିମତା ନଥିଲା, ଥିଲା ତାଙ୍କ ନିଜ ଜୀବନ ଇତିହାସର ଜୀବନ୍ତ ଓ ଉଜ୍ଜ୍ୱଳ ଭୂମିକା । (୬)

ଫକୀରମୋହନ ଏହି ଉତ୍କଳର ସନ୍ତାନମାନଙ୍କୁ ଉତ୍କଳ ହିତୈଷୀ ଭାବରେ ଯେତିକି ଶ୍ରଦ୍ଧା କରୁଥିଲେ, ତା'ଠାରୁ ବଳି ସନ୍ତାନ ବା ପୁତ୍ର ତୁଲ୍ୟ ସ୍ନେହ କରୁଥିଲେ । କାରଣ ପ୍ରତ୍ୟେକ ବୃଦ୍ଧପିତାର ଶେଷ ଅସହାୟ ଜୀବନ ସମ୍ପୂର୍ଣ୍ଣ ନିର୍ଭର କରେ ପୁତ୍ରର ସ୍ନେହ, ଯତ୍ନ ଓ ଶୁଶ୍ରୁଷା ଉପରେ । ଫକୀରମୋହନଙ୍କ ଜୀବନରେ ଏହାର ପ୍ରଧାନ ଅଭାବ ଘଟିଥିଲା । ନିଜର ପ୍ରଥମପୁତ୍ର (ମନମୋହନ) ଏବଂ ସ୍ତ୍ରୀ କୃଷ୍ଣାକୁମାରୀଙ୍କ ବିୟୋଗରେ ସେ ଯେତିକି ଭାଙ୍ଗିପଡ଼ିଥିଲେ ତା'ଠାରୁ ନିଜ ଦ୍ୱିତୀୟ ପୁତ୍ର ମୋହିନୀମୋହନଙ୍କର ଇଂରେଜୀ ଭୃଷ୍ଟି ପ୍ରତିମ ନିଷ୍ଠୁର କ୍ରୁର ମନୋଭାବ ଓ କାର୍ଯ୍ୟ ତାଙ୍କର ଅନ୍ତିମ ଅସହାୟ ଜୀବନକୁ ଅଧିକ ଅଶ୍ରୁସିକ୍ତ ଓ କରୁଣାର୍ଦ୍ର କରିଥିଲା । ଅବଶ୍ୟ ସେନାପତି ଏସବୁ ଦୁଃଖ ଯନ୍ତ୍ରଣା ଅପମୋଦନ ପାଇଁ ଲେଖନୀକୁ ଅବଶିଷ୍ଟ ଜୀବନର ଏକମାତ୍ର ଶାନ୍ତିପ୍ରଦ ଆଶ୍ରୟ ଭାବରେ ଗ୍ରହଣ କରି ନେଇଥିଲେ ଏବଂ ସାହିତ୍ୟ କ୍ଷେତ୍ରରେ ନୂତନ ନୂତନ ଦିଗ୍‌ଦର୍ଶନ ଦେଇ ସ୍ୱୀୟ ଜୀବନ ବର୍ତ୍ତିବାକୁ ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର କରିବାରେ ପ୍ରୟାସୀ ହୋଇଥିଲେ । ପୁତ୍ର ମୋହିନୀମୋହନ ର ପିତା ପ୍ରତି ଅନେକ କ୍ଷେତ୍ରରେ କର୍ତ୍ତବ୍ୟହୀନତା, ଅବହେଳା କବିଙ୍କ ସମସ୍ତ ଆଶା ଓ ଆଶ୍ୱାସନା ଜୀବନ ବର୍ତ୍ତିବାକୁ କ୍ଷୀଣରୁ କ୍ଷୀଣତର କରି ଦେଇଥିଲା, ଏକଥା ତାଙ୍କ ଜୀବନ ଲିପି ତଥା ବିଭିନ୍ନ ରଚନାରୁ ସ୍ପଷ୍ଟ ହୋଇଥାଏ । "ଚିରଦିନ ଏକାକୀ ରହିବା ମୋ ଭାଗ୍ୟ ଲିପିରେ

ଲେଖାଅଛି । ବାଲ୍ୟକାଳରେ ପିତୃମାତୃହୀନ ଥିଲି ଯୌବନରେ ପତ୍ନୀ ବିରହିତ ହୋଇ ଦୂରଦେଶରେ ଥିଲି । ଏବେ ବାର୍ଦ୍ଧକ୍ୟରେ ସୁଦ୍ଧା ସନ୍ତାନଠାରୁ ବିଛିନ୍ନ ହୋଇ ନିର୍ଜନ ବାସ କରୁଅଛି ।" (୭) କେବଳ ଆତ୍ମଜୀବନୀରୁ ନୁହେଁ ତାଙ୍କ ସହିତ ଅନ୍ୟମାନଙ୍କ ସମ୍ପର୍କ ଅନୁଭୂତିରୁ ମଧ୍ୟ ଏକଥା ଆହୁରି ସ୍ପଷ୍ଟ ହୋଇଉଠେ । "ଆସିଲବେଳେ ସେ ଆମ୍ଭମାନଙ୍କୁ ଅନେକ ଆଉଁସିଲେ, ଅନେକ ଆର୍ଶୀବାଦ କଲେ, କୁଣ୍ଢାଇ ପକାଇଲେ । ସେ କଥା ଦେଖି ମୋ ମୁଖରୁ ଆଉ ବଚନ ବାହାରିଲା ନାହିଁ । କ'ଣ କହିବାକୁ ଇଛା ହେଉଥିଲା । ତୁନି ହୋଇ ରହିଲି ।" (୮) ଏହା ୧୯୧୨ ମସିହା କଥା । ଯେତେବେଳେ କି ଛାତ୍ର ଗୋଦାବରୀଶ ମିଶ୍ର ପାର୍ବଣ ଅବକାଶରେ କଲିକତାରୁ ଫେରିଲାବେଳେ କବିଙ୍କ ଗୃହରେ ରହି ଅତିଥି ହୋଇଥିଲେ । ଅନ୍ୟ ଏକ ଘଟଣା ୧୯୧୭ ମସିହା କଥା । ଫକୀରମୋହନ ସତ୍ୟବାଦୀ ବନ ବିଦ୍ୟାଳୟ ପରିଦର୍ଶନ ଉଦ୍ଦେଶ୍ୟରେ ଯାଇ ସେଠାରେ ତିନିଦିନ ରହଣି ମଧ୍ୟରେ କି ଛାତ୍ର କି ଶିକ୍ଷକ (ଗୋପବନ୍ଧୁ, ନୀଳକଣ୍ଠ, କୃପାସିନ୍ଧୁ, ଆଚାର୍ଯ୍ୟ ହରିହର, ଗୋଦାବରୀଶ) ସମସ୍ତଙ୍କୁ ସ୍ନେହ ମମତା ବନ୍ଧନରେ ଏପରି ନିଜର କରିପାରିଥିଲେ ଯେ ତାଙ୍କ ବିଦାୟ ବେଳେ ବହୁ ଆଖି ଅଶ୍ରୁ ଛଳଛଳରେ ସିକ୍ତ ହୋଇ ଉଠିଥିଲା । "ସେ ମଧ୍ୟ ନିଜେ ଆଖି ଛଳଛଳ କରି ପକାଇଲେ । ନିଜର କୌଣସି ଅତ୍ୟନ୍ତ ଅନ୍ତରଙ୍ଗ ବନ୍ଧୁଙ୍କଠାରୁ ବିଦାୟ ନେଲାପରି ଆମ୍ଭମାନଙ୍କୁ ବୋଧ ହେଲା । ଫକୀରମୋହନ ଆଖି ଛଳଛଳ କରି ଚାଲିଗଲେ, ମାତ୍ର ଗାଡ଼ି ଅଦୃଶ୍ୟ ହେବାପର୍ଯ୍ୟନ୍ତ ସେ ମୁହଁ କାଢ଼ି ଆମମାନଙ୍କ ଆଡ଼କୁ ଚାହିଁ ରହିଥିବାର ଆମେ ଦେଖିଥିଲୁ । ଗାଡ଼ି ବାଙ୍କରୁ ଅଦୃଶ୍ୟ ହୋଇଗଲା ପରେ ଆମେମାନେ ଲୁହପୋଛି ବିଦ୍ୟାଳୟକୁ ଫେରିଲୁ ।"(୯)

ଗୁମାସ୍ତା ଶ୍ରୀକଣ୍ଠ, ମାଳିବାଲୁ, ପୂଜାରୀ ଲିଙ୍ଗରାଜ ଓ ପୋଇଲି କେତକୀ ପ୍ରଭୃତି ପରିଚାରକ ପରିଚାରିକାଙ୍କୁ ଛାଡ଼ିଦେଲେ ଘର ମଧ୍ୟରେ ସେନାପତିଙ୍କ ଅବଶିଷ୍ଟ ସମୟ ନିଃସଙ୍ଗତା ଭାବରେ କଟିଯାଉଥିଲା । ଅନ୍ତିମ ବୟସରେ ଏହି ନିଃସଙ୍ଗତା ଅପମୋଦନ ତାଙ୍କ ପାଇଁ ଅତ୍ୟନ୍ତ ଦୁରୁହକର ହୋଇଉଠିଥିଲା । ଯେଉଁଥିପାଇଁ ସେ ଅଧିକାଂଶ ସମୟ ଲେଖାଲେଖି, ସୁଖାଳାପ,ପଡ଼ୋଶୀ ଘରମାନଙ୍କୁ ଭ୍ରମଣ, ଉଦ୍ୟାନ ସେବା, ତଥା ପିଲାମାନଙ୍କ ସହିତ ଖେଳାଖେଳି କରିବାକୁ ବରଂ ଅଧିକ ସୁଖ ପାଉଥିଲେ । ବିଶେଷ କରି ପଲ୍ଲୀକବି ନନ୍ଦକିଶୋର ବଳ ୧୯୧୨ ମସିହାରେ ବାଲେଶ୍ୱର ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ଥିବା କାଳୀନ ତାଙ୍କ ସହିତ ଫକୀରମୋହନଙ୍କର ଅଧିକାଂଶ ସନ୍ଧ୍ୟା

ଆସର ଉତ୍କଳ ସାହିତ୍ୟ ଆଲୋଚନାରେ କଟି ଯାଉଥିଲା । "ଆମ୍ଭେମାନେ ଏକ ସଙ୍ଗରେ ଥିବା ସମୟରେ ଅନେକ ଗଳ୍ପ ଓ କବିତା ରଚନା କରିଅଛୁ । କିଛିକାଳ ମୋ ସହିତ ରହି ନନ୍ଦକିଶୋର ବାବୁ ଅନ୍ୟତ୍ର ଚାଲିଗଲେ । ସେ ପ୍ରକାର ପବିତ୍ର ଓ ସୁଖମୟ ନୈଶମିଳନ ମୋ ଆଦୃଷ୍ଟରେ ଆଉ ଘଟିବ ନାହିଁ । ଉଭୟେ ସାହିତ୍ୟ ଚର୍ଚ୍ଚାରେ ଲାଗି ରହିଥାଉଁ । ଉଭୟଙ୍କର କାମନା ମାତୃଭାଷାର ଉନ୍ନତି" (୧୦)

ଯେତେ ଅପରିଚିତ ହୁଅନ୍ତୁ ପଛେ ତାଙ୍କ ସ୍ନେହବୋଳା ଓ ହୃଦୟ ଖୋଲା କଥାବାର୍ତ୍ତାରେ ସେ ଅପରକୁ ଆପଣାର କରିପାରୁଥିଲେ । ତାଙ୍କ ସହିତ ଥରଟିଏ ମାତ୍ର କଥାବାର୍ତ୍ତାରେ ଯେ ତାଙ୍କ ସ୍ନେହ ମୂର୍ତ୍ତି ଦେଖିଛି ସେ କେବେ ହେଲେ ତାଙ୍କୁ ଭୁଲିପାରି ନାହାନ୍ତି । "କାହିଁକି ସେନାପତିଙ୍କୁ ଦେଖିଲାକ୍ଷଣି ମୋ ମନରେ ଅପୂର୍ବ ଆନନ୍ଦଧାରା ପ୍ରବାହିତ ହେବାକୁ ଲାଗିଲା । ତାଙ୍କ ପାଖ ଛାଡ଼ି ଆସିବାକୁ ଇଚ୍ଛା ହେଲା ନାହିଁ । ସେ ମଧୁର ସଂଯୋଗ ଆଉ କେବେ ଘଟିବ କିଏ ଜାଣେ ? କିନ୍ତୁ ସେ ସ୍ମୃତି ମନରୁ ଆଉ ପୋଛିହେବ ନାହିଁ । ସେ ମଧୁର ଆଳାପ, ସେ ସ୍ନହମୟ ଦୃଷ୍ଟି, ସେ ଶିଶୁସୁଲଭ ହାସ୍ୟ ପାସୋରିବାର ଦ୍ରବ୍ୟ ନୁହେଁ । ତାଙ୍କରି ବଚନରେ, ହାସ୍ୟରେ, ଖେଦରେ ମୁଁ କେବଳ ଦୟାର ସ୍ରୋତ, ପ୍ରେମର ପ୍ରବାହ ଦେଖିଥିଲି ।" (୧୧) ଯେଉଁଥି ପାଇଁ ଉତ୍କଳ ବନ୍ଧୁ ଗୋପବନ୍ଧୁ ଦାସ ୧୯୧୫ ମସିହାରେ କଲିକତାରୁ ଫେରିବା ଅଭିମୁଖେ ଦୁଇଦିନ ପାଇଁ କବିଙ୍କ ଗୃହରେ ଆତିଥ୍ୟ ଗ୍ରହଣ କରିଥିଲେ ଏବଂ ତାଙ୍କ ଅସହାୟ ଜୀବନର ପ୍ରକୃତ ଅବସ୍ଥା ଦେଖି ବିଦାୟ ଅବସରରେ ନୟନ ଯୁଗଳରୁ ଅବିରତ ଅଶ୍ରୁଧାରା ବୁହାଇଥିଲେ । ଏଥିରେ କବି ଯେପରି ପ୍ରଚୁର ଜୀବନୀଶକ୍ତିର ସନ୍ଧାନ ପାଇଥିଲେ ଏବଂ ପାଇଥିଲେ ଅଶେଷ ଆତ୍ମସାନ୍ତ୍ୱନା, ଯାହା ସେ ନିଜେ ଆତ୍ମ ଜୀବନୀରେ ଲେଖିଛନ୍ତି, "ଦେଶବାସୀମାନଙ୍କର ଏହି ପ୍ରକାର ସହାନୁଭୂତି ମୋହର ଶେଷ ଜୀବନର ସାନ୍ତ୍ୱନା" (୧୨) ଫକୀରମୋହନଙ୍କ ପରି ଜଣେ କର୍ମବୀର ଦେଶ ହିତୈଷୀ ସାରସ୍ୱତ ସାଧକଙ୍କୁ ଜନ୍ମଦେଇ ଉତ୍କଳ ଭୂମି ବହୁକିଛି ଯାଇପାରିଛି । ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନଠାରୁ ଓଡ଼ିଆ ସାହିତ୍ୟର ସର୍ବାଙ୍ଗୀନ ଉନ୍ନତି କ୍ଷେତ୍ରରେ ଯାହାଙ୍କର କୀର୍ତ୍ତି ଅମର ଲେଖନୀରେ ଲିପିବଦ୍ଧ ହୋଇଛି । ବାସ୍ତବିକ୍ "ଉତ୍କଳ ଭୂମିର ଏପରି ଭକ୍ତ ଉତ୍କଳରେ ବଡ଼ ବିରଳ । ଭାଷାନ୍ତରର ଉତ୍ପୀଡ଼ନରେ ଉତ୍କଳ ଭାଷା ଯେତେବେଳେ ଉତ୍କଳରୁ ବିତାଡ଼ିତ ହେଉଥିଲା, ସେନାପତି ସେତେବେଳଠାରୁ ନିଜର ଅଂଶ ଜାତୀୟ ଯଜ୍ଞରେ ପ୍ରଦାନ କରି ଅଛନ୍ତି । ସେନାପତି ନବୀନ ସାହିତ୍ୟର

ପିତା । ସେଥିପାଇଁ ସେ ଉତ୍କଳରେ ଦେବତା ସ୍ୱରୂପ ପୂଜନୀୟ ।" (୧୩)

ଫକୀରମୋହନଙ୍କ ସ୍ୱହସ୍ତ ବର୍ଦ୍ଧିତ ପ୍ରିୟ ଉଦ୍ୟାନଟି ତାଙ୍କର ଅତି ଆଦରର କୋଟିନିଧି ଥିଲା । ସେ ଏହାର ନାମ ରଖିଥିଲେ 'ଶାନ୍ତିକାନନ' । ଏହି ଶାନ୍ତିକାନନର ମନୋରମ ପ୍ରକୃତି କୋଳରେ ବସି ଅଧିକାଂଶ ସମୟରେ ସାହିତ୍ୟ ରଚନା କରୁଥିଲେ । ଯାହାକି ତାଙ୍କ ଅତୀତ ଓ ବର୍ତ୍ତମାନର ଦୁଃଖ ଯନ୍ତ୍ରଣା ରାଶିକୁ ଲାଘବ କରିବା ସଙ୍ଗେସଙ୍ଗେ ତାଙ୍କୁ ଯଥେଷ୍ଟ ଚିରଶାନ୍ତି ପ୍ରଦାନ କରିଥିଲା । କବି ନିଜେ ତାଙ୍କ କବିତାର ଭାବମୂର୍ତ୍ତି । "କବିଙ୍କର କବିତା ପ୍ରତିମୂର୍ତ୍ତି ମୁଁ ତାଙ୍କର ଅବୟବରେ, ଚଳନରେ, ବଚନରେ, ହାସ୍ୟରେ, ନୟନ ଭଙ୍ଗିରେ ଉପଲବ୍ଧି କଲି । xxx ସେନାପତିଙ୍କ କବିତାର ପ୍ରତ୍ୟେକ ପଂକ୍ତିରେ ମୁଁ ଯେଉଁ ଦୟାର କଣା ଅନୁଭବ କରିଥିଲି, ତାଙ୍କ ସ୍ୱଭାବରେ ତାହା ନିରବଚ୍ଛିନ୍ନ ଭାବରେ ରହିଅଛି ।" (୧୪) ଫକୀରମୋହନ ବୃଦ୍ଧ ଅବସ୍ଥାରେ ଶିଶୁ ସୁଲଭ ଗୁଣର ବିଶେଷ ବିକାଶ ଘଟିଥିଲା । ସେ ଯଦି ଓ ପକ୍ୱରାଶି ସମ୍ପନ୍ନ ବୟବୃଦ୍ଧ କିନ୍ତୁ ମନଟି ଥିଲା ସମ୍ପୂର୍ଣ୍ଣ ଶିଶୁପରି । ତାଙ୍କ ଉଆସ ସମ୍ମୁଖରେ ପ୍ରତି ଉପରବେଳା ଅନୁଷ୍ଠିତ 'ହିଗିଡ଼ି' ଦାଣ୍ଡି ଖେଳରେ ସେ ଜଣେ ଥିଲେ ନିୟମିତ ଖେଳାଳି । ପିଲାମାନେ ଖେଳିବା ଉଦ୍ଦେଶ୍ୟରେ ଦଳବାନ୍ଧି ତାଙ୍କ ଉଆସରେ ପହଞ୍ଚିଗଲେ ସେ ଗୁମାସ୍ତା ଶ୍ରୀକଣ୍ଠକୁ ଡାକି ବଗିଚାର ପାଚିଲା ଆମ୍ବ, ପଣସ, ସପେଟା, ଅମୃତଭଣ୍ଡା, ସପୁରି ଆଦି ଫଳ ଯେତେବେଳେ ଯାହାଥାଏ ପିଲାମାନଙ୍କୁ ଖାଇବାକୁ ଦିଅନ୍ତି । ସେନାପତି ପିଲାଙ୍କୁ ପୁତ୍ର ନାତିତୁଲ୍ୟ ଯେଭଳି ସ୍ନେହ କରୁଥିଲେ ସେମାନଙ୍କ ସହିତ ମିଶି ଖେଳ କୌତୂହଳରେ କଟାଇ ଦେବାକୁ ତତୋଧିକ ସୁଖ ପାଉଥିଲେ । ସତ୍ୟବାଦୀ ବନବିଦ୍ୟାଳୟ ପରିଦର୍ଶନକୁ ଯାଇ ପିଲାମାନଙ୍କ ସହିତ ହାଡୁଡୁ, ମୁକୁଟ ବିଜୟ ଇତ୍ୟାଦି ଶାରୀରିକ ସଂସ୍କୃତ ଶ୍ଳୋକାବୃତ୍ତି, ଓଡ଼ିଆ ପଦ୍ୟାବୃତ୍ତି ସହିତ-ମାନସିକ ଖେଳରେ ଶିଶୁମାନଙ୍କ ଗହଣରେ ସେ ମିଶି ଏକାକାର ହୋଇ ଯାଉଥିଲେ । କେବଳ ଏତିକି ନୁହେଁ ସେମାନଙ୍କ ସହିତ ବସି ପଙ୍‌କ୍ତି ଭୋଜନ କରିବା ଏବଂ ସେମାନଙ୍କ ପରି ନଜେ ନିଜ ବାସନ ଧୋଇବାକୁ ମଧ୍ୟ ବାଦଦେଇ ନଥିଲେ । ସତ୍ୟବାଦୀ ବନବିଦ୍ୟାଳୟର ତିନିଦିନ ରହଣି ମଧ୍ୟରେ "ସେ ଗୋଟିଏ ପିଲା ପାଲଟି ଯାଇଥିଲେ । ପିଲାଙ୍କ ସଂଗେ ହାଡୁଡୁ ଖେଳିବାକୁ ସୁଦ୍ଧା ଭୁଲିଲେ ନାହିଁ ।" (୧୫) ଶିଶୁପରି ତାଙ୍କର ମନଟି ସର୍ବଦା ଥିଲା ସ୍ୱଚ୍ଛ ସରଳ, ନିଷ୍ପାପ ଓ କୋମଳ ।

ଅତଏବ୍ ଉତ୍କଳ ଭୂମିରେ ଫକୀରମୋହନଙ୍କର ଜନ୍ମ ଏକ ଶୁଭ ମୁହୂର୍ତ୍ତରେ ଘଟିଥିଲା । ଏହାଙ୍କ ଆଜୀବନ ନିରଳସ ଉଦ୍ୟମ ଓ ସାଧନାର ଫଳପାଇଁ "ଆଧୁନିକ ଉତ୍କଳର ସାହିତ୍ୟ-ସରିତ୍ ବାଲେଶ୍ୱରରୁ ଜନ୍ମ ଲଭି ସମସ୍ତ ଉତ୍କଳ ଭୂମିକୁ ପ୍ଲାବିତ କରିଅଛି । x x ଏହାଠାରୁ ବଳି ଆଉ କି ଅଧିକ ଜାତୀୟ ରତ୍ନ ଗୋଟିଏ କ୍ଷୁଦ୍ର ଭୂଖଣ୍ଡରେ ରହିପାରେ ?" (୧୬) ଏହି ବାଲେଶ୍ୱର ମାଟିରେ ପୃଥିବୀ ବିଖ୍ୟାତ ଟୀକାର ପଣ୍ଡିତ ଶ୍ରୀଧରସ୍ୱାମୀ, ବଳଦେବ ବିଦ୍ୟାଭୂଷଣ, ରୀତିକବି ଦୀନକୃଷ୍ଣ ଦାସ ଏବଂ ପରବର୍ତ୍ତୀ କାଳରେ ବ୍ୟାସକବି ଫକୀରମୋହନ,କବିବର ରାଧାନାଥ ରାୟ, ଚନ୍ଦ୍ରମୋହନ ମହାରଣା ତଥା ବହୁ କବି, ଗାଳ୍ପିକ, ଔପନ୍ୟାସିକ, ନାଟ୍ୟକାର, ସାହିତ୍ୟ ସମାଲୋଚକ ଜନ୍ମ ଗ୍ରହଣ କରି ଓଡ଼ିଆ ଭାଷାସାହିତ୍ୟର ଶ୍ରୀବୃଦ୍ଧି ଓ ସମୃଦ୍ଧି କଳ୍ପେ ସାଧନାପୂତ ତପସ୍ୱୀ ଜୀବନକୁ ଅଚିରେ ବରଣ କରି ନେଇଛନ୍ତି ।

## ପାଦଟୀକା

୧. ଉତ୍କଳ ସାହିତ୍ୟ ୧୫ ଭାଗ/୬ଷ୍ଠସଂଖ୍ୟା ପୃ-୧୭୦

୨. ଉତ୍କଳ ସାହିତ୍ୟ ୧୫ ଭାଗ/୬ଷ୍ଠସଂଖ୍ୟା ପୃ-୧୬୯

୩. ଫକୀରମୋହନ ପରିକ୍ରମା - ଫକୀରମୋହନ ସାହିତ୍ୟ ପରିଷଦ ପ୍ରକାଶିତ (ଜୀବନୀ ଅଂଶ) ପୃ-୯

୪. ଫକୀରମୋହନ ପରିକ୍ରମା-ଫକୀରମୋହନ ସାହିତ୍ୟ ପରିଷଦ ପ୍ରକାଶିତ (ସାହିତ୍ୟ ସମୀକ୍ଷା) ପୃ-୧

୫. ଉତ୍କଳ ସାହିତ୍ୟ- ୧୫। ଭାଗ ୬ଷ୍ଠ ସଂଖ୍ୟା- ପୃ ୧୬୯

୬.ଫକୀରମୋହନ ପରିକ୍ରମା- ଫକୀରମୋହନ ସାହିତ୍ୟ ପରିଷଦ ପ୍ରକାଶିତ (ସାହିତ୍ୟ ସମୀକ୍ଷା) ପୃ-୧

୭. ଆତ୍ମ ଜୀବନ ଚରିତ- ଫକୀରମୋହନ ସେନାପତି (ନିଉ ଷ୍ଟୁଡେଣ୍ଟ ଷ୍ଟୋର ପ୍ରକାଶିତ) ପୃ ୧୭୦

୮. ଉତ୍କଳ ସାହିତ୍ୟ-୧୫ ଭାଗ୍ । ୬ଷ୍ଠ ସଂଖ୍ୟା - ପୃ -୧୬୯

୯. ଫକୀରମୋହନ ପରିକ୍ରମା - ଫକୀରମୋହନ ସାହିତ୍ୟ ପରିଷଦ ପ୍ରକାଶିତ

(ଜୀବନୀ ଅଂଶ). ପୃ-୫
୧୦. ଆତ୍ମ ଜୀବନ ଚରିତ- ଫକୀରମୋହନ ସେନାପତି (ନିଉ ଷ୍ଟୁଡେଣ୍ଟ ଷ୍ଟୋର ପ୍ରକାଶିତ) ପୃ -୧୭୧
୧୧. ଉତ୍କଳ ସାହିତ୍ୟ-୧୫ ଭାଗ । ୫ମ ସଂଖ୍ୟା - ପୃ -୧୬୯
୧୨. ଆତ୍ମ ଜୀବନ ଚରିତ- ଫକୀରମୋହନ ସେନାପତି (ନିଉ ଷ୍ଟୁଡେଣ୍ଟ ଷ୍ଟୋର ପ୍ରକାଶିତ) ପୃ -୧୭୪
୧୩. ଉତ୍କଳ ସାହିତ୍ୟ-୧୫ ଭାଗ । ୫ମ ସଂଖ୍ୟା - ପୃ -୧୬୯
୧୪. ଉତ୍କଳ ସାହିତ୍ୟ-୧୫ ଭାଗ । ୫ମ ସଂଖ୍ୟା - ପୃ -୧୬୯
୧୫. ଫକୀରମୋହନ ପରିକ୍ରମା - ଫକୀରମୋହନ ସାହିତ୍ୟ ପରିଷଦ ପ୍ରକାଶିତ (ଜୀବନୀ ଅଂଶ) ପୃ-୨
୧୬. ଉତ୍କଳ ସାହିତ୍ୟ-୧୫ ଭାଗ । ୬ଷ୍ଠ ସଂଖ୍ୟା - ପୃ -୧୬୯



# ଫକୀରମୋହନ ଓ 'ଶାନ୍ତିକାନନ'

"ଫକୀରମୋହନ ଏକଟା କବି ଛିଲ, ତାର ଆବାର ଏକଟା ସ୍ମୃତି !"- ସେଇ କଥାଟା ଏପର୍ଯ୍ୟନ୍ତ ମୋ କାନରେ ବାଜୁଛି । ଶାନ୍ତିକାନନ ଜାତୀୟ ସ୍ମୃତିପୀଠରେ ପରିଣତ ନହୋଇ ଏବେ ମଧ୍ୟ ଅଶାନ୍ତିର ଦୀର୍ଘନିଶ୍ୱାସ ତ୍ୟାଗ କରୁଛି ।" (୧)

ପ୍ରାବନ୍ଧିକ ଆଜି ଆଉ ଇହଧାମରେ ନାହାନ୍ତି ସତ କିନ୍ତୁ ତାଙ୍କର ଏହି ଦୁଃଖ ଓ କ୍ଷୋଭଜନିତ ଉକ୍ତିଟି ଏ ଦେଶର ବର୍ତ୍ତମାନ ତଥା ଆଗାମୀ ବଂଶଧର ମନରେ ଏକ ପ୍ରକାର ବେଦନା-ବିକ୍ଷତ ଚେତନା ସୃଷ୍ଟି କରିଥାଏ । ଅବଶ୍ୟ ଓଡ଼ିଆ ଭାଷା ସାହିତ୍ୟର ପ୍ରାଣପିଣ୍ଡରେ ଫକୀରମୋହନଙ୍କ ଗୁରୁତ୍ୱ ଯେଉଁମାନେ ପ୍ରକୃତରେ ଉପଲବ୍ଧି କରିଛନ୍ତି, ସେମାନେ ତାଙ୍କର ଯଥାର୍ଥ ତାତ୍ପର୍ଯ୍ୟ ଅନୁଭବ କରନ୍ତି ।

ଉନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଓ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ଥିଲା ଆଧୁନିକ ଓଡ଼ିଆ ଜାତୀୟ ସାହିତ୍ୟ ପ୍ରତି ଏକ ସଙ୍କଟାପନ୍ନ ସମୟ । ବାଲେଶ୍ୱରରେ ମାତୃଭାଷା ବିଲୋପ ପାଇଁ ଚାଲିଥିବା ଚକ୍ରାନ୍ତ ଫକୀରମୋହନଙ୍କୁ ଅଶେଷ ଦୁଃଖ ଦେଇଥିବା ସ୍ୱାଭାବିକ, କାରଣ, "ଓଡ଼ିଆ ଜାତୀୟ ଜୀବନର ଘୋର ସଙ୍କଟମୟ ମୁହୂର୍ତ୍ତରେ ତାଙ୍କର ଆବିର୍ଭାବ । ଏହି ଘୋର ଅନ୍ଧତମସାଚ୍ଛନ୍ନ ଦୁର୍ଦ୍ଦିନରେ ନିର୍ବାତନିଷ୍କମ୍ପ ଦୀପଶିଖାଭଳି ସେ ଓଡ଼ିଆ ଜାତିକୁ ବାଟ ଦେଖାଇଛନ୍ତି । ହୃଦୟର ପ୍ରତିରକ୍ତ ବିନ୍ଦୁ ଢାଳି ଏ ଜାତିର ପ୍ରାଣ ଶକ୍ତିକୁ ସଂଜୀବିତ କରି ଏ ଜାତିର ଭାଷା, ସଂସ୍କୃତି ଓ ସମ୍ମାନକୁ ମରଣ ମୁହଁରୁ ଟାଣି ଆଣିଛନ୍ତି । ଓଡ଼ିଆ ଦେଶ, ଓଡ଼ିଆ ଭାଷାକୁ ଉନ୍ନତ କରିବା ଲାଗି ଶିକ୍ଷା, ସଭ୍ୟତା, ସଂସ୍କୃତି ପଥରେ ଅଗ୍ରଗାମୀ କରିବା ଲାଗି ପ୍ରେରଣା ଦେଇଛନ୍ତି ।" (୨)

ତତ୍‌କାଳୀନ ବାଲେଶ୍ୱର ଥିଲା ଓଡ଼ିଶାର ଜ୍ଞାନପୀଠ ଏବଂ ଏହି ପବିତ୍ର ଜ୍ଞାନପୀଠ ଥିଲା ରାଧା, ମଧୁ, ଫକୀରଙ୍କ ତ୍ରିବେଣୀ ସଂଗମସ୍ଥଳୀ । ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ, ଜନ ବୀମସ୍ ପ୍ରଭୃତିଙ୍କ ସାହଚର୍ଯ୍ୟ ଓଡ଼ିଆ ଭାଷାର ଅସ୍ତିତ୍ୱ ସୁରକ୍ଷା

ଦିଗରେ ପ୍ରଥମ ସହାୟକ ହୋଇଥିଲା । ବାସ୍ତବିକ, "ଓଡ଼ିଆ ଭାଷାକୁ ଯଦି କେହି ଦେଶ-ବିଦେଶରେ ଏକ ସ୍ୱତନ୍ତ୍ର ଭାଷାରୂପେ ପରିଚିତ କରାଇଥାନ୍ତି, ସେ ହେଲେ ମହାମନୀଷୀ ଜନ ବୀମସ୍" । (୩) ସବୁ ଦୃଷ୍ଟିରୁ ବିଚାର କଲେ "ଆଧୁନିକ ସାହିତ୍ୟ" ର ପ୍ରାଣ ପ୍ରତିଷ୍ଠା କରିଛନ୍ତି ଫକୀରମୋହନ । ତା' ସେ କରିଛନ୍ତି, ପ୍ରାଣଧାରାର ବିସ୍ତୀର୍ଣ୍ଣ ଓ ବହୁମୁଖୀ ପ୍ରକାଶ ଓ ପରିସର ଭିତରେ ।" (୪) ଯେଉଁ ମହାରଥୀ ଓଡ଼ିଆ ଜାତିକୁ ତାର ମୁଖଫୁଟା ପ୍ରାଣର ଭାଷା ଓ ସାହିତ୍ୟ ଆସ୍ୱାଦନ କରିବାର ସୁଯୋଗ ଦେଇପାରିଲା, ସେହି ଫକୀରମୋହନଙ୍କ ପବିତ୍ର ସ୍ମୃତି ସୌଧର ଆବଶ୍ୟକତା ଏ ଜାତି ପାଇଁ ଅଛି କି ନାହିଁ ତାହା ଆଜିର ଶିକ୍ଷିତ ସମାଜ ସ୍ଥିର କରିବେ ।

ପଚିଶ ବର୍ଷର ତରୁଣ ଫକୀରମୋହନ ଚକ୍ରାନ୍ତକାରୀ ବଙ୍ଗୀୟମାନଙ୍କ ହୀନ ଆକ୍ରମଣରୁ ସ୍ୱୀୟ ମାତୃଭାଷାକୁ ରକ୍ଷା କରିବା ପାଇଁ ଅକ୍ଳାନ୍ତ ଶ୍ରମ, ଚେଷ୍ଟା ଓ ପରିସ୍ଥିତିର ସମ୍ମୁଖୀନ ହେବାକୁ ହେଲେ ପ୍ରତିଜ୍ଞାବଦ୍ଧ । ଉତ୍କଳ ଭାଷା କହିଲେ ସେମାନେ ଯେଉଁ ହେୟ, ବିତସ୍ପୃହ ଦୃଷ୍ଟିରେ ଦେଖୁଥିଲେ, ତାହା ଉଲ୍ଲେଖ କରି କହିଛନ୍ତି, "ଉତ୍କଳ ଭାଷା ବିଷୟ ଉଲ୍ଲେଖ ସମୟରେ ବଂଗାଳି ଶିକ୍ଷକ ଓ ଅନ୍ୟାନ୍ୟ ବଂଗାଳୀ ବାବୁମାନେ ଯେପରି ତୁଚ୍ଛତାଚ୍ଛଲ୍ୟ ଭାବରେ ମନ୍ତବ୍ୟ ପ୍ରକାଶ କରିଥାନ୍ତି, ପ୍ରକୃତରେ ଆପଣାର ମାତାକୁ ଅପମାନ କଲାପରି ନିନ୍ଦାକାରିମାନଙ୍କ ପ୍ରତି ବିଷମ କ୍ରୋଧ ଏବଂ ପ୍ରାଣରେ ବଡ଼ ଆଘାତ ଲାଗେ ।" (ଫକୀରମୋହନ ଗ୍ରନ୍ଥାବଳୀ ପୃ:୮୮) (୫) ଯେଉଁ ଶିଶୁ ଚାହାଳୀ ଜୀବନରେ ତଥା ବାଲେଶ୍ୱର ବନ୍ଦରରେ ଅଝାଳ ସିଲାଇ ଓ ନିମକମାହାଲ କାର୍ଯ୍ୟ କଲାବେଳେ ଓଡ଼ିଆ ଭାଷା ସାହିତ୍ୟ ଓ ଓଡ଼ିଆ ଜାତି ର ବାସ୍ତବ ଅବସ୍ଥା କଥା ଭାବୁଥିଲା, ସେହି ଯୁବକ ଫକୀରମୋହନ ଯେ ଓଡ଼ିଆ ଭାଷାକୁ ନୂତନ ଜୀବନ୍ୟାସ ଦେବ, ଏ କଥା ବା ତତ୍କାଳୀନ କେତେଜଣ ବଙ୍ଗୀୟ କର୍ମଚାରୀ ବିଶ୍ୱାସ କରୁଥିଲେ ? ପରବର୍ତ୍ତୀକାଳୀନ ବାଲେଶ୍ୱର ଜିଲାସ୍କୁଲ ସଂସ୍କୃତ ପଣ୍ଡିତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କର "ଉଡ଼ିୟା ସ୍ୱତନ୍ତ୍ର ଭାଷା ନହେଁ" ପ୍ରକାଶିତ ପୁସ୍ତିକା ଫକୀରମୋହନଙ୍କୁ ଯେତିକି ବିଚଳିତ କରିଥିଲା, ସେତିକି ପରିମାଣରେ ଓଡ଼ିଆ ସାହିତ୍ୟର ପ୍ରାରମ୍ଭିକ ସ୍ତରର ସ୍କୁଲ ପାଠ୍ୟପୁସ୍ତକାଦି ନିର୍ମାଣ ଦିଗରେ ଦୃଢ଼ ପଦକ୍ଷେପ ନେବାର ପଥ ସୁଗମ ମଧ୍ୟ କରାଇଥିଲା । ଫକୀରମୋହନଙ୍କ ଦ୍ୱାରା ପ୍ରତିଷ୍ଠିତ ପି.ଏମ୍. ସେନାପତି ଏଣ୍ଡକୋ- 'ଉତ୍କଳ ପ୍ରେସ' (୧୮୬୮) ବାଲେଶ୍ୱର କାହିଁକି, ସମଗ୍ର ଉତ୍କଳରେ କଟକର

ଗୌରୀ ଶଙ୍କର ରାୟଙ୍କ ପ୍ରତିଷ୍ଠିତ ଦୀପିକା ପ୍ରେସ୍ (୧୮୬୬) ପରି ଓଡ଼ିଆ ଭାଷାର ଭାଗ୍ୟ ନିଅନ୍ତା ଥିଲା । ଫକୀରମୋହନଙ୍କ ସଂପାଦନାରେ ପ୍ରକାଶିତ 'ବୋଧଦାୟିନୀ ଓ 'ବାଲେଶ୍ୱର ସମ୍ବାଦ ବାହିକା' ପତ୍ରିକାର 'ବୋଧଦାୟିନୀ' ରେ ସାହିତ୍ୟ ଅଂଶ ଓ 'ସମ୍ବାଦ ବାହିକା'ରେ ବିବିଧ ସମ୍ବାଦ ପ୍ରକାଶ ପାଇବା ଫଳରେ ସାହିତ୍ୟ ବିଭାଗରେ ଅନେକ ନୂତନ ଲେଖକ ଗୋଷ୍ଠୀ ସୃଷ୍ଟି ହେବା ସଂଗେ ସଂଗେ ଓଡ଼ିଆ ଭାଷାର ପ୍ରାଚୀନତା, ବ୍ୟାପକ ପ୍ରସାରତା ଏବଂ ଏହାର ସୁରକ୍ଷା ସପକ୍ଷରେ ଜନମତ ସଂଘଟିତ କରିପାରିଥିଲା । ସେତେବେଳେ "ମୋ ପିତାମହ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ କବିଙ୍କର ସହକର୍ମୀ ଓ ଅନ୍ତରଙ୍ଗ ବନ୍ଧୁଥିଲେ । ଫକୀରମୋହନ ଓ ତାଙ୍କର ବନ୍ଧୁମାନଙ୍କ ଅକ୍ଲାନ୍ତ ଚେଷ୍ଟା ଫଳରେ ବାଲେଶ୍ୱରରେ ଓଡ଼ିଆ ଭାଷା ରହିପାରିଲା କାରଣ, ସେ ସମୟେରେ ସରକାରୀ ବଡ଼ କର୍ମଚାରୀ ମାନେ ବଙ୍ଗାଳୀଥିବାରୁ ବାଲେଶ୍ୱରରେ କଚେରୀ ଭାଷା ବଙ୍ଗଳା କରିଦେବାପାଇଁ ସେମାନେ ଅନେକ ଚେଷ୍ଟା କରିଥିଲେ । ମୋର ପିତାମହ ଏହି କାର୍ଯ୍ୟରେ ଅଗ୍ରଣୀ ଥିବାରୁ ଓ ସେ ସେସମୟର ଖବରକାଗଜ 'ସମ୍ବାଦ ବାହିକା'ର ସମ୍ପାଦକ ହିସାବରେ ଖବର କାଗଜରେ ଏଥିପାଇଁ ଲେଖାଲେଖି କରୁଥିଲେ । ଆମ ଘରେ ସେସମୟରେ ତିନିଥର ନିଆଁ ଲାଗିଲା ।" (୬) ସମୟର ବିଭିନ୍ନ ଝଡ଼ଝଞ୍ଜା ତଥା ପତିକୂଳତା ମଧଦେଇ ଓଡ଼ିଆ ଭାଷା, ସାହିତ୍ୟ ତା'ର ଆଜିର ଅସ୍ତିତ୍ୱ ଫେରି ପାଇଛି । ଉତ୍କଳ ପୁତ୍ର ଫକୀରମୋହନଙ୍କ ଅଭାବରେ ଓଡ଼ିଆ ଭାଷା ସାହିତ୍ୟ ସବୁଦିନ ପାଇଁ ସେହି ପ୍ରାଚୀନତାର ଡୋରି ମଧରେ ଆତ୍ମଗୋପନ କରିଥାନ୍ତା କି ବିଲୁପ୍ତ ହୁଅନ୍ତା ତାହା ଚିନ୍ତାର ବିଷୟ ହୋଇଥାନ୍ତା ।

ବାଲେଶ୍ୱର ଥିଲା କବିଙ୍କର ଜନ୍ମମୃତ୍ୟୁର ପବିତ୍ର ମିଳନପୀଠ । କବି ତାଙ୍କ ପ୍ରବାସୀ ଜୀବନକାଳ ମଧରେ ଆପଣା ଜନ୍ମମାଟିର ମମତାକୁ ଭୁଲିପାରି ନାହାନ୍ତି । ସେଥିପାଇଁ ସ୍ୱରଚିତ 'ଅବସର-ବାସରେ' ପୁସ୍ତକରେ ନିଜ ଜନ୍ମସ୍ଥାନ 'ମଲ୍ଲିକାଶପୁର' ଗ୍ରାମ ବିଷୟରେ ଏକ ଉଚ୍ଛ୍ୱସିତ ଓ ଆବେଗପୂର୍ଣ୍ଣ ବର୍ଣ୍ଣନା କରିଛନ୍ତି । ଜନ୍ମ ମାଟିର ଚିର ମମତା ସେ କେବେ ଭଲିପାରି ନାହାନ୍ତି । ତା'ର ଗଛିବନ, ନଦୀ ସାଗର, ଫୁଲଫଳ ପଶୁପକ୍ଷୀ, ପାଣିପବନ, ହାଟବାଟ, ସକାଳ ସନ୍ଧ୍ୟା ଓ ଚିହ୍ନା ଅଚିହ୍ନା ମିଣଷର ସ୍ମୃତି ତାଙ୍କୁ ବ୍ୟତିବ୍ୟସ୍ତ କରିପକାଇଛି । କବିଙ୍କ ଭାଷାରେ :

ସେ ଗ୍ରାମର ଦାଣ୍ଡେ ଅଛି ଯେଉଁ ବାଲି ଧୂଳି,
ପିଲାଖେଳ ବେଳେ ହେଉଥିଲି ଦେହେ ବୋଳି ।

\+ + +

ସେ ଫୁଲ ସୌରଭ କସି ଆମ୍ବର ମାଧୁରୀ,
ନ ପାଇଲି କାହିଁ ସାରା ଭାରତଟା ଘୂରି ।

\+ + +

ମୋ କାନକୁ ଶୁଭେ ତାହା ନାମ ସୁମଧୁର,
ସେ କ୍ଷୁଦ୍ର ଗ୍ରାମ ନାମ ମଲ୍ଲିକାଶପୁର ।

(ଅବସର ବାସରେ, ଫ. ଗ୍ରନ୍ଥାବଳୀ- ୨ୟ ସଂସ୍କରଣ ୧୯୬୩- କଟକ ଷ୍ଟୁଡେଣ୍ଟ ଷ୍ଟୋରର୍ସ, ପୃ - ୩୬୬)

ଆଜୀବନ ତାଙ୍କ ଅଭାବ କଷ୍ଟ, ଦୁଃଖ ଦୁର୍ଦ୍ଦଶା ଅଶାନ୍ତି ଓ ଅସ୍ଥିରତା ମଧ୍ୟରେ କଟିଥିଲା । "ନିରବଚ୍ଛିନ୍ନ ସ୍ୱାସ୍ଥ୍ୟ ଓ ସୁଖଭୋଗ କରିବା ମୋ ଭାଗ୍ୟରେ ନାହିଁ ।" (୭) "ଦାରିଦ୍ର୍ୟ ଓ ଅର୍ଥସ୍ୱାଚ୍ଛଲ୍ୟ, ସୁଖ୍ୟାତି ଓ ଅଖ୍ୟାତି, ସ୍ୱାସ୍ଥ୍ୟ ଓ ବ୍ୟାଧି ଯେମନ୍ତ ପାଳିକରି ମୋ ଉପରେ ପଡୁଅଛନ୍ତି ।"(୮) ସେଥିପାଇଁ ସେ କହିଛନ୍ତି- "ଚିରଦିନ ଏକାକୀ ରହିବା ମୋ ଭାଗ୍ୟ ଲପିରେ ଲେଖାଅଛି । ବାଲ୍ୟକାଳରେ ପିତୃମାତୃହୀନ ଥିଲି, ଯୌବନରେ ପତ୍ନୀ ବିରହ ହୋଇ ଦୂରଦେଶରେ ଥିଲି । ଏବେ ବାର୍ଦ୍ଧକ୍ୟରେ ସୁଧା ସନ୍ତାନଠାରୁ ବିଚ୍ଛିନ୍ନ ହୋଇ ନିର୍ଜନ ବାସ କରୁଅଛି ।"

୧୯୦୫ ମସିହାରେ ଫକୀରମୋହନଙ୍କ ପୁତ୍ର ମୋହନୀମୋହନ ସବ୍‌ଡେପୁଟି ହୋଇ ବାଲେଶ୍ୱର ଆସିଲେ । କବି ମଧ୍ୟ ତାଙ୍କ ସହିତ ବାଲେଶ୍ୱର ବାସଗୃହକୁ ଆସିଥିଲେ । କିଛି ଦିନପରେ ମୋହିନୀ ବାବୁ ପୁନଶ୍ଚ କଟକ ବଦଳି ହୋଇଗଲେ ମାତ୍ର କବି, ପୁତ୍ର ମୋହିନୀ ମୋହନଙ୍କ ସହିତ ଆଉ କଟକ ନଫେରି ଜନ୍ମମାଟିର ମାୟାବନ୍ଧନରେ ଆବଦ୍ଧ ହୋଇ ଶେଷ ଜୀବନତକ ବାଲେଶ୍ୱରରେ କଟାଇବାକୁ ସ୍ଥିର କଲେ । ଜୀବନରେ ନିଜର ବୋଲି ସମସ୍ତଙ୍କୁ ହରାଇ କବି ବର୍ତ୍ତମାନ ବାସ୍ତବ ଜୀବନରେ ଏକାନ୍ତ ଏକୁଟିଆ ହୋଇଗଲେ । ଏହି ଏକାକୀ ଜୀବନ ବରଂ କବିଙ୍କୁ ଅନେକାଂଶରେ ଚିରଶାନ୍ତି ଦେଇଥିଲା । କାରଣ, ନାସ୍ତିକ ପୁତ୍ର ମୋହିନୀମୋହନଙ୍କ ସହିତ ତାଙ୍କର ମଝିରେ ମଝିରେ ଭୂସମ୍ପତ୍ତି ବିକ୍ରୀ ଓ ଅନ୍ୟାନ୍ୟ କାରଣ ଜନିତ ମତପାର୍ଥକ୍ୟ ଘଟୁଥିଲା ।

ଫଳରେ ଉଭୟଙ୍କ ମଧ୍ୟରେ ଅନେକ ସମୟରେ ପାରିବାରିକ ଅଶାନ୍ତି ସୃଷ୍ଟି ହେଉଥିଲା । ସେଥିପାଇଁ ବୋଧହୁଏ ପୁଅ ପାଖରେ ନରହି ଆଜୀବନ ସେ ବାଲେଶ୍ୱର ବାସଗୃହରେ ରହିବାକୁ ଉଚିତ୍ ମନେକରିଥିଲେ । ଏପରିକି ଭୂସମ୍ପତ୍ତି ପାଇଁ ମୋହିନୀ ବାବୁ ବୃଦ୍ଧ ବାପାଙ୍କ ନାମରେ କଟକ କୋର୍ଟରେ ଦେୱାନୀ ମକଦ୍ଦମା କରିବାକୁ ମଧ୍ୟ ପଛାଇ ନଥିଲେ । "ମୋକଦ୍ଦମାର ପ୍ରତି ତାରିଖରେ କଟକ ଯିବା ପୂର୍ବରୁ କବି ଆମ ଘରକୁ ଆସି କାନ୍ଦନ୍ତି ଓ ଆମ୍ଭମାନଙ୍କୁ ଉପଦେଶ ଦିଅନ୍ତି ଯେ, କେବେହେଲେ ଯେପରି ଆମ୍ଭେମାନେ ବାପାଙ୍କ ମନରେ କଷ୍ଟ ନଦେଉଁ ।" (୧୦) "ଶେଷରେ ବାହାର ଲୋକେ ଓ ଓକିଲମାନେ ଶ୍ରୀ ଲକ୍ଷ୍ମୀନାରାୟଣ ପଟ୍ଟନାୟକ, ଶ୍ରୀ ବିଶ୍ୱନାଥ କର, ଶ୍ରୀ ବିଶ୍ୱନାଥ ସିଂହ ପ୍ରଭୃତି ମଝିରେ ପଶି ଜମି ସଂକ୍ରାନ୍ତ ମୋକଦ୍ଦମା ରଫା କରାଇଲେ ।" (୧୧) ବାପ ପୁଅ ମଧ୍ୟରେ ଆପୋଷ ବୁଝାମଣା ହେଲା । ଚାରିଅଣା ପଇସା ଅଭାବରୁ ଚାହାଳି ପଢ଼ା ବନ୍ଦକରି ଅସହାୟ ଶିଶୁ ଜୀବନ, କର୍ମବ୍ୟସ୍ତ କର୍ମମୟ ଜୀବନ, ଅଶାନ୍ତିପୂର୍ଣ୍ଣ ପାରିବାରିକ ଜୀବନ ମଧ୍ୟଦେଇ ତାଙ୍କୁ ଅନ୍ତିମ ଜୀବନର ଦୀପଶିଖା ଜାଳିବାକୁ ପଡ଼ିଥିଲା । କେବଳ ସେତିକି ନୁହେଁ, ତାଙ୍କର ଯୌବନାବସ୍ଥାରେ ପ୍ରାଣାଧିକ ଠାକୁର ମାଆ, ଜ୍ୟେଷ୍ଠ ପୁତ୍ରର ବିୟୋଗ, କର୍ମଜୀବନରୁ ଅବସର ବେଳେ ପ୍ରାଣପ୍ରିୟା ପତ୍ନୀ - କୃଷ୍ଣାକୁମାରୀଙ୍କର ମୃତ୍ୟୁ, ପାରିବାରିକ ଅଶାନ୍ତି ବେଳେ ବ୍ୟାଧିଜନିତ ଶାରିରୀକ ଅସୁସ୍ଥତା, ସବୁବେଳେ ତାଙ୍କ ମନକୁ ଅସ୍ଥିର କରବା ସଙ୍ଗେସଙ୍ଗେ ତାଙ୍କୁ ଆହୁରି ମରଣୋନ୍ମୁଖୀ କରି ପକାଉଥିଲା । କବିଙ୍କ ଶାନ୍ତିକାନନର ସୃଷ୍ଟି ମୂଳରେ ଥିଲା ମୁଖ୍ୟତଃ ଏହି ସବୁ ମାନସିକ ଅଶାନ୍ତି ।

'ଉଦ୍ୟାନ ପ୍ରୀତି କବିଙ୍କର ଅନ୍ୟ ଏକ ବିଶିଷ୍ଟ ଗୁଣ ଥିଲା । ପ୍ରତ୍ୟେହ ଉଦ୍ୟାନ କର୍ମ ଓ ସାହିତ୍ୟ ରଚନାରେ କବି ଅତୀତ ଜୀବନର ଦୁଃଖକୁ ପାସୋରିବା ସହିତ ମାନସିକ ଚିତ୍ତ ଶାନ୍ତି ଲାଭ କରୁଥିଲେ । କବିଙ୍କ ଭାଷାରେ :

"ରେ ଶାନ୍ତିକାନନ ମୋର ଜୀବନ ସମ୍ବଳ,
ନେତ୍ରତୃପ୍ତ ପ୍ରାଣାରାମ ବିଶ୍ରାମର ସ୍ଥଳ ।
ନନ୍ଦନ କାନନ ସ୍ୱର୍ଗେ ଶୁଣିଛି ପୁରାଣେ,
ତୋହର ମହିମା ମର୍ତ୍ତ୍ୟେ ଅନୁଭବେଁ ପ୍ରାଣେ ।
ମୋ ବିଶ୍ୱାସ, ରେ କାନନ ! ତୁହି ପୂତସ୍ଥାନ,

ଜାଗ୍ରତ କରାଉ ଭାବ ମହୋଚ୍ଚ ମହାନ୍ ।
ପ୍ରତ୍ୟୁଷ ପ୍ରଦୋଷେ କଲେ ଭ୍ରମଣ କାନନେ,
କି ଅପୂର୍ବ ଶାନ୍ତିରସ ଉପୁଜାଏ ମନେ ।
\+ + +
ପୂର୍ଣ୍ଣକର ମୋ କାମନା ହେ ଶାନ୍ତିକାନନ,
ତୋ ସେବାରେ ଗତ ହେଉ ଅନ୍ତିମ ଜୀବନ ।"
(ପୂଜାଫୁଲ- ଫ.ଗ୍ରନ୍ଥାବଳୀ- ପୃ- ୫୪୭-୪୮)

"ବୃକ୍ଷ ସେବାକଲେ ଲୋକ ନିରୋଗ ଓ ଦୀର୍ଘଜୀବି ହୁଏ । ଏ କଥା ସେ ତାଙ୍କ ଜୀବନରେ ଅନୁଭବ କରିଛନ୍ତି ବୋଲି କହୁଥିଲେ । ତାଙ୍କର ଥରେ କଣ ରୋଗ ହୋଇଥାଏ । ନାନାପ୍ରକାର ଔଷଧ ସେବନ କଲେ ମଧ ଭଲ ହେଉ ନଥାଏ । ଜଣେ ସାଧୁ କୁଆଡୁ ଆସି ତାଙ୍କୁ ଦେଖି କହିଲେ ଯେ, ବୃକ୍ଷ ସେବା କର, ତମର ରୋଗ ଭଲ ହୋଇଯିବ ଓ ସେହି ଅନୁସାରେ ବୃକ୍ଷ ସେବା କରିବାରୁ କବି ସୁସ୍ଥ ହୋଇଥିଲେ ।" (୧୨) ଯେହେତୁ ଫକୀରମୋହନ ଆଜୀବନ ବ୍ୟାଧିଗ୍ରସ୍ତ ଥିଲେ ତେଣୁ ନିରୋଗ ସୁସ୍ଥ ଜୀବନ ଯାପନ ପାଇଁ ଉଦ୍ୟାନ ସୃଷ୍ଟିକରି ଗଛମାନଙ୍କୁ ଯତ୍ନର ସହିତ ଲାଳନପାଳନ କରିବା ଅନ୍ୟ ଏକ କାରଣ ମଧ୍ୟ ହୋଇପାରେ । ହିନ୍ଦୁଧର୍ମ ଓ ପ୍ରାଚୀନ ପରମ୍ପରା ଅନୁଯାୟୀ ମନୁଷ୍ୟ ଗଛପତ୍ରର ସେବାକଲେ ରୋଗଶୂନ୍ୟ ହୋଇ ସୁସ୍ଥ ଜୀବନଯାପନ କରେ, ଏଭଳି ବିଶ୍ୱାସ ଆମ ସମାଜରେ ଏବେବି ରହିଛି । ତଥାପି ପ୍ରଥମ କାରଣଟି ଦ୍ୱିତୀୟ କାରଣ ଅପେକ୍ଷା ଅଧିକ ଯୁକ୍ତିଯୁକ୍ତ ବୋଲି ମନେ ହୁଏ । ଫକୀରମୋହନ କେବଳ ଯେ ନିଜେ ଉଦ୍ୟାନପ୍ରିୟ ଥିଲେ ତା' ନୁହେଁ, ଅନ୍ୟକୁ ଏ ଦିଗରେ ସବୁବେଳେ ପ୍ରେରଣା ଦେଉଥିଲେ । "ମୁଁ ଯେତେବେଳେ ସାତ ଆଠବର୍ଷର ହୋଇଥିଲି, ସେତେବେଳେ ଆମର ବଗିଚାରେ ଗଛରେ ସେ ମୋ ଦ୍ୱାରା ଲୋଟାରେ ପାଣି ଦିଆଉଥିଲେ ଓ ପାଣି ଦେଲାପରେ ଜଳଖିଆ ବା ସମାନ୍ୟ ପଇସା ଖୁସିରେ ଦେଇ ଯାଉଥିଲେ ।" (୧୩) ମନୁଷ୍ୟମାତ୍ରେ ହିଁ ବୃକ୍ଷପ୍ରିୟ । ବଗିଚାରେ କି ଉଦ୍ୟାନରେ ସୁନ୍ଦର ଫୁଲଗଛ ହେଉ ବା ଫଳଗଛଟି ହେଉ, ତାକୁ ଦେଖିଲାମାତ୍ରେ ତା'ର ସ୍ନେହ ବଳିପଡ଼େ । ତେଣୁ ଯିଏ ଗଛପତ୍ର ଲଗାଇ ଯେତିକି ଆନନ୍ଦ ପାଇପାରେ, ଅନ୍ୟ ଜଣେ ସେସବୁ ବୁଲି ଦେଖି ସେଭଳି ଆନନ୍ଦ ପାଇପାରେ, ଅନ୍ୟଜଣେ ସେସବୁ ବୁଲି ଦେଖି

ସେଭଳି ଆନନ୍ଦ ପାଇଥାଏ । ତେଣୁ ଫକୀରମୋହନଙ୍କ ଉଦ୍ୟାନପ୍ରୀତି କେବଳ ତାଙ୍କ ଶାନ୍ତିକାନନରେ ଆବଦ୍ଧ ନଥିଲା । ସେ ଅନ୍ୟମାନଙ୍କୁ ଉଦ୍ୟାନ ରଚନାରେ ଉତ୍ସାହିତ କରୁଥିଲେ । ସ୍କୁଲରୁ ଘରକୁ ଆସିଲେ ବୁଢ଼ା ଖଣ୍ଡେ କୋଡ଼ିଧରି ଆମ ଘର ପଛ ବାଡ଼ିରେ ହାଜର ହୋଇଯିବେ । କହିବେ "ଏଇ ନେ କୋଡ଼ି, ହାଣ" ମାଟି ଗୁଣ୍ଡ ନହେବାଯାଏ ବସିବେ ।" (୧୪) ଗଛ ବଢ଼ି ଫୁଲ ଧରିଲେ ବୁଢ଼ାର ଆନନ୍ଦ କହିଲେ ନସରେ । ତାଙ୍କ ପାଖକୁ ଯିଏ ଭଦ୍ରଲୋକ ଆସିବେ, ସମସ୍ତଙ୍କୁ ନେଇ ସେସବୁ ବୁଲାଇ ଦେଖାଇବେ ଏବଂ ନାତିମାନଙ୍କର କେତେ ପ୍ରଶଂସା କରିବେ । କବିଙ୍କ ବାଲେଶ୍ୱର ଅବସ୍ଥାନ ପୂର୍ବରୁ କଟକ ବାଖରାବାଦ ଗୃହସ୍ଥ ଏକ ସୁନ୍ଦର ଉଦ୍ୟାନ ଥିଲା । ଏହା କବିଙ୍କ ପାଇଁ ଥିଲା ପ୍ରେରଣାର ଉତ୍ସ । "ଅନେକ କଷ୍ଟ ସ୍ୱୀକାର କରି ଘର ଖଣ୍ଡିକ ପ୍ରସ୍ତୁତ କରିଅଛି । ଗୃହର ଚତୁର୍ଦ୍ଦିଗରେ ବିବିଧପ୍ରକାର ପୁଷ୍ପ ଓ ନାନାପ୍ରକାର ଫଳବନ୍ତ ବୃକ୍ଷ ବେଷ୍ଟିତ ଥିବାରୁ, ସେଗୁଡ଼ିକ କୁଞ୍ଜବନତୁଲ୍ୟ ପ୍ରତୀୟମାନ ହେଉଥିଲା । ସେହି କୁଞ୍ଜବନ ଯୋଗେ କ୍ଷୁଦ୍ର ଅଟ୍ଟାଳିକାଟି ମନୋହର ରୂପ ଧାରଣ କରିଥିଲା ।" (୧୫) ଅବସର ଜୀବନରେ କବି ଅନେକ କବିତା ଏଇଠି ଲେଖିଥିଲେ । 'ଅବସର ବାସରେ' ପୁସ୍ତକସ୍ଥ 'ରଜନୀଗନ୍ଧା', 'ଗୋଲାପ ସୁନ୍ଦରୀ', 'କପୋତ କପୋତୀ', 'ହଳଦୀ ବସନ୍ତ', 'ନିଦାଘ ସନ୍ଧ୍ୟା', 'କାଠ ଯୋଡ଼ିକୂଳ ପଥର ବନ୍ଧ', 'ବୃକ୍ଷ ବାଟିକା', 'କଟକ', 'ଗଙ୍ଗଶିଉଳି' ତଥା ଅନ୍ୟାନ୍ୟ ଅଧିକାଂଶ କବିତା କବିଙ୍କ କଟକସ୍ଥ ରଚନା । ଏହାଛଡ଼ା 'ରେବତୀ', 'ପେଟେଣ୍ଟ ମେଡିସିନ୍' ଗଳ୍ପ 'ଛ ମାଣ ଆଠଗୁଣ୍ଠ' ଓ 'ଅପୂର୍ବ ମିଳନ' (ଲଛମା) ଉପନ୍ୟାସ ତଥା ଉପନିଷଦର ଓଡ଼ିଆ ପଦ୍ୟାନୁବାଦ କଟକ ଅବସ୍ଥାନ କାଳର ରଚନା । ସେସବୁ ବିଶ୍ୱନାଥ କରଙ୍କ 'ଉତ୍କଳ-ସାହିତ୍ୟ' ପତ୍ରିକାରେ ପ୍ରକାଶ ପାଇଥିଲା । ଫକୀରମୋହନଙ୍କ ପରବର୍ତ୍ତୀ ଗଳ୍ପ, ଉପନ୍ୟାସ, ରାମାୟଣ, ମହାଭାରତ, ଖିଳ ହରିବଂଶର ପଦ୍ୟାନୁବାଦ ତଥା ଅଧିକାଂଶ ରଚନା ବାଲେଶ୍ୱର ରାଜା ବୈକୁଣ୍ଠନାଥ ଦେବ, ଦେ'ଙ୍କ ଉତ୍କଳ ପ୍ରେସ, ଉତ୍କଳ ପ୍ରିଂଟିଂ କମ୍ପାନୀ, ଉତ୍କଳ ସାହିତ୍ୟ ପ୍ରେସ' ଓ 'ମୁକୁର ସାହିତ୍ୟ ପ୍ରେସ୍' କଟକରୁ ପ୍ରକାଶ ପାଇଥିଲା । କବିଙ୍କ ହାତଗଢ଼ା ଶାନ୍ତିକାନନ ଥିଲା ତାଙ୍କ ଶେଷଜୀବନର ଶ୍ରେଷ୍ଠ ସମ୍ପଦ । ସାଧାରଣତଃ କବିମାନେ ପ୍ରକୃତିର ଉପାସକ ।" ଫକୀରମୋହନ ତାଙ୍କ ରଚିତ 'ଶାନ୍ତିକାନନ' ରେ ପ୍ରକୃତିର ସମସ୍ତ ଶୋଭା ଯେପରିକି ଆବଦ୍ଧ କରି ରଖିଥିଲି । ଶୋଭାର ପସରା

ନେଇ ଶାନ୍ତିକାନନ ହସୁଥିଲା । ଖରା, ବର୍ଷା, ଶୀତ ସବୁଦିନେ ନାନାପ୍ରକାର ପୁଷ୍ପ ସୌରଭରେ ଶାନ୍ତିକାନନର ଆମୋଦିତ ହେଉଥାଏ ।" (୧୬)

ଫକୀରମୋହନ କର୍ମବ୍ୟସ୍ତ ଓ ବ୍ୟାଧିଗ୍ରସ୍ତ ଜୀବନରେ ବାଣୀ ଆରାଧନା କରିବାର କେବେ ପୂର୍ଣ୍ଣ ସୁଯୋଗ ପାଇ ନଥିଲେ । ଏହା ତାଙ୍କ ଜୀବନର ଏକ ଦୀର୍ଘ ଆଶା ଥିଲା । ନିସଙ୍ଗ ଜୀବନର ଅବସର ବେଳେ ସେ ଏହି ସୁଯୋଗର ପୂର୍ଣ୍ଣ ବିନିଯୋଗ କରିଥିଲେ । ମନୋରମ ଶାନ୍ତିକାନନ କୋଳରେ ବାଣୀ ଆରାଧନା କରି ଶେଷଜୀବନର ବହୁ ଇପ୍‌ସିତ ଆଶାକୁ ଫଳପ୍ରଦ କରିବା ପରିକଳ୍ପନା ଅନେକାଂଶରେ ତାଙ୍କର ସଫଳ ହୋଇଥିଲା । ସୁତରାଂ "ଗୃହ ନିକଟସ୍ଥ 'ଶାନ୍ତିକାନନ' ନାମକ ଉଦ୍ୟାନ ମୋତେ ଏହୀ ଦୀର୍ଘ ନିର୍ଜ୍ଜନନିବାସ କାଳରେ ଶାନ୍ତି ପ୍ରଦାନ କରି ଅଛନ୍ତି । ଏହି ଶାନ୍ତି ଏବଂ ନିର୍ଜ୍ଜନତାର କ୍ରୋଡ଼ରେ ବସି ମୁଁ ମୋର ଜୀବନର ଶେଷ ଗ୍ରନ୍ଥମାଳା ରଚନା କରିଅଛି । 'ମାମୁଁ', 'ପ୍ରାୟଶ୍ଚିତ', ବୌଦ୍ଧବତାର କାବ୍ୟ ଏବଂ ମୋହର 'ଆତ୍ମଜୀବନ ଚରିତ' ଏହିଠାରେ ରଚିତ ହୋଇଅଛି" (୧୭) । ତେଣୁ ଶାନ୍ତିକାନନର ଶାନ୍ତକାନ୍ତ କମନୀୟ ପରିବେଶ ମଧ୍ୟରେ ଅତୀତ ଜୀବନର ମର୍ମନ୍ତୁଦ ଦୁଃଖ ସବୁ ଭୁଲି ଗଛପତ୍ରର ଲାଳନପାଳନ ସହିତ ସାହିତ୍ୟ ସାଧନାରେ କବି ହେଉଥିଲେ ଆତ୍ମବିଭୋର । ଏହାଛଡ଼ା ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ସ୍ୱରଚିତ ଶାନ୍ତିନିକେତନର ବାଣୀ ଆରାଧନାପୂର୍ଣ୍ଣ ପ୍ରକୃତିର ଅନୁପମ ପରିବେଶ କବିଙ୍କୁ ପରୋକ୍ଷ ଭାବରେ ପ୍ରଭାବିତ କରିଥିବା ସ୍ୱାଭାବିକ ।

ଶାନ୍ତିକାନନ ସୃଷ୍ଟି ବିଭବରେ ଥିଲା ବିମଣ୍ଡିତ । "ସେତେବେଳେ ଶାନ୍ତିକାନନ ବାଲେଶ୍ୱରର ନନ୍ଦନକାନନ ପରି ଥିଲା । ବିଭିନ୍ନ ଜାତିର ଗୋଲାପଠାରୁ ଆରମ୍ଭ କରି ନାନାପ୍ରକାର ଫୁଲ ଓ ଫଳ ଗଛରେ ତାହା ଭରି ରହିଥିଲା । ସବୁ ଋତୁରେ ଫୁଲ ଫୁଟିବ, ଏହିପରି ଭାବରେ ଗଛ କବି ଲଗାଇଥିଲେ । ଗୋଟିଏ ବଡ଼ ପକ୍‌କା ଚୌବାଚା ମଧ୍ୟରେ ନାଲି ନେଳି ମାଛ ରହିଥିଲେ । ସେହି ଚୌବାଚା ମଝିରେ ପଦ୍ମଗଛ ମଧ୍ୟ ଥିଲା । ଗୋଟିଏ ବଡ଼ ପିଞ୍ଜରାରେ ଦୁଇଟି ମୟୂର ଥିଲେ ।" (୧୮) "କବି ଶାନ୍ତିକାନନ ମଧ୍ୟରେ ସ୍ଥାନେ ସ୍ଥାନେ ବସିବା ପାଇଁ ପକ୍‌କାରେ ବେଞ୍ଚ ତିଆରି କରାଇଥିଲେ ଓ ସେହି ବେଞ୍ଚ ଉପରେ ବସି କେବେ କେବେ ରଚନା କରୁଥିଲେ । ଫାଟକ ପାଖରେ ଗୋଟିଏ ମାଟିଘର ଥିଲା । + + + ଠିକ ଫାଟକ ସାମନାରେ ଗୋଟିଏ ପକ୍‌କାର

ସେଭଳି ଆନନ୍ଦ ପାଇଥାଏ । ତେଣୁ ଫକୀରମୋହନଙ୍କ ଉଦ୍ୟାନପ୍ରୀତି କେବଳ ତାଙ୍କ ଶାନ୍ତିକାନନରେ ଆବଦ୍ଧ ନଥିଲା । ସେ ଅନ୍ୟମାନଙ୍କୁ ଉଦ୍ୟାନ ରଚନାରେ ଉତ୍ସାହିତ କରୁଥିଲେ । ସ୍କୁଲରୁ ଘରକୁ ଆସିଲେ ବୁଢ଼ା ଖଣ୍ଡେ କୋଡ଼ିଧରି ଆମ ଘର ପଛ ବାଡ଼ିରେ ହାଜର ହୋଇଯିବେ । କହିବେ "ଏଇ ନେ କୋଡ଼ି, ହାଣ" ମାଟି ଗୁଣ୍ଡ ନହେବାଯାଏ ବସିବେ ।" (୧୪) ଗଛ ବଢ଼ି ଫୁଲ ଧରିଲେ ବୁଢ଼ାର ଆନନ୍ଦ କହିଲେ ନସରେ । ତାଙ୍କ ପାଖକୁ ଯିଏ ଭଦ୍ରଲୋକ ଆସିବେ, ସମସ୍ତଙ୍କୁ ନେଇ ସେସବୁ ବୁଲାଇ ଦେଖାଇବେ ଏବଂ ନାତିମାନଙ୍କର କେତେ ପ୍ରଶଂସା କରିବେ । କବିଙ୍କ ବାଲେଶ୍ୱର ଅବସ୍ଥାନ ପୂର୍ବରୁ କଟକ ବାଖରାବାଦ ଗୃହସ୍ଥ ଏକ ସୁନ୍ଦର ଉଦ୍ୟାନ ଥିଲା । ଏହା କବିଙ୍କ ପାଇଁ ଥିଲା ପ୍ରେରଣାର ଉତ୍ସ । "ଅନେକ କଷ୍ଟ ସ୍ୱୀକାର କରି ଘର ଖଣ୍ଡିକ ପ୍ରସ୍ତୁତ କରିଅଛି । ଗୃହର ଚତୁର୍ଦ୍ଦିଗରେ ବିବିଧପ୍ରକାର ପୁଷ୍ପ ଓ ନାନାପ୍ରକାର ଫଳବନ୍ତ ବୃକ୍ଷ ବେଷ୍ଟିତ ଥିବାରୁ, ସେଗୁଡ଼ିକ କୁଞ୍ଜବନତୁଲ୍ୟ ପ୍ରତୀୟମାନ ହେଉଥିଲା । ସେହି କୁଞ୍ଜବନ ଯୋଗେ କ୍ଷୁଦ୍ର ଅଟ୍ଟାଳିକାଟି ମନୋହର ରୂପ ଧାରଣ କରିଥିଲା ।" (୧୫) ଅବସର ଜୀବନରେ କବି ଅନେକ କବିତା ଏଇଠି ଲେଖିଥିଲେ । 'ଅବସର ବାସରେ' ପୁସ୍ତକସ୍ଥ 'ରଜନୀଗନ୍ଧା', 'ଗୋଲାପ ସୁନ୍ଦରୀ', 'କପୋତ କପୋତୀ', 'ହଳଦୀ ବସନ୍ତ', 'ନିଦାଘ ସନ୍ଧ୍ୟା', 'କାଠ ଯୋଡ଼ିକୂଳ ପଥର ବନ୍ଧ', 'ବୃକ୍ଷ ବାଟିକା', 'କଟକ', 'ଗଙ୍ଗଶିଉଳି' ତଥା ଅନ୍ୟାନ୍ୟ ଅଧିକାଂଶ କବିତା କବିଙ୍କ କଟକସ୍ଥ ରଚନା । ଏହାଛଡ଼ା 'ରେବତୀ', 'ପେଟେଣ୍ଟ ମେଡିସିନ୍' ଗଳ୍ପ 'ଛ ମାଣ ଆଠଗୁଣ୍ଠ' ଓ 'ଅପୂର୍ବ ମିଳନ' (ଲଛମା) ଉପନ୍ୟାସ ତଥା ଉପନିଷଦର ଓଡ଼ିଆ ପଦ୍ୟାନୁବାଦ କଟକ ଅବସ୍ଥାନ କାଳର ରଚନା । ସେସବୁ ବିଶ୍ୱନାଥ କରଙ୍କ 'ଉତ୍କଳ-ସାହିତ୍ୟ' ପତ୍ରିକାରେ ପ୍ରକାଶ ପାଇଥିଲା । ଫକୀରମୋହନଙ୍କ ପରବର୍ତ୍ତୀ ଗଳ୍ପ, ଉପନ୍ୟାସ, ରାମାୟଣ, ମହାଭାରତ, ଖିଳ ହରିବଂଶର ପଦ୍ୟାନୁବାଦ ତଥା ଅଧିକାଂଶ ରଚନା ବାଲେଶ୍ୱର ରାଜା ବୈକୁଣ୍ଠନାଥ ଦେବ, ଦେ'ଙ୍କ ଉତ୍କଳ ପ୍ରେସ, ଉତ୍କଳ ପ୍ରିଣ୍ଟିଂ କମ୍ପାନୀ, ଉତ୍କଳ ସାହିତ୍ୟ ପ୍ରେସ' ଓ 'ମୁକୁର ସାହିତ୍ୟ ପ୍ରେସ୍' କଟକରୁ ପ୍ରକାଶ ପାଇଥିଲା । କବିଙ୍କ ହାତଗଢ଼ା ଶାନ୍ତିକାନନ ଥିଲା ତାଙ୍କ ଶେଷଜୀବନର ଶ୍ରେଷ୍ଠ ସମ୍ପଦ । ସାଧାରଣତଃ କବିମାନେ ପ୍ରକୃତିର ଉପାସକ ।" ଫକୀରମୋହନ ତାଙ୍କ ରଚିତ 'ଶାନ୍ତିକାନନ' ରେ ପ୍ରକୃତିର ସମସ୍ତ ଶୋଭା ଯେପରିକି ଆବଦ୍ଧ କରି ରଖିଥିଲି । ଶୋଭାର ପସରା

ନେଇ ଶାନ୍ତିକାନନ ହସୁଥିଲା । ଖରା, ବର୍ଷା, ଶୀତ ସବୁଦିନେ ନାନାପ୍ରକାସ ପୁଷ୍ପ ସୌରଭରେ ଶାନ୍ତିକାନନର ଆମୋଦିତ ହେଉଥାଏ ।" (୧୬)

ଫକୀରମୋହନ କର୍ମବ୍ୟସ୍ତ ଓ ବ୍ୟାଧିଗ୍ରସ୍ତ ଜୀବନରେ ବାଣୀ ଆରାଧନା କରିବାର କେବେ ପୂର୍ଣ୍ଣ ସୁଯୋଗ ପାଇ ନଥିଲେ । ଏହା ତାଙ୍କ ଜୀବନର ଏକ ଦୀର୍ଘ ଆଶା ଥିଲା । ନିସଙ୍ଗ ଜୀବନର ଅବସର ବେଳେ ସେ ଏହି ସୁଯୋଗର ପୂର୍ଣ୍ଣ ବିନିଯୋଗ କରିଥିଲେ । ମନୋରମ ଶାନ୍ତିକାନନ କୋଳରେ ବାଣୀ ଆରାଧନା କରି ଶେଷଜୀବନର ବହୁ ଇପ୍‌ସିତ ଆଶାକୁ ଫଳପ୍ରଦ କରିବା ପରିକଳ୍ପନା ଅନେକାଂଶରେ ତାଙ୍କର ସଫଳ ହୋଇଥିଲା । ସୁତରାଂ "ଗୃହ ନିକଟସ୍ଥ 'ଶାନ୍ତିକାନନ' ନାମକ ଉଦ୍ୟାନ ମୋତେ ଏହୀ ଦୀର୍ଘ ନିର୍ଜ୍ଜନନିବାସ କାଳରେ ଶାନ୍ତି ପ୍ରଦାନ କରି ଅଛନ୍ତି । ଏହି ଶାନ୍ତି ଏବଂ ନିର୍ଜ୍ଜନତାର କ୍ରୋଡ଼ରେ ବସି ମୁଁ ମୋର ଜୀବନର ଶେଷ ଗ୍ରନ୍ଥମାଳା ରଚନା କରିଅଛି । 'ମାମୁଁ', 'ପ୍ରାୟଶ୍ଚିତ', ବୌଦ୍ଧବତାର କାବ୍ୟ ଏବଂ ମୋହର 'ଆତ୍ମଜୀବନ ରଚିତ' ଏହିଠାରେ ରଚିତ ହୋଇଅଛି" (୧୭) । ତେଣୁ ଶାନ୍ତିକାନନର ଶାନ୍ତକାନ୍ତ କମନୀୟ ପରିବେଶ ମଧ୍ୟରେ ଅତୀତ ଜୀବନର ମର୍ମନ୍ତୁଦ ଦୁଃଖ ସବୁ ଭୁଲି ଗଛପତ୍ରର ଲାଳନପାଳନ ସହିତ ସାହିତ୍ୟ ସାଧନାରେ କବି ହେଉଥିଲେ ଆତ୍ମବିଭୋର । ଏହାଛଡ଼ା ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ସ୍ୱରଚିତ ଶାନ୍ତିନିକେତନର ବାଣୀ ଆରାଧନାପୂର୍ଣ୍ଣ ପ୍ରକୃତିର ଅନୁପମ ପରିବେଶ କବିଙ୍କୁ ପରୋକ୍ଷ ଭାବରେ ପ୍ରଭାବିତ କରିଥିବା ସ୍ୱାଭାବିକ ।

ଶାନ୍ତିକାନନ ସୃଷ୍ଟି ବିଭବରେ ଥିଲା ବିମଣ୍ଡିତ । "ସେତେବେଳେ ଶାନ୍ତିକାନନ ବାଲେଶ୍ୱରର ନନ୍ଦନକାନନ ପରି ଥିଲା । ବିଭିନ୍ନ ଜାତିର ଗୋଲାପଠାରୁ ଆରମ୍ଭ କରି ନାନାପ୍ରକାର ଫୁଲ ଓ ଫଳ ଗଛରେ ତାହା ଭରି ରହିଥିଲା । ସବୁ ଋତୁରେ ଫୁଲ ଫୁଟିବ, ଏହିପରି ଭାବରେ ଗଛ କବି ଲଗାଇଥିଲେ । ଗୋଟିଏ ବଡ଼ ପକ୍‌କା ଚୌବାଚା ମଧ୍ୟରେ ନାଲି ନେଳି ମାଛ ରହିଥିଲେ । ସେହି ଚୌବାଚା ମଝିରେ ପଦ୍ମଗଛ ମଧ ଥିଲା । ଗୋଟିଏ ବଡ଼ ପିଞ୍ଜରାରେ ଦୁଇଟି ମୟୂର ଥିଲେ ।" (୧୮) "କବି ଶାନ୍ତିକାନନ ମଧ୍ୟରେ ସ୍ଥାନେ ସ୍ଥାନେ ବସିବା ପାଇଁ ପକ୍‌କାରେ ବେଞ୍ଚ ତିଆରି କରାଇଥିଲେ ଓ ସେହି ବେଞ୍ଚ ଉପରେ ବସି କେବେ କେବେ ରଚନା କରୁଥିଲେ । ଫାଟକ ପାଖରେ ଗୋଟିଏ ମାଟିଘର ଥିଲା । + + + ଠିକ ଫାଟକ ସାମନାରେ ଗୋଟିଏ ପକ୍‌କାର

ଦେଉଓ୍ୱାନ ମୂର୍ତ୍ତି କରାଇଥିଲେ । ସମସ୍ତ ଶାନ୍ତିକାନନରେ ଯିବା ଆସିବା ପାଇଁ ଦୁଇ ପାଖରେ ଇଟା ଦିଆହୋଇ ରାସ୍ତା ତିଆରି ହୋଇଥିଲା ଓ ଏହି ରାସ୍ତାର ଦୁଇ ପାଖରେ ନାନାପ୍ରକାର ଫୁଲ, କ୍ରୋଟିନ ଓ ପାମ୍‌ଗଛ ସବୁ ଲଗାହୋଇଥିଲା । ଫଳଗଛ ମଧ ଅନେକ ପ୍ରକାର ଥିଲା ।" (୧୯) କିନ୍ତୁ "ଗଛର ପହିଲୁ ଫଳରେ ହାତ ଦେବାର ଅଧିକାର କାହାରି ନାହିଁ । ବୁଢ଼ା ନିଜେ ସେ ଫଳଟି ତୋଳିବେ, ଛୁରୀରେ ଚେନାଏ ଚେନାଏ ତରାସି ବଂଶ ସାରା ସମସ୍ତଙ୍କୁ ଚାକରବାକରଙ୍କୁ ସୁଦ୍ଧା ବାଣ୍ଟିବେ । ଏଥିପାଇଁ ତାଙ୍କର ମହାଆନନ୍ଦ । ବଗିଚାରେ ପନିପରିବା ଆଠକାଳୀ ବାରମାସି ଲାଗି ରହିଥାଏ । ଏସବୁ ଖାଏ କିଏ ? ଘରେ ବା କିଏ କେତେ ଖାଇବ ? ବାଣ୍ଟି ବାଣ୍ଟି ଦିନ ସରେ ନାହିଁ ।" (୨୦) ଏହାଛଡ଼ା ସେହି ବଗିଚାରେ ଥିଲା, "ନାନାପ୍ରକାର ଦୁଷ୍ପ୍ରାପ୍ୟ ଗଛ । ଯାହାକି ଏ ଦେଶରେ ଦେଖାଯାଏ ନାହିଁ । ନାନାପ୍ରକାର ବୃକ୍ଷ, ଲତା, ଗୁଳ୍ମ, ଔଷଧି ଓ ନାନାରଙ୍ଗର ଫୁଲ ବଗିଚାରେ ଅତି ସୁନ୍ଦର ଭାବରେ ସୁବିନ୍ୟସ୍ତ ହୋଇ ରହି ସୌନ୍ଦର୍ଯ୍ୟର ଗୋଟିଏ ପରିପୂର୍ଣ୍ଣ ପରିବେଶ ସୃଷ୍ଟି କରିଥିଲା ।" (୨୧) "ବୁଢ଼ାଙ୍କର ସବୁଠାରୁ ବେଶି ସଉକ ଥଲା ଗୋଲାପ ଫୁଲରେ । କେତେ ଜାତିର ଗୋଲାପ, କହିବି କ'ଣ ? ଧଳା ଗୋଲାପ, ହଳଦିଆ ଗୋଲାପ, ଗୋଲାପି ଗୋଲାପ, ରାଣୀ ଭିକ୍ଟୋରିଆ , ରାଣୀ ଏଲିଜାବେଥ୍ ଇତ୍ୟାଦି ଇତ୍ୟାଦି । ବୁଢ଼ା ପ୍ରତିଦିନ ଦୁଇବେଳା ବାଡ଼ି ଖଣ୍ଡିକ ଧରି ଶାନ୍ତିକାନନକୁ ଆସନ୍ତି, ଆଗ ଗୋଲାପ ଫୁଲ ଗୁଡ଼ିକ ଦେଖି ଯାଆନ୍ତି । ଗୋଟାଏ ହେଲେ ଗୋଲାପ କେହି ଛିଡ଼ାଇ ପକାଇବ ! ରକ୍ଷା ନାହିଁ, ବୁଢ଼ା ବାଡ଼େଇ ପକାଇବେ ।" (୨୨) "ବୁଢ଼ା + + + ଗଛପତ୍ର ଲଗାଇ ଆନନ୍ଦ ପାଉଥିଲେ । ଅନେକ ଗଛପତ୍ରକୁ ଆପଣାର ସଖା-ସଖୀ ପରି ଭାବୁଥିଲେ ।" (୨୩) ବାପ ଯେପରି ପୁଅକୁ ଲାଳନପାଳନ କରେ, ସେହିପରି ପୁତ୍ରାଧିକ ସ୍ନେହରେ ସେ ଗଛଗୁଡ଼ିକ ଲାଳନପାଳନ କରୁଥିଲେ ।" (୨୪) "ଏହାଦ୍ୱାରା ଶାନ୍ତିକାନନରେ ବୁଢ଼ାଙ୍କର ଅଧିକାଂଶ ସମୟ ଶାନ୍ତିରେ କଟୁଥିଲା ।" (୨୫) କବି ବଡ଼ ଖେଳ କୌତୁକ ପ୍ରିୟ ଥିଲେ । ସତ୍ୟବାଦୀ ବନବିଦ୍ୟାଳୟରେ ତିନିଦିନି ରହଣି ଏବଂ ବାଲେଶ୍ୱର ଷଉଆସ ସମ୍ମୁଖରେ ନାତିମାନଙ୍କୁ ନେଇ 'ହିଗଡ଼ି' ଖେଳାଉଥିବାବେଳେ ତାଙ୍କର ଶିଶୁ ସୁଲଭ ଚପଳମତି ଗୁଣର ପରିଚୟ ମିଳିଥାଏ । ଯାହା 'ଫକୀରମୋହନ ପରିକ୍ରମା'ରେ ଗୋଦାବରୀଶ ମିଶ୍ର ଏବଂ ଅଧିରାଜ ମୋହନ ସେନାପତି ନିଜ ନିଜ ପ୍ରବନ୍ଧରେ

ବର୍ଣ୍ଣନା କରିଛନ୍ତି । ଅନ୍ୟ ସହିତ କଥାବର୍ତ୍ତା ହେଲାବେଳେ ମଧ୍ୟ ହସ କୌତୁକ କରୁଥିଲେ । ଫକୀରମୋହନ ଥିଲେ ଈଶ୍ୱରବିଶ୍ୱାସୀ ଏବଂ ପ୍ରତିଦିନ ସକାଳେ ଓ ସନ୍ଧ୍ୟାରେ ଗାୟତ୍ରୀ ଓ ବେଦମନ୍ତ୍ରାଦି ଉଚ୍ଚାରଣ କରି ଉପାସନା କରୁଥିଲେ । ଯଦ୍ୱାରା ସେ ଅନେକାଂଶରେ ଚିତ୍ତଶାନ୍ତି ପାଉଥିଲେ ।

ଶାନ୍ତିକାନନ ର ଅନ୍ୟ ଏକ ଶ୍ୱାଶତ ବିଭବ ହେଉଛି 'ସର୍ବଧର୍ମ ସମନ୍ୱୟସ୍ତୂପ' । ଏହା ମନ୍ଦିରାକୃତି ପକ୍‌କାରେ ତିଆରି । ପୃଥିବୀର ସବୁ ଧର୍ମ-ପ୍ରବର୍ତ୍ତକ ମାନଙ୍କର ପ୍ରତିମୂର୍ତ୍ତି ସବୁ ସ୍ତୂପ ଚତୁଃପାର୍ଶ୍ୱରେ ନିର୍ମିତ କରି ସେମାନଙ୍କ ମୁଖନିସୃତ ଅମରବାଣୀ ସବୁ ମୂର୍ତ୍ତିତଳେ ଲେଖାଇଥିଲେ । ଯଥା- ଶ୍ରୀ ଚୈତନ୍ୟ ଦେବଙ୍କ ମୂର୍ତ୍ତିତଳେ: 'ଜୀବେଦୟା, ନାମେ ରୁଚି । ପରିତ୍ରାଣାୟ ସାଧୁନାଂ, ବିନାଶୟ ଚ ଦୁଷ୍କୃତାଂ, ଧର୍ମ ସଂରକ୍ଷଣାର୍ଥାୟ, ସମ୍ଭବାମି ଯୁଗେ ଯୁଗେ ।' ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ମୂର୍ତ୍ତିତଳେ - 'ସୋଽହଂ,' ଅଜନ୍ତା ମୂର୍ତ୍ତିତଳେ - 'ଧର୍ମେ ଧର୍ମଂ ଶରଣ, ବୁଦ୍ଧ ମେ ଶରଣଂ, ସଙ୍ଘ ମେ ଶରଣଂ ।' ଜଗନ୍ନାଥ ଦାସଙ୍କ ମୂର୍ତ୍ତିତଳେ - 'ଅନନ୍ତ ବ୍ରହ୍ମ ନିରାକାର, ବିଶ୍ୱ ବ୍ରହ୍ମାଣ୍ଡ ମୂଳାଧାର । ବ୍ରହ୍ମାଣ୍ଡ ମାଳ ମାଳ ହୋଇ, ତୋ ଲୋମକୂପେ ବିରାଜଇ ।' ବୁଦ୍ଧଦେବଙ୍କ ମୂର୍ତ୍ତିତଳେ - 'ମାହିଂସା ସର୍ବଭୂତାନି । ଯଦା ଯଦାହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ, ଅଭ୍ୟୁତ୍‌ଥାନ ମଧର୍ମସ୍ୟ, ତଦାତ୍ମାନଂ ସୃଜାମ୍ୟହଂ ।' ରାଜା ରାମମୋହନ ରାୟଙ୍କ ମୂର୍ତ୍ତିତଳେ - ପରମେଶ୍ୱରଙ୍କୁ ପ୍ରାର୍ଥନା କର, ପ୍ରତିବାସୀମାନଙ୍କୁ ପ୍ରେମକର ।' ଶିଖ୍‌ଗୁରୁ ନାନକ ଓ ହଜରତ ମହମ୍ମଦଙ୍କ ମୂର୍ତ୍ତିତଳେ କିଛି ଲେଖାନାହିଁ । "ଫକୀରମୋହନଙ୍କ ଉଦାର ଧର୍ମନୀତିର ଏହାହିଁ ଅଭିବ୍ୟକ୍ତି ।" (୨୬) ଶାନ୍ତିକାନନ ଥିଲା ସର୍ବଧର୍ମ ସଂସ୍କୃତିର ସମନ୍ୱୟ ପୀଠ ଏବଂ ଏହାର ସୃଷ୍ଟିକାଳ ଥିଲା (୧୯୧୭) ମସିହା ମୃତ୍ୟୁର ବର୍ଷକ ପୂର୍ବରୁ । ଏତଦ୍‌ଭିନ୍ନ ମେ (୧୯୧୪-୧୫) ରେ ଆଉ ଗୋଟିଏ କାମ ମଧ୍ୟ ଶାନ୍ତିକାନନରେ କରିଯାଇଥିଲେ । ସେ ଓଡ଼ିଶାର ତତ୍‌କାଳୀନ ଅବସ୍ଥାକୁ ଲକ୍ଷ୍ୟରଖି ପୂଜ୍ୟପୂଜାର ବ୍ୟତିକ୍ରମ ଅନୁଭବ କରି ନିଜର ଏକ ପୂର୍ଣ୍ଣାବୟବ ବଳମାନ ମୂର୍ତ୍ତିକୁ ଏକ ମନ୍ଦିର ମଧ୍ୟରେ ତିଆରି କରି ଦେଇଥିଲେ ।" (୨୭)

କବି ଜୀବିତ ଅବସ୍ଥାରେ ଏସବୁ ପୁରୀ ନିବାସୀ ତତ୍‌କାଳୀନ ବାଲେଶ୍ୱର ଜିଲ୍ଲାସ୍କୁଲର ଡ୍ରଇଂ ମାଷ୍ଟର ଶିଳ୍ପୀ ଆନନ୍ଦ ମିଶ୍ରଙ୍କ ଦ୍ୱାରା ଗଢ଼ାଇ ଥିଲେ । ନିସହାୟ ଗରିବ ଦୁଃସ୍ଥ ଆନନ୍ଦ ମିଶ୍ରେ ନିଜ ଚେଷ୍ଟାରେ କଲିକତା ଆର୍ଟ ସ୍କୁଲରୁ ପାଶ୍ କରି

ପ୍ରଥମେ ପଚିଶ ଟଙ୍କା ମାସିକ ଦରମା ହାରରେ ବାଲେଶ୍ୱର ଜିଲ୍ଲା ସ୍କୁଲର ଆର୍ଟ ଟିଚର ଭାବରେ ନିଯୁକ୍ତି ପାଇଥିଲେ । ତାଙ୍କର ଜୀବନଧାରା ଥିଲା ଯେତିକି ଦୁଃଖପୂର୍ଣ୍ଣ ସେତିକି ଆଶ୍ଚର୍ଯ୍ୟପୂର୍ଣ୍ଣ । କାରଣ, ଆନନ୍ଦ ମିଶ୍ରେ ପ୍ରାଇମେରୀ ପାଠପଢ଼ି ଥିଲେ କି ନା ସନ୍ଦେହ, କିନ୍ତୁ ଅଧ୍ୟବସାୟ ବଳରେ ଜଣେ ଦରିଦ୍ର ପିଲା କ'ଣ କରିପାରେ, ତାହା ତାଙ୍କ ଜୀବନ ଅଧ୍ୟୟନ କଲେ ଜଣାଯାଏ । କ୍ଲାସରେ ତାଙ୍କର ଲଣ୍ଡା ମଥାକୁ ଦେଖାଇ ଏହି ଛଅଫୁଟରୁ ଉଚ୍ଚ ଲୋକଟି ପିଲାମାନଙ୍କୁ କହନ୍ତି - "ଦେଖ ବାପାମାନେ, ମୁଣ୍ଡରେ ମାଟିପୂର୍ଣ୍ଣ ପାଛିଆକୁ ବୋହି ବୋହି ଏ ମଥାର ଗୋଟେ ପାଖ ଚେପା ହୋଇ ଯାଇଛି ।" (୨୮) ଫକୀରମୋହନ ସେହି ଆନନ୍ଦ ମିଶ୍ରଙ୍କ କଥା 'ଉତ୍କଳ ଭ୍ରମଣ' ରେ ଲେଖିଛନ୍ତି-

'ଚିହ୍ନକି ଆନନ୍ଦ ମିଶ୍ରେ ଗରିବ ବ୍ରାହ୍ମଣେ,
ଚିହ୍ନର କେ ଅଛି, ବୋଲ ଉତ୍କଳରେ ଜଣେ !
ବଡ଼ଲାଟ ବାହାଦୁର ଥିଲେ ତାଙ୍କୁ ଦେଖି,
ପାର୍ଚମେଣ୍ଟ ସାଟିଫିକେଟ୍ ଦେଇଛନ୍ତି ଲେଖି ।
ଆସିଥିଲେ କୃପାକରି ଭାରତେ ସମ୍ରାଟ,
ତେତେବେଳେ କରିଥିଲା ତାଙ୍କ ଗୁଣ କାଟ ।
ମିଶ୍ରେ ମନ ଦେଇ ମୂର୍ତ୍ତିଟାଏ ଦେଲେ ଗଢ଼ି,
ବିଲାତର କେତେମୂର୍ତ୍ତି ଯିବ ଗଡ଼ାଗଡ଼ି ।
ତୁଚ୍ଛା ହାତେ ମିଶ୍ରେ ମନ ସାହସ ବଳରେ
ଛଅବର୍ଷ ପଢ଼ିଥିଲେ ଆର୍ଟ ଷ୍ଟୁଡିଓରେ ।
ଉତ୍କଳରେ କେହି ତାଙ୍କୁ ନ ବୋଲେ ସାବାସ,
ମିଶ୍ରଙ୍କର ଘରେ ଅଧେଦିନ ଉପବାସ ।" (୨୯)

(ଫ. ଗ୍ରନ୍ଥାବଳୀ - ଦ୍ୱିତୀୟ ଙ୍ଗ- ୧୯୬୩ ଉତ୍କଳ ଭ୍ରମଣ- ପୃ - ୨୧୯)

ଆନନ୍ଦ ମିଶ୍ରେ ବାଲେଶ୍ୱର ରହଣି କାଳରେ ଫକୀରମୋହନଙ୍କ ସାହଚର୍ଯ୍ୟରେ ଆସିଥିଲେ । "ଫକୀରମୋନହଙ୍କ ବଗିଚାରେ ପୂର୍ବୋକ୍ତ ଇମାରତମାନଙ୍କର ନିଜର କଳାଚାତୁର୍ଯ୍ୟ ଫୁଟାଇଥିଲେ- ତାଙ୍କର ମୂର୍ତ୍ତିଗୁଡ଼ିକ ସବୁ (Fresco) ଥିଲା ଲାଳିତ କଳାରେ । ସେ ମୂର୍ତ୍ତିରେ ନିପୁଣ ଭାବରେ ବ୍ୟଞ୍ଜନା ଏବଂ ଅଭିବ୍ୟକ୍ତି ଫୁଟାଇଥିଲେ ।" (୩୦) ଫକୀରମୋହନଙ୍କ ମୃତ୍ୟୁ ପରେ ପରେ ମାସିକ ପଚାଶ

ଟଙ୍କା ବେତନରେ ସେ ପୁରୀଜିଲ୍ଲା ସ୍କୁଲକୁ ବଦଳି ହୋଇଗଲେ । ଆଜି ସେହି ଆନନ୍ଦ ମିଶ୍ରଙ୍କୁ ଉତ୍କଳବାସୀ ଭୁଲିଗଲେଣି । ଶାନ୍ତିକାନନର ବାର୍ଷିକ ଉତ୍ସବରେ ବରେଣ୍ୟ ଅତିଥିବର୍ଗ ମୂର୍ତ୍ତି ପୃଷ୍ଠରେ ମାଲ୍ୟାର୍ପଣ ବେଳେ କେହି ତାଙ୍କରି କଥା ସ୍ମରଣ କରୁ ନାହାନ୍ତି । ଆମେ ସିନା ସମସ୍ତେ ତାଙ୍କୁ ଆଜି ପାସୋରି ପକାଇଛୁ, ହେଲେ କବିଙ୍କ ପୂର୍ଣ୍ଣାବୟବ ପ୍ରତିକୃତି ଓ ତାଙ୍କର ସର୍ବଧର୍ମ ସମନ୍ୱୟ ସ୍ତୁପର ଲଳିତ ମୂର୍ତ୍ତି ତାଙ୍କୁ ଚିରଦିନ ସ୍ମରଣ ରଖିଥିବ । ସେହିସବୁ ମୂର୍ତ୍ତିର ଭିତ୍ତିପ୍ରସ୍ତ ଓ ରୂପ ସୁଷମା ପ୍ରଥମେ ଦିନେ ଯେ' ଆନନ୍ଦ ମିଶ୍ରଙ୍କ ସ୍ୱହସ୍ତ ତୂଳୀ ମୁନରେ ଫୁଟି ଉଠିଥିଲା, ତାହା ମୂର୍ତ୍ତିପୃଷ୍ଠସ୍ଥ ନିମ୍ନ ଅଂଶରେ ଥିବା ପୁରୁଣା ରଙ୍ଗ ଏବେବି ସାକ୍ଷୀ ଦେବ ।

କବିଙ୍କ ହାତଛଡ଼ା ସୃଷ୍ଟି ବିଭବରୁ ଅନେକ କିଛି ଆଜି ହଜି ଯାଇଥିଲେ ବି କିଛି ନ ହଜିଲା ପରି ମନେହୁଏ । ବାଲେଶ୍ୱର ଅବସ୍ଥାନ ବେଳେ ଓଡ଼ିଶାର ବରେଣ୍ୟ ସାହିତ୍ୟିକ ଓ ଦେଶଭକ୍ତମାନେ ଆସି ଏଠାରେ କବିଙ୍କୁ ସାକ୍ଷାତ କରୁଥିଲେ ଏବଂ ଦିନେ ଓଳିଏ ରହି ଫେରୁଥିଲେ । ସେମାନେ ହେଲେ କବି ଗଂଗାଧର ମେହେର, ଗୋପବନ୍ଧୁ ଦାସ, ଗୋଦାବରୀଶ ମିଶ୍ର, ନୀଳକଣ୍ଠ ଦାସ, ପଦ୍ମଚରଣ ପଟ୍ଟନାୟକ, କୃପାସିନ୍ଧୁ ମିଶ୍ର, ମଧୁସୂଦନ ଦାଶ, ବିଶ୍ୱନାଥ କର, ନୀଳମଣି ବିଦ୍ୟାରତ୍ନ ପ୍ରଭୃତି । ସନ ୧୯୧୫ ଖ୍ରୀଷ୍ଟାବ୍ଦରେ ଦେଶସେବକ ଗୋପବନ୍ଧୁ ଦାସ କଲିକତା ଫେରନ୍ତା ଅବସରରେ କବିଙ୍କ ସ୍ୱଗୃହରେ ଦୁଇଦିନ ରହିଥିଲେ ଏବଂ ତାଙ୍କ ଦୁଃଖକଷ୍ଟ ଦେଖି ଅଶ୍ରୁସିକ୍ତ ଓ ବେଦନା ବ୍ୟଥିତ ହୋଇ କହିଥିଲେ - "ମୁଁ ଦୁଇଦିନ ଏଠାରେ ରହି, ଆପଣଙ୍କ ଅବସ୍ଥା ବୁଝିଲି, ଆପଣ ନିତ୍ୟାନ୍ତ ଦୁର୍ବଳ, ନିଃସହାୟ ଓ ଏକାକୀ ହୋଇ ପଡ଼ିଛନ୍ତି । ଚାକରମାନଙ୍କ ସେବା ବର୍ତ୍ତମାନ ଆପଣଙ୍କ ପକ୍ଷରେ ଯଥେଷ୍ଟ ନୁହେଁ । ଆପଣଙ୍କ ସେବା ଓ ସାହାଯ୍ୟ ସକାଶେ ଆତ୍ମୀୟ ଲୋକଙ୍କ ପାଖରେ ଥିବା ନିତାନ୍ତ ଆବଶ୍ୟକ ।" (୩୧) ଅତୀତରେ ହେଉ ବା ବର୍ତ୍ତମାନ ହେଉ ସ୍ୱଦେଶୀ ବିଦେଶୀ ବହୁ ମହାପୁରୁଷ, ଜ୍ଞାନୀ, ଗୁଣୀ, କୃତୀ ସନ୍ତାନମାନଙ୍କର ପଦରେଣୁ କବିକାନନର ଏହି ତୀର୍ଥଧୂଳିରେ ମିଶିଛି । କେବଳ ସେତିକି ନୁହେଁ, ଶାନ୍ତିକାନନର ଶାନ୍ତ, ପବିତ୍ର ପରିବେଶ କବିଙ୍କୁ ଅନ୍ତିମ ଜୀବନରେ ମିଳିଥିବା 'ସରସ୍ୱତୀ' ଉପାଧି ବ୍ୟାସକବି ସରସ୍ୱତୀ ଫକୀରମୋହନ ସେନାପତି ଗୌରବର ପରମ ସ୍ୱୀକୃତି ଦେଇଥିଲା । 'ବାମଣ୍ଡାର ସୁରତରଙ୍ଗିଣୀ ସାରସ୍ୱତ ସମିତି' କବିଙ୍କୁ ଏହି ଉପାଧିରେ ଭୂଷିତ କରିଥିଲା ।

ଏହାଛଡ଼ା ୧୯୧୮ ମସିହାରେ କଟକଠାରେ ଅନୁଷ୍ଠିତ ଉତ୍କଳ ଭାଷା-ଭାଷୀ ସମ୍ମିଳନୀରେ ସଭାପତି ଆସନ ଅଳଙ୍କୃତ କରି ନିଜକୁ ଦେଶବାସୀଙ୍କଠାରେ ଅନୁଗୃହୀତ କରିଥିଲେ ।

ଫକୀରମୋହନ ସମୟରେ ବାହାର ଲୋକେ ବାଲେଶ୍ୱର ଆସି "ଶାନ୍ତିକାନନ ନ ଦେଖି ଫେରିଗଲେ ବାଲେଶ୍ୱରକୁ ପୂରାପୁରି ଦେଖା ହେଲାନାହିଁ ବୋଲି ଅନେକେ ବିଶ୍ୱାସ କରୁଥିଲେ ।" (୩୨) ଏ କଥା ଦିନେ ସତ୍ୟଥିଲା, ମାତ୍ର କବିଙ୍କ ଅନ୍ତେ ଏହାର ସମସ୍ତ ଶିରୀ ତୁଟିଗଲା ଏବଂ ଶାନ୍ତିକାନନ ଏକ ଶ୍ରୀହୀନ, ଜରାଜୀର୍ଣ୍ଣ ବିକଳାଙ୍ଗ ରୂପ ନେଇ ପଡ଼ି ରହିଲା । କବିଙ୍କ କେତେ ଆଶା ଆକାଂକ୍ଷାର ସୌଧ ବାଲିସ୍ତୂପରେ ପରିଣତ ହେଲା । ସେତେବେଳେ ଶାନ୍ତିକାନନର ପ୍ରକୃତ ରୂପ ଯେଉଁମାନେ ଦେଖିଛନ୍ତି, ସେମାନେ ନିଜ ଅଶ୍ରୁସିକ୍ତ ନୟନ ଯୁଗଳକୁ କେବେ ହେଲେ ସାନ୍ତ୍ୱନା ଦେଇପାରି ନଥିବେ । "ବିଶେଷ ଭାବେ ବାଲେଶ୍ୱରର ମଲ୍ଲୀକାଶପୁରସ୍ଥ ଫକୀରମୋହନଙ୍କ ସ୍ୱହସ୍ତରଚିତ ଉଦ୍ୟାନ, ତାଙ୍କର ପ୍ରତିମୂର୍ତ୍ତି ଓ ସର୍ବଧର୍ମ ସମନ୍ୱୟ ପୀଠ ପ୍ରଭୃତି ଆଦି ଅନାଦୃତ ଓ ଦ୍ୱିପଦ, ଚତୁଷ୍ପଦ ପ୍ରାଣୀର ପୁରୀଷ ପ୍ରକ୍ଷେପସ୍ଥଳୀରେ ପରିଣତ ହୋଇଛି । କେତେକ ମୂର୍ତ୍ତି ବିକଳାଙ୍ଗ, ବିଧ୍ୱସ୍ତ ଓ ବିଲୁପ୍ତ ହେବା ଉପରେ ।" (୩୩)

କବି ଭଲଭାବରେ ଜାଣିଥିଲେ ତାଙ୍କ ଅନ୍ତେ ତାଙ୍କର ବହୁ ତପସିତ ଓ ବହୁ ଯତ୍ନବର୍ଦ୍ଧିତ ପ୍ରିୟ ଶାନ୍ତିକାନନ ଅକାଳେ ଭୁଷୁଡ଼ି ପଡ଼ିବ । ପୁଅ କି କେହି ତା'ର ଦାୟିତ୍ୱ ନେବେନି । "ଏହା ଭାବି ସେ ମରିବା ପୂର୍ବରୁ ଗୋଟିଏ ଟ୍ରଷ୍ଟି ବୋର୍ଡ଼ କରି ସେମାନଙ୍କ ହାତରେ ଶାନ୍ତିକାନନ ରକ୍ଷାର ଭାର ଦେଇଥିଲେ ଓ ଖରଚ ପାଇଁ କୋ-ଅପରେଟିଭ ବେଙ୍କରେ ଥିବା ଆଠ ହଜାର ଟଙ୍କା ମଧ ଲେଖି ଦେଇଥିଲେ । ସେ ଟ୍ରଷ୍ଟି ବୋର୍ଡ଼ରେ ହେଡ଼ମାଷ୍ଟର ଉପେନ୍ଦ୍ର ନାରାୟଣ ଦତ୍ତଗୁପ୍ତ, ଭଗବାନଚନ୍ଦ୍ର ଦାସ, ପ୍ରଫୁଲ୍ଲ ପଟ୍ଟନାୟକ (ମୋ ପିତା) ତାଙ୍କର ଗୋମାସ୍ତା କଣ୍ଠ ପଟ୍ଟନାୟକ, ମୋର ବାଲ୍ୟ ଶିକ୍ଷକ କାଳିନ୍ଦୀ ନାଏକ, କବିଙ୍କର ପୁତ୍ରବଧୂ ଶ୍ରୀମତୀ ହିରଣପ୍ରଭା ସେନାପତି ଇତ୍ୟାଦି ଥିଲେ । କବିଙ୍କ ନିର୍ଦ୍ଦେଶ ଥିଲା ଯେ, ତାଙ୍କ ମାତା ସ୍ତ୍ରୀ ଓ ତାଙ୍କ ଶ୍ରାଦ୍ଧ ଦିବସ ଏହାରି ଆୟରୁ ପ୍ରତିବର୍ଷ ପାଳିତ ହେବ । ଥରେ ଭଦ୍ରଲୋକମାନଙ୍କ ସେବା ହେବ ଓ ଅନ୍ୟ ଦୁଇଥର ଦରିଦ୍ରନାରାୟଣ ସେବା ହେବ । ଏହାସବୁ ବେଙ୍କରେ ଜମାଥିବା ସୁଧ ଟଙ୍କାରୁ ହୋଇଥାନ୍ତା ।" (୩୪) କିଛିଦିନ ଶାନ୍ତିକାନନ ଟ୍ରଷ୍ଟିମାନଙ୍କ ହାତରେ ଥିଲା । ପରେ

କବିଙ୍କ ପୁଅ ମୋହିନୀ ବାବୁଙ୍କ ସହିତ ଟ୍ରଷ୍ଟ ବୋର୍ଡ଼ର ସଭ୍ୟମାନଙ୍କ ମଧ୍ୟରେ ମାଲି ମକଦ୍ଦମା ଚାଲିଲା । ବାଧ୍ୟ ହୋଇ ସଭ୍ୟମାନେ ସବୁ ଦାୟିତ୍ୱ ଛାଡ଼ିଦେଲେ । ଶାନ୍ତିକାନନ ସହ ଜମାଥିବା ସବୁ ଟଙ୍କା ମୋହିନୀ ବାବୁ ବ୍ୟାଙ୍କରୁ ଉଠାଇନେଲେ । ଶାନ୍ତିକାନନ ହେଲା ଶ୍ୱାନ-ଶୃଗାଳବୁଲା ମଶାଣି ଭୂଇଁ ।

ଆଜି ଶାନ୍ତିକାନନ ତା'ର ପୂର୍ବ ରୂପ, ଗୌରବ ଓ ବିଭବ ଫେରି ପାଇଛି । ସମୟର ବିଭିନ୍ନ ପରିସ୍ଥିତି ସହିତ ମୁକାବିଲା କରି ଏହା ହୋଇ ପାରିଛି ସର୍ବସାଧାରଣ ଜାତୀୟ ସମ୍ପତ୍ତି । କବିଙ୍କ ଜୀବନକାଳରେ ଶାନ୍ତ ସବୁଜିମା ପରିବେଶର ଊଣା ନାହିଁ । ତାଙ୍କ ସ୍ୱହସ୍ତ ବର୍ଦ୍ଧିତ ଅନେକ ବୃକ୍ଷରାଜି ଏବେବି ତାଙ୍କରି କଥା କହନ୍ତି । ଆଗଠାରୁ ଆଜିର ରୂପ ସମ୍ପୂର୍ଣ୍ଣ ଭିନ୍ନ । ଶାନ୍ତିକାନନର ଚତୁଃପାର୍ଶ୍ୱ ପକ୍କା ପାଚେରୀ ପରିବେଷ୍ଟିତ । ଉଦ୍ୟାନସ୍ଥ ଚାଳଘର ସ୍ଥାନରେ ଦୁଇଟି ପକ୍କା ଘର, ଗୋଟିଏ ପାଠାଗାର ଓ ସଂଗ୍ରାହଳାୟ ତଥା କବିଙ୍କ ଏକ ମାର୍ବଲ ମୂର୍ତ୍ତି ନୂତନ ସୃଷ୍ଟି ସମ୍ପଦ । ଫକୀରମୋହନ ଆଜି ଗବେଷଣାଗାର ପ୍ରଚେଷ୍ଟା ଏକ ଅଭିନନ୍ଦନୀୟ ବିଷୟ । "ଶାନ୍ତିକାନନ ଆଜି ପରିମାର୍ଜିତ । x x x ତାଙ୍କ ସ୍ୱନିର୍ମିତ ପ୍ରତିମୂର୍ତ୍ତି ନିକଟରେ ଆଉ ଏକ ପ୍ରତିମୂର୍ତ୍ତି ଆଜି ପ୍ରତିଷ୍ଠିତ ।"(୩୫) କବିଙ୍କ ଉଆସରେ ଜିଲ୍ଲା ପାଠାଗାର, ସଂଗ୍ରହାଳୟ ପ୍ରଭୃତି ସୃଷ୍ଟିହୋଇ ଜନ୍ମସ୍ଥାନ ଶାନ୍ତିକାନନର ଶ୍ରୀବୃଦ୍ଧି ସାଧନ କରିଛି । ପ୍ରତିବର୍ଷ ମଧ୍ୟ ତାଙ୍କର ଜନ୍ମ ଓ ଶ୍ରାଦ୍ଧ ଦିବସ ପାଳିତ ହେଉଛି ।

୧୯୧୮ ଜୁନ୍ ୧୪ ତାରିଖ ଉତ୍କଳବାସୀଙ୍କ ପାଇଁ ଥିଲା ଏକ ଦୁର୍ଦ୍ଦିନ । ଓଡ଼ିଆ ଭାଷାର ଜାତୀୟ ମହାରଥୀ ସବୁଦିନ ପାଇଁ ଇହଧାମ ତ୍ୟାଗ କଲେ । ଦେଶସାରା ହାହାକାର ପଡ଼ିଗଲା । ସମସ୍ତଙ୍କ ମୁହଁରେ ଗୋଟିଏ କଥା 'ଚାଲିଗଲେ' । ଏ ଦେଶର ଅନେକ କୃତୀ ସନ୍ତାନ ତାଙ୍କ ବିୟୋଗରେ ଅଶ୍ରୁ ବର୍ଷଣ କରିବା ସଙ୍ଗେ ସଙ୍ଗେ ତାଙ୍କର ପ୍ରିୟ ଶାନ୍ତିକାନନ କଥା ଭାବି ନିଜ ନିଜର ଲେଖନୀ ମୁନରୁ ସୃଷ୍ଟି କରିଥିଲେ-

"ଆସିବ ସେଦିନ, ଯେବେ ସେ ଶାନ୍ତିକାନନ
ହେବ ଉତ୍କଳର ତୀର୍ଥଧାମ
ସ୍ୱର୍ଣ୍ଣାକ୍ଷରେ ଲେଖାହେବ ଜାତି ସିଂହଦ୍ୱାରେ
'ଫକୀରମୋହନ' ଏହି ତା ନାମ ।" (୩୬)

(ନନ୍ଦକିଶୋର ଗଡ଼ବଳୀ/ ଜନ୍ମଭୂମି (ସ୍ୱର୍ଗତଃ ଫକୀରମୋହନଙ୍କ ଉଦ୍ଦେଶ୍ୟରେ)

"ଶୋଚନା କରେ / 'ଶାନ୍ତିବନ' / କବି ସେ କାହିଁ / ଆସିଲେ ନାହିଁ
ଏଇ ଦେଶର / ଧୂଳି ଓ ମାଟି / ନୀରସ ହୁଏ / ତୁମରି ପାଇଁ ।
+ + +
କାନନ ତୁମ /ଜୀବନହୀନ /ଆକୁଳେ ଝୁରେ /ତୁମରି ବିନା,
ଭଗ୍ନ ଆଜି ତୀର୍ଥ ପୀଠ କପୂର ନାହିଁ ରହିଛି କନା ।" (୩୭)

('ଭଗ୍ନ ଆଜି ତୀର୍ଥପୀଠ' ଶ୍ରୀମତୀ ନିର୍ମଳପ୍ରଭା ମହାପାତ୍ର)

କବିଙ୍କ ଜୀବିତ ଅବସ୍ଥାବେଳେ ପଣ୍ଡିତ ଗୋଦାବରୀଶ ମିଶ୍ର 'ଶାନ୍ତିକାନନ' ଦେଖି ଦିନେ ଲେଖିଥିଲେ-

"କବି, କାହା ପାଇଁ କହ ଏ ସୁମନ ବନ,
ନିତି ନିତି ଯହିଁ ଏତେ ସାଧନା ଧିଆନ,
+ + +
କହ, କାହାପାଇଁ, କବି, ଏତେ ତବ ଶ୍ରମ
ଏ ବନେ ଜୀବନେ ଢାଳିଦିଅ କିକାରଣ ?" (୩୮)

'କବି ଉପବନ' - ପଣ୍ଡିତ ଗୋଦାବରୀଶ ମିଶ୍ର

ଅନ୍ୟମାନଙ୍କ ଦୃଷ୍ଟିରେ କବି ଥିଲେ :
"ତେଣୁ ଆଜି ତୁମକୁ ପ୍ରଣାମ ।
+ + +
ପୀଡ଼ିତ ଏ ଜାତି ମୁଖେ ଫୁଟାଇଛ ହସ
ସ୍ୱପ୍ନାଲୋକେ ଯାଇନାହିଁ ଭାସି ।
ଦେଖାଇଛ ଆଲୋକ ସନ୍ଧାନ
ଦୀପଶିଖା ଆହେ ଅନିର୍ବାଣ ।" (୩୯)

'ଫକୀରମୋହନ' - ଅଧ୍ୟାପକ ଶ୍ରୀ ଜାନକୀ ମହାନ୍ତି

"ସେ ଅବତାର ନୁହେଁ - ଜଣେ ମଣିଷ

ଏଇ ଧୂଳି ମାଟିର ସାଧକ
ଜଣେ ଶିଳ୍ପୀ - ଜଣେ ସ୍ରଷ୍ଟା - ଜଣେ ସାଧକ
ସେ 'ଫକୀରମୋହନ' ।" (୪୦)
'ଫକୀରମୋହନ' - ଅଧ୍ୟାପକ ଚିନ୍ତାମଣି ବେହେରା

ଶୋକ ପ୍ରକାଶ କରୁଥିବା ବହୁ ଲେଖକମାନଙ୍କ ମଧ୍ୟରେ କବିଙ୍କ ଭାଷାରେ ଏକଦା କବିତାର ଢେଉ ଢାଳିଦେଇଥିବା ଚନ୍ଦ୍ରମୋହନ ମହାରଣା ପ୍ରସଙ୍ଗତଃ କବି ଜୀବନର ସରସତା ବର୍ଣ୍ଣନା କରିବା ଛଳରେ ଲେଖିଥିଲେ - "ଫକୀରମୋହନଙ୍କ ହୃଦୟ 'ରସଗୋଲା' ପରି ଥିଲା ଅର୍ଥାତ୍ ଯେଉଁ ପାଖରୁ ଚାଖିବ, ଏକା ପ୍ରକାର ମିଠା ଏବଂ ସ୍ୱାଦୁ' (୪୧)

ଚାଲିଗଲେ ସତ କିନ୍ତୁ "ଫକୀରମୋହନ ବଙ୍ଗଳାର ରବୀନ୍ଦ୍ରନାଥଙ୍କ ଭଳି ଓଡ଼ିଶାର ରବୀନ୍ଦ୍ରନାଥ ଥିଲେ, ଏକାଧାରେ କବିତା, ଗଳ୍ପ, ଉପନ୍ୟାସ, କାବ୍ୟ, ନାଟକ, କୌତୁକ, ପୁରାଣ, ଦର୍ଶନ, ପ୍ରବନ୍ଧ ବହୁ ବିଷୟରେ ଗବେଷଣା କରି ଏକ ଶକ୍ତିଶାଳୀ ଅବଦାନ ଓଡ଼ିଆ ଜାତିକି ଦେଇଯାଇଛନ୍ତି ।" (୪୨) ବାସ୍ତବିକ ଆଜି ଫକୀରମୋହନ ଦେଶର ମରଣୋନ୍ମୁଖୀ ଭାଷାକୁ ଜୀବନ୍ତ କରିବା ପାଇଁ ଯେଉଁ ମୋହନ ବଂଶୀ ବଜାଇ ଦେଶର ଲକ୍ଷ ଲକ୍ଷ ନରନାରୀଙ୍କୁ ଉଜ୍ଜୀବିତ କରିଯାଇଛନ୍ତି, ସେଇଥିରେ ହିଁ ତାଙ୍କ ନାମର ଚରମ ସାର୍ଥକତା ।

ଶାନ୍ତିକାନନ ଆଜି ଜାତୀୟ ସ୍ମୃତିପୀଠର ଗୌରବ ଅର୍ଜ୍ଜନ କରୁଛି ସତ, ମାତ୍ର ଯେତେଦିନ ପର୍ଯ୍ୟନ୍ତ କବିଙ୍କ ସ୍ୱହସ୍ତ ରଚିତ ସମଗ୍ର ପାଣ୍ଡୁଲିପିର ସଂଗ୍ରହ ନ ହୋଇଛି, ସେତେଦିନ ପର୍ଯ୍ୟନ୍ତ ଏ ଜାତି ଅନେକ କିଛି ହରାଇ ବସିଛି ।

## ପାଦଟୀକା

୧. 'କବିଙ୍କ ଶାନ୍ତିକାନନ' - ଶ୍ରୀ ଜ୍ଞାନରଞ୍ଜନ ପଟ୍ଟନାୟକ/ ଫକୀରମୋହନ ପରିକ୍ରମା - ପୃ -୪୬ (ସଂ - ଜାନକୀ ବଲ୍ଲଭ ମହାନ୍ତି ୧ମ ସଂ - ୧୯୫୫ - ଫକୀରମୋହନ ସାହିତ୍ୟ ପରିଷଦ, ବାଲେଶ୍ୱର)

୨. ଫକୀରମୋହନ ପରିକ୍ରମା/ ଫକୀରମୋହନ ମାନସ - ଶ୍ରୀ ସର୍ବେଶ୍ୱର ଦାସ - ପୃ - ୧୪୯

୩. 'ବାଲେଶ୍ୱର' / ପ୍ରାବନ୍ଧିକ - ଗୋଲକଚନ୍ଦ୍ର ମହାପାତ୍ର - ପୃ - ୭୫
୪. ଫକୀରମୋହନ ପରିକ୍ରମା, 'ମୁଁ ଯେପରି ତାଙ୍କୁ ଦେଖିଛି' - ପଣ୍ଡିତ ନୀଳକଣ୍ଠ ଦାସ - ପୃ -୫
୫. ଆତ୍ମଜୀବନୀ - ଫକୀରମୋହନ ସେନାପତି - ପୃ -୧୫ (ସରସ୍ୱତୀ ଫକୀରମୋହନ - ପୃ ୪୬/୪୭)
୬. ଫକୀରମୋହନ ପରିକ୍ରମା - ପୃ - ୪୩
୭. ଆତ୍ମଜୀବନୀ ଚରିତ ଫକୀରମୋହନ ସେନାପତି - ନିଉ ଷ୍ଟୁଡେଣ୍ଟ ଷ୍ଟୋରର୍ସ, ପୃ - ୧୭୩
୮. ଆତ୍ମ ଜୀବନ ରଚିତ - ପୃ - ୨୬ ସରସ୍ୱତୀ ଫକୀରମୋହନ ପୃ - ୧୬୭
୯. ଆତ୍ମ ଜୀବନୀ ରଚିତ ନିଉ ଷ୍ଟୁଡେଣ୍ଟ, ଷ୍ଟୋର୍ସ - ପୃ - ୧୭୦
୧୦. ଫକୀରମୋହନ ପରିକ୍ରମା - ପୃ - ୪୪
୧୧. ଫକୀରମୋହନ ପରିକ୍ରମା - ପୃ - ୩୯
୧୨. ଫକୀରମୋହନ ପରିକ୍ରମା - ପୃ - ୪୩
୧୩. ଫକୀରମୋହନ ପରିକ୍ରମା - ପୃ - ୪୩
୧୪. ଫକୀରମୋହନ ପରିକ୍ରମା - ପୃ - ୮
୧୫. ଆତ୍ମ ଜୀବନ ରଚିତ (ନିଉ ଷ୍ଟୁଡେଣ୍ଟସ ଷ୍ଟୋର୍ସ ପ୍ରକାଶିତ - ପୃ - ୧୬୮)
୧୬. ଫକୀରମୋହନ ପରିକ୍ରମା - ପୃ - ୭
୧୭. ଆତ୍ମ ଜୀବନୀ (ନିଉ ଷ୍ଟୁଡେଣ୍ଟ ଷ୍ଟୋର ପ୍ରକାଶିତ ପୃ - ୧୭୧)
୧୮. ଫକୀରମୋହନ ପରିକ୍ରମା - ପୃ - ୪୧
୧୯. ଫକୀରମୋହନ ପରିକ୍ରମା - ପୃ - ୪୨
୨୦. ଫକୀରମୋହନ ପରିକ୍ରମା - ପୃ - ୮
୨୧. ଫକୀରମୋହନ ପରିକ୍ରମା - ପୃ - ୨୦
୨୨. ଫକୀରମୋହନ ପରିକ୍ରମା - ପୃ - ୭/୮
୨୩. ଫକୀରମୋହନ ପରିକ୍ରମା - ପୃ - ୨୬
୨୪. ଫକୀରମୋହନ ପରିକ୍ରମା - ପୃ - ୪୨

୨୫. ଫକୀରମୋହନ ପରିକ୍ରମା - ପୃ - ୮
୨୬. ଫକୀରମୋହନ ପରିକ୍ରମା - ପୃ - ୮
୨୭. ଆସନ୍ତାକାଲି /ଅଷ୍ଟମ ବର୍ଷ/୭ମ ସଂଖ୍ୟା (ଜୁଲାଇ ୧୯୭୭)
୨୮. ଆସନ୍ତାକାଲି /ଜୁଲାଇ ୧୯୭୭
୨୯. ଫକୀରମୋହନ ଗ୍ରନ୍ଥାବଳୀ - ପୃ - ୨୧୯
୩୦. ଆସନ୍ତା କାଲି / ଜୁଲାଇ ସଂଖ୍ୟା - ୧୯୭୭
୩୧. ଆତ୍ମ ଜୀବନ ଚରିତ - (ନିଉ ଷ୍ଟୁଡେଣ୍ଟ ଷ୍ଟୋର ପ୍ରକାଶିତ ) ପୃ - ୧୭୪
୩୨. ଫକୀରମୋହନ ପରିକ୍ରମା - ପୃ - ୪୦
୩୩. ଫକୀରମୋହନ ପରିକ୍ରମା - ପୃ - ୧୫୪/୧୫୫
୩୪. ଫକୀରମୋହନ ପରିକ୍ରମା - ପୃ - ୪୪
୩୫. 'ରଜତ ଶ୍ରୀ' (ଫକୀରମୋହନ ସେନାପତି) - ପୃ - ୩୮
୩୬. ନନ୍ଦକିଶୋର ଗ୍ରନ୍ଥାବଳୀ- 'ଜନ୍ମଭୂମି'(ଫକୀରମୋହନ ସେନାପତିଙ୍କ ଉଦ୍ଦେଶ୍ୟରେ ରଚିତ)
୩୭. ଫକୀରମୋହନ ପରିକ୍ରମା - ପୃ - ୧୭୦
୩୮. ଫକୀରମୋହନ ପରିକ୍ରମା - ପୃ - ୧୫୯
୩୯. ଫକୀରମୋହନ ପରିକ୍ରମା - ପୃ - ୧୬୨
୪୦. ଫକୀରମୋହନ ପରିକ୍ରମା - ପୃ - ୧୬୮
୪୧. 'ଆସନ୍ତା କାଲି'/ତ୍ରିଂଶ ବର୍ଷ ୧୨ ଶ ସଂଖ୍ୟା / ଡିସେମ୍ବର/୧୯୭୯/ ପୃ-୫୫/
୪୨. ଫକୀରମୋହନ ପରିକ୍ରମା - ପୃ - ୪୦



# ଉତ୍କଳ-ସଙ୍ଗୀତ ଓ ଫକୀରମୋହନ

ସଙ୍ଗୀତ ହେଉଛି ଜୀବନର ରାଗିଣୀ, ସଙ୍ଗୀତ ହେଉଛି ହୃଦୟବୀଣାର ଝଙ୍କାର, ସଙ୍ଗୀତ ହେଉଛି ପ୍ରାଣର ଉଚ୍ଛ୍ୱାସ । ସଙ୍ଗୀତ ମଣିଷକୁ ଆନମନା କରେ । ପ୍ରାଣରେ ଅପାର ଆନନ୍ଦ ଭରିଦିଏ । କ୍ଷଣିକ ପାଇଁ ଜୀବନର ସବୁ ଦୁଃଖ ଶୋକ ପାସୋରି ହୁଏ । ସେ ଆତ୍ମବିଭୋର ହୁଏ । ପରମ ତୃପ୍ତିରେ ପରମାତ୍ମାଙ୍କଠାରେ ନିଜକୁ ସମର୍ପଣ କରିଦିଏ । ଚିରନ୍ତନ, ଶ୍ୱାଶତ ଓ ଚିନ୍ମୟ ପୁଲକରେ ନିଜର ସତ୍ତାକୁ ଭୁଲିଯାଏ । ସଙ୍ଗୀତ ଜୀବନକୁ କରେ ଶୃଙ୍ଖଳିତ ଓ ସୁସଂଯତ । ସୁପ୍ତ, ସୂକ୍ଷ୍ମ ଚେତନାକୁ କରେ ଜାଗ୍ରତ ଓ ବିକଶିତ । ଗୀତ,ବାଦ୍ୟ ଓ ନୃତ୍ୟର ସମାରୋହରେ ସଙ୍ଗୀତ ହୁଏ ସାର୍ଥକ ।

ବିଶ୍ୱସ୍ରଷ୍ଟାଙ୍କ ସୃଷ୍ଟିରେ ସଙ୍ଗୀତ ଏକ ଅନୁପମ ବିଭବ । ସୃଷ୍ଟିର ଜୀବଜଗତ ଓ ଉଦ୍ଭିଦଜଗତର ପ୍ରାଣରେ ସ୍ରଷ୍ଟା ଭରିଦେଇଛନ୍ତି ସଙ୍ଗୀତ-ସତ୍ତା । ସୃଷ୍ଟିର ଅନେକ ଅସୁନ୍ଦର, କୁତ୍ସିତ ଜୀବ ହେଲେବି ସଙ୍ଗୀତ ସେମାନଙ୍କ ଜୀବନକୁ କରିଛି ରସମୟ ଓ ମହାର୍ଘ । ବହି ଯାଉଥିବା ଝରଣାର କୁଳୁକୁଳୁ ସଙ୍ଗୀତ, କୋକିଳର ସୁଲଳିତ ମଧୁ-କୂଜନ, ବୃକ୍ଷରାଜିର ମର୍ମରିତ ଶବ୍ଦ, ସମୁଦ୍ରର ଭୀମ ଗମ୍ଭୀର ନିର୍ଘୋଷ, ପର୍ବତର ମନ୍ଦ୍ରଧ୍ୱନି, ପବନର ସୁସୁ ଶବ୍ଦ, ମେଘର ବଜ୍ର ନିଦାନ, ମଣ୍ଡୁକର କେଁ କଟର, କୁମ୍ଭାଟୁଆର ମନୋହାରିଣୀ ଡାକ, ଡାହୁକର କରକର ରାବ, ବଣି ଚଢ଼େଇର କଚିରିମିଚିରି ଶବ୍ଦ, ପାରାର ଘୁମୁରା ଓ ନିରୋଳା ଦ୍ୱିପ୍ରହରରେ କପୋତର 'ଉଠ୍‌ପୁତ' ଧ୍ୱନି, କାକଜ୍ୟୋତ୍ସ୍ନାରେ ଚକୋରର ବିଳାପ, ଜହ୍ନଉଠା ନିର୍ଜନ ବେଳାଭୂମିରେ ସମୁଦ୍ର ବିହଗର ଡାକ, ହଂସରାଜିର କଳରବ ଧ୍ୱନି, ବନ ହରିଣର କୁହାଟ, ଝିଙ୍କାରୀର ଝିଲ୍ଲୀରବ ଶ୍ରବଣରେ ପ୍ରାଣୀର ଚିତ୍ତ ହୁଏ ତନ୍ମୟ । କ୍ଷଣକ ପାଇଁ ସେ ହୁଏ ଭାବବିମୁଗ୍ଧ ।

ସେଥିପାଇଁ ଜୀବଜଗତର ସଂଗୀତ ଶ୍ରବଣ ପ୍ରତି ଆକର୍ଷଣ ଆଜନ୍ମ । ସଂଗୀତକୁ

ଛାଡ଼ି ଜୀବନକୁ ଅନୁଭବ କରିହୁଏ ନାହିଁ । ଏଇଥିପାଇଁ ସଙ୍ଗୀତ ଆସରକୁ ମଣିଷ ମନ୍ତ୍ରମୁଗ୍ଧ ହୋଇ ଧାଇଁଯାନ୍ତି । ସଂଗୀତର ସ୍ୱରରେ ଆକର୍ଷିତ ହୋଇ ସର୍ପ ଗର୍ତ୍ତରୁ ବାହାରି ଆସିଥାଏ । ସଂଗୀତର ସ୍ୱର ସହିତ ତାଳ ଦେଇ ସେ ଖେଳେ । ସଂଗୀତର ଶବ୍ଦ ଝଙ୍କାରରେ କେତେକ ଉଦ୍ଭିଦର ପତ୍ର ଉଚ୍ଛ୍ୱଳିତ ହୋଇଥାଏ । ପାର୍ଥିବ ମଣିଷ ଆୟୋଜନକରେ ବିରାଟ ବିରାଟ ସଂଗୀତ ଆସର । ମନଭରି ସେ ସଂଗୀତ ଶୁଣେ । ହୃଦୟ ଭରି ସେ ସଂଗୀତ ଉପଭୋଗ କରେ । ସେଇଥିପାଇଁ ତ ସ୍ୱର୍ଗର ଇନ୍ଦ୍ରସଭାରେ ମେନକା, ଉର୍ବଶୀଙ୍କୁ ନେଇ ସୃଷ୍ଟି ହୋଇଥାଏ ନୃତ୍ୟଭରା ସଂଗୀତ ଆସର । ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ପୁତ୍ର ନାରଦ ବୀଣାବାଦନ କରି ଦେବତା ଓ ଦାନବଙ୍କୁ ମନ୍ତ୍ରମୁଗ୍ଧ କରିଥାନ୍ତି । ବାକ୍‌ଦେବୀ ସରସ୍ୱତୀ ବୀଣା ଧାରଣ କରି ମାନବର ହୃଦୟତନ୍ତ୍ରୀରେ ସ୍ୱରଝଙ୍କାର ସୃଷ୍ଟି କରିଥାନ୍ତି । ତେଣୁ ସଂଗୀତ ହେଉଛି ମାନବ, ଦାନବ ଓ କିନ୍ନରଙ୍କର ଏକ ଚିରନ୍ତନ ପିପାସା ।

ବ୍ୟାସକବି ଫକୀରମୋହନ ସଂଗୀତ ନାମଧାରୀ ପାଞ୍ଚଟି କବିତା ରଚନା କରିଥିଲେ । ଉକ୍ତ କବିତା ଗୁଡ଼ିକ ତାଙ୍କ ରଚିତ 'ପୁଷ୍ପମାଳା' ଓ 'ଅବସରବାସରେ' ପୁସ୍ତକରେ ସନ୍ନିବିଷ୍ଟ । ସେଗୁଡ଼ିକ ହେଲା 'ନିଶୀଥ ସଂଗୀତ', 'କପୋତ ସଂଗୀତ', 'ସେ ସଂଗୀତ', 'ପ୍ରେମ ସଂଗୀତ', 'ଉତ୍‌ଥାନ ସଂଗୀତ' । ନିଶୀଥ ସଂଗୀତରେ କବିଙ୍କ ବିଷାଦିତ ଅନ୍ତରର ଭାବନା, 'କପୋତ ସଂଗୀତ'ରେ କବି ଜୀବନର ବାସ୍ତବ କାହାଣୀ, ସେ ସଂଗୀତରେ କବି ଅନ୍ତରର ବ୍ୟାକୁଳତା, 'ଉତ୍‌ଥାନ ସଂଗୀତ'ରେ ଦୁର୍ଦ୍ଦଶାଗ୍ରସ୍ତ ଓଡ଼ିଆ ଭାଷାର ସୁରକ୍ଷା ପ୍ରତି ଜାତୀୟ ଆହ୍ୱାନ ଏବଂ 'ପ୍ରେମ ସଂଗୀତ'ରେ କବି ଜନ୍ମଭୂମି ଉତ୍କଳର ଉନ୍ନତି ତଥା ଏହାର ଗୌରବ ରକ୍ଷା ପାଇଁ ପରସ୍ପର ଭେଦଭାବ ଭୁଲି, କୁତ୍ସିତ ଜାତିପ୍ରଥା ଓ କୁସଂସ୍କାରକୁ ଦୂର କରି, ଏକମନ ଓ ଏକପ୍ରାଣରେ ଲାଗି ପଡ଼ିବାକୁ ଆହ୍ୱାନ କରିଛନ୍ତି ।

ଫକୀରମୋହନ ଥିଲେ ଉତ୍କଳ ସଂଗୀତର ଜଣେ ଅନୁରାଗୀ ବ୍ୟକ୍ତି । ଉତ୍କଳୀୟ ବା ଓଡ଼ିଶୀ ସଂଗୀତର ଶାସ୍ତ୍ରୀୟ ମର୍ଯ୍ୟାଦା କଥା ସେ ଭଲଭାବରେ ଉପଲବ୍ଧି କରିଥିଲେ । କେବଳ ସେତିକି ନୁହେଁ, ପ୍ରାଚୀନ ପୋଥିପତ୍ର ଓ ପୁସ୍ତକାଦିରେ ଏ ବିଷୟରେ ଯେ ବିଶଦ ବର୍ଣ୍ଣନା ରହିଛି, ସେ ବିଷୟ ପ୍ରତି ସେ ସଚେତନ ଥିଲେ । ଭାରତବର୍ଷର ବିଭିନ୍ନ ପ୍ରାଦେଶିକ ସଂଗୀତ ବିଷୟରେ ତାଙ୍କର ଯଥେଷ୍ଟ ଜ୍ଞାନ ଥିଲା । ଉତ୍କଳର ଦେବାଦେବୀ ମନ୍ଦିରଗାତ୍ରରେ ଚିତ୍ରିତ ତଥା ମନ୍ଦିର ପରମ୍ପରାରେ ଅଭିନୀତ ସଂଗୀତ ନୃତ୍ୟ ପ୍ରତି ତାଙ୍କର ଗଭୀର ଭକ୍ତି ଓ ପ୍ରୀତି ଥିଲା । ଓଡ଼ିଶୀ ସଂଗୀତ ଓ ନୃତ୍ୟ, କଳା

ଭାସ୍କର୍ଯ୍ୟ ବିଶ୍ୱ ଦରବାରରେ ପ୍ରତିଷ୍ଠା ଲାଭ କରିବ । ସେ ଆତ୍ମବିଶ୍ୱାସ ତାଙ୍କର ଦୃଢ଼ ଥିଲା । ପ୍ରାଚୀନ ଉତ୍କଳ-ସଂଗୀତର ରାଗରାଗିଣୀ ବିଷୟରେ ତାଙ୍କର ଭଲ ଅଭିଜ୍ଞତା ଥିଲା । 'ପୁଷ୍ପମାଳା', ''ଅବସର ବାସରେ', ଓ ପୂଜାଫୁଲ' ପୁସ୍ତକାଦିରେ ସନ୍ନିବିଷ୍ଟ କବିତା ଗୁଡ଼ିକୁ ବିବିଧ ରାଗ-ରାଗିଣୀରେ ସେ ରଚନା କରିଥିଲେ । କେଦାର କାମୋଦୀ, ମଙ୍ଗଳ ଆହାରୀ, ଆଶାବରୀ, ଚିନ୍ତାକେଦାର, ଚୋଖି, ଭାଗବତ ବୃତ୍ତ, ଚୌପଦୀ ଛାନ୍ଦ, କେଦାର ଚକ୍ରକେଳି, ପରଜ ଝୁଲା, ଝାମ୍ପତାଳ, ବଙ୍ଗଳାଶ୍ରୀ, କଳସା, ମୁଖାରୀତାଳ, ଭୂପାଳ, ନଳିନୀଗୌଡ଼ା, ରାମକେରୀ, ଭୈରବଝୁଲା, ପଞ୍ଚମ ବରାଡ଼ୀ, ଆଷାଢ଼ ଶୁକ୍ଳବାଣୀ, କଳହଂସ କେଦାର, ସଂଗମ ତିଆରୀ, ନଟବାଣୀ ବୃତ୍ତରେ ତାଙ୍କର ବହୁ କବିତା ରଚିତ । ସଂଗୀତ ଅନୁରାଗୀ ସ୍ୱର୍ଗତ ଦାମୋଦର ପଟ୍ଟନାୟକ ଲୁପ୍ତ ପ୍ରାୟ ଉତ୍କଳ-ସଂଗୀତଗୁଡ଼ିକୁ ଏକତ୍ର କରି ଯେଉଁ ସଂଗୀତ ସଂଗ୍ରହ ପୁସ୍ତକ ପ୍ରକାଶ କରିଥିଲେ, ସେଭଳି କାର୍ଯ୍ୟରେ ଫକୀରମୋହନ ପ୍ରୀତ ହୋଇ କହିଛନ୍ତି, "ବାବୁ ଦାମୋଦର ପଟ୍ଟନାୟକ ବାଛିବାଛି ଅନେକ ଗୁଡ଼ିଏ ସଂଗୀତ ସଂଗ୍ରହ କରିଛନ୍ତି । ଉତ୍କଳ ଭାଷାର ଗୌରବ ବର୍ଦ୍ଧନ ନିମନ୍ତେ ଏଗୁଡ଼ିକ ଚିରକାଳ ବିଦ୍ୟମାନ ରହିବ । ସୁରଂଗୀ ରାଜ୍ୟର ରାଜା ସାହେବ ବିଜ୍ଞାନ ସମ୍ମତ ରୂପେ ଖଣ୍ଡିଏ ସଂଗୀତ ଶିକ୍ଷା ପୁସ୍ତକ ପ୍ରକାଶ କରି ଗୋଟିଏ ବିଶେଷ ଅଭାବ ମୋଚନ ପକ୍ଷରେ ସହାୟତା କରିଛନ୍ତି । ଉତ୍କଳ ମାତାର ଏହି ଯୋଗ୍ୟ ସନ୍ତାନଗଣ ଜାତି ସାଧାରଣର ଧନ୍ୟବାଦାର୍ହ ଅଟନ୍ତି ।"
(ଫକୀରମୋହନଙ୍କ ଦୁର୍ଲ୍ଲଭ ରଚନାବଳୀ (୨୦୦୦) ପୃ - ୧୧୧୭)
ପୁନଶ୍ଚ ଫକୀରମୋହନ ତାଙ୍କର ଗୁଣ ଗାନ କରି ଲେଖିଛନ୍ତି:-

"ଜନନୀର ଯୋଗ୍ୟପୁତ୍ର ଆହେ ଦାମୋଦର,
ପ୍ରାଣପଣେ କର ମାତୃଭାଷାର ଆଦର ।
ତୁମ୍ଭର କବିତା ମାତ୍ର ପ୍ରକୃତି-ଗଠିତ,
ପାଠ କଲେ ହୁଏ କିବା ପ୍ରତ୍ୟକ୍ଷ ଚିତ୍ରିତ ।
କାଳସ୍ରୋତେ ଦିନେ ତୁମ୍ଭେ ଯାଇପାର ଭାସି,
ଥିବ ସେ କବିତାମାଳା ଜଗତେ ବିକାଶି ।"

(ଫକୀରମୋହନ ଗ୍ରନ୍ଥାବଳୀ-ପ୍ରଥମ ଖଣ୍ଡ (୧୯୬୩) ପୃ: ୩୫୧)

ଫକୀରମୋହନ ତା ୮.୩.୧୫ ମସିହାରେ କନିକା ରାଜବାଟୀର ପଣ୍ଡିତ ସରସ୍ୱତୀ ଶ୍ରୀ ଦାମୋଦର ମିଶ୍ରଙ୍କ ରଚିତ 'ସଂଗୀତ ରତ୍ନ' ପୁସ୍ତକର ଏକ ସୁଚିନ୍ତିତ ଅଭିମତ ଲେଖିଥିଲେ । ଏଥିରେ ସେ ଲେଖିଛନ୍ତି, "ମାତ୍ର ସଂଗୀତରେ ଆବାଳବୃଦ୍ଧ

ବନିତା, ଜ୍ଞାନୀ, ମୂର୍ଖ, ସର୍ବସାଧାରଣ ବିମୋହିତ । ଗୀତ ଗାଏନାହିଁ, କାହିଁ ନଗାଣେ ପୃଥିବୀରେ ଲୋକ ନିତାନ୍ତ ବିରଳ । ସଂଗୀତ କ୍ଷୁଧା ତୃଷା ମାନବଜାତିର ଗୋଟିଏ ପ୍ରକୃତିଦତ୍ତ ଗୁଣ ଅଟେ । ନିତାନ୍ତ ଶିଶୁମାନଙ୍କୁ ହାତ ତାଳିଦେଇ ନାଚିବା ଏବଂ ପାଟିକରି ଗୀତ ଗାଇବା କିଏ ଶିଖାଇଲା ? ସଂଗୀତ କେବଳ ଆମୋଦପ୍ରମୋଦ ସମ୍ଭୋଗ ସକାଶେ ନୁହେଁ, ଏହା ସ୍ୱାସ୍ଥ୍ୟ ଏବଂ ଆୟୁବର୍ଦ୍ଧନ ପକ୍ଷରେ ବିଶେଷ ସହାୟ । ସଂଗୀତ ଚର୍ଚ୍ଚା ଯୋଗେ ମାନବ ଦେହର ଫୁସଫୁସ ଯନ୍ତ୍ର ସବଳ ହେବା ଯୋଗୁଁ ଦେହକୁ ଅନେକ ପ୍ରକାର ରୋଗରୁ ବିମୁକ୍ତ କରାଏ । ଫରାସୀ ଜାତି ପୃଥିବୀସ୍ଥ ଅନ୍ୟାନ୍ୟ ଜାତିଠାରୁ ବିଶେଷ ସଂଗୀତ ପ୍ରିୟ, ଏସବୁ ତୁଳନାରେ ଅନ୍ୟାନ୍ୟ ଜାତିଠାରୁ ସୁସ୍ଥ ଶରୀର ଏବଂ ଦୀର୍ଘଜୀବୀ । କେବଳ ଶରୀର ପକ୍ଷରେ ନୁହେଁ, ସଂଗୀତ ମାତୃଜାତିର ସର୍ବପ୍ରକାର ଚିତ୍ତବୃତ୍ତିର ଉତ୍ତେଜନାକାରୀ ।ଏଥକୁ ଈଶ୍ୱରାଧନା ସମୟ ଏବଂ ସମରାଙ୍ଗନରେ ବିଶେଷ ସହାୟକ ଅଟେ । ଆବହମାନ କାଳରୁ ପୁଣ୍ୟକ୍ଷେତ୍ର ଭାରତବର୍ଷସ୍ଥ ଆର୍ଯ୍ୟଜାତି ମଧ୍ୟରେ ବାହୁଲ୍ୟ ରୂପେ ସଂଗୀତ ଚର୍ଚ୍ଚା ହୋଇଆସୁଥିବା ପର୍ଯ୍ୟାପ୍ତ ପ୍ରମାଣ ବିଦ୍ୟମାନ । ଅନ୍ୟତମ ସାମବେଦ ଖଣ୍ଡିକ ସଂଗୀତମୟ । ସଭ୍ୟତାର ସଂପର୍କ ରହିତ ଆରଣ୍ୟଜାତିମାନେ ମଧ୍ୟ ସଂଗୀତ-ସଂପର୍କଶୂନ୍ୟ ନୁହନ୍ତି । ମାନବଜାତି କଥା ଥାଉ, ଦେବତା, ପିଶାଚ, ରାକ୍ଷସ, ଦୈତ୍ୟ, ଦାନବ କେହି ସଂଗୀତ-ସଂପର୍କ ବିହୀନ ନୁହନ୍ତି । ଗନ୍ଧର୍ବ, ଅପ୍ସରା ଜାତିମାନେ ପ୍ରକୃତ ସଂଗୀତ ବ୍ୟବସାୟୀ ଜାତି ଅଟନ୍ତି । ଅଧିକ କ'ଣ, ହସ୍ତୀ, ମୃଗ, ସର୍ପ, ପକ୍ଷୀ ତିର୍ଯ୍ୟକ୍ ଜାତିମାନେ ମଧ୍ୟ ସଂଗୀତ ବିମୁଗ୍ଧ ଅଟନ୍ତି ।"

ସଂଗୀତର ରୁଚିହୀନତା ବିଷୟରେ ଫକୀରମୋହନ ଅତ୍ୟନ୍ତ ବ୍ୟଥିତ ହୋଇ ପ୍ରକାଶ କରିଛନ୍ତି, "ଦାରୁଣ ଦୁଃଖର କଥା, ମାନବ ଜାତିର ଅବଶ୍ୟ ଅବଲମ୍ବନୀୟ ଦେବଦୁର୍ଲ୍ଲଭ ବିଷୟଟି ଆମ୍ଭମାନଙ୍କ ଦେଶରେ ଥୋକେ ଶିଥିଳ ଚରିତ୍ର ଲୋକହସ୍ତରେ ବିନ୍ୟସ୍ତ ଅଛି । ଆମ୍ଭମାନଙ୍କ ସମାଜରେ ବିଶେଷ ଉତ୍ସବ ବା ମଂଗଳ କାର୍ଯ୍ୟରେ ଆନନ୍ଦ ବର୍ଦ୍ଧନ ନିମନ୍ତେ ଗୁଡ଼ାଏ ଅମଂଗଳ ଆହୂତା ହୁଅନ୍ତି । ସଂଗୀତ ନାମରେ ସେହି ନଗରଦୂତୀ ମାନଙ୍କର କଦର୍ଯ୍ୟ ଅଙ୍ଗ ସଞ୍ଚାଳନ, ବିକୃତ ତାନ ଲୟ ଚିତ୍କାରକୁ ପିତାପୁତ୍ର, ମାତାପୁତ୍ରୀ ଏକସଂଗରେ ବସି ଦର୍ଶନ-ଶ୍ରବଣ ସକାଶ କିଞ୍ଚିତ୍ ମାତ୍ର ହେଲେ ନୀତିବିରୁଦ୍ଧ ବିଷୟ ବୋଲି ବିବେଚନା କରନ୍ତି ନାହିଁ ।"

ଫକୀରମୋହନ ସଂଗୀତ ଚର୍ଚ୍ଚାର ଆଦର ବିଷୟରେ ସ୍ୱୀୟ ଅଭିଜ୍ଞତାପୂର୍ଣ୍ଣ ଦୃଷ୍ଟାନ୍ତଟି ଦେଇ ଲେଖିଛନ୍ତି, "ନୀଚ ଶ୍ରେଣୀ ବ୍ୟବସାୟୀମାନରେ ଭଦ୍ର ସନ୍ତାନ ତଥା କୁଳ ଲଳନାମାନେ ସଂଗୀତ ବ୍ୟବସାକୁ ଲଜ୍ଜାକର ମନେ କରୁଥିଲେ । ଅନେକ ବର୍ଷ

ପୂର୍ବେ ମୁଁ ଥରେ ପାରଳାଖିମୁଣ୍ଡିକୁ ଯାଇ ଶ୍ରୀଯୁତ ମହାରାଜଙ୍କ ସ୍ଥାପିତ ଦୁଇଗୋଟି ବାଳିକା ବିଦ୍ୟାଳୟ ଦେଖିଥିଲି । ଗୋଟିଏ ତୈଲଙ୍ଗା, ଆଉ ଗୋଟିଏ ଉତ୍କଳୀ । ତୈଲଙ୍ଗୀ ବିଦ୍ୟାଳୟରେ ଶିକ୍ଷକ ବୟାଲା ବଜାଇଲେ ଦେବକନ୍ୟା ପରି ବାଳିକାମାନଙ୍କ ସଂଗୀତ ନର୍ତ୍ତନ ଦେଖି ବିମୋହିତ ହୋଇଗଲି । ଉତ୍କଳୀ ବାଳିକା ବିଦ୍ୟାଳୟକୁ ଯାଇ ଦେଖିଲି ଏହି ମନୋହର ବିଦ୍ୟାଟି ସେ ସ୍ଥାନରେ ପ୍ରବେଶ ଲାଭ କରିନାହିଁ । ହାୟ, ଆମ୍ଭମାନଙ୍କ କୁଳଲକ୍ଷ୍ମୀ ମାନଙ୍କର ସଂଗୀତ ଶିକ୍ଷା ନିମନ୍ତେ କେବେ ବୃହନ୍ନଳା ପାର୍ଥ ନିଯୁକ୍ତ ହେବେ !"

ସଂଗୀତର ଧର୍ମୀୟ ପ୍ରଭାବକୁ ଲକ୍ଷ୍ୟ କରି ସେ ଲେଖିଛନ୍ତି, "ଆମୋଦ ପ୍ରମୋଦ ଛାଡ଼ି ମଧ୍ୟ ଧର୍ମଚର୍ଚ୍ଚା ସକାଶ ସଂଗୀତ ବିଶେଷ ପ୍ରୟୋଜନ ଅଟେ । ବ୍ରାହ୍ମ, ବୈଷ୍ଣବ, ଖ୍ରୀଷ୍ଟାନ୍, ମୁସଲମାନ, ବୌଦ୍ଧ, ସମସ୍ତ ଧର୍ମାବଲମ୍ବୀ ସର୍ବଦେଶୀୟ ଲୋକେ ସଂଗୀତକୁ ଧର୍ମସାଧନାର ଗୋଟିଏ ବିଶେଷ ଅଙ୍ଗସ୍ଥାନରେ ଅବଲମ୍ବନ କରିଥାନ୍ତି । ପୂର୍ବାଚାର୍ଯ୍ୟ ମାନଙ୍କର ମତ, ଶତଥର ଈଶ୍ୱରନାମ ଉଚ୍ଚାରଣରେ ଯେଉଁ ପୁଣ୍ୟ, ଥରେ ଧ୍ୟାନରେ ସେହି ପୁଣ୍ୟ; ଶତଥର ଧ୍ୟାନରେ ଯେଉଁ ପୁଣ୍ୟ, ଥରେ ସଂଗୀତରେ ସେହି ପୁଣ୍ୟ; କାରଣ ସଂଗୀତରେ ସର୍ବଶରୀର ବିକମ୍ପିତ ହୋଇଯାଏ, ଅର୍ଥାତ୍ ପ୍ରତ୍ୟେକ ରକ୍ତବିନ୍ଦୁ ଈଶ୍ୱରାରାଧନାରେ ନିଯୁକ୍ତ ହୁଅନ୍ତି ।"

ଆଜି ଉତ୍କଳୀୟ ସଂଗୀତର ବହୁଳ ପ୍ରସାର ଘଟିଛି । ଉତ୍କଳୀୟ ସଂଗୀତର ଶାସ୍ତ୍ରୀୟ ମର୍ଯ୍ୟାଦାକୁ ବିଶେଷ ଗୁରୁତ୍ୱ ଦିଆଯାଉଛି । ନାଟକ, ସିନେମା ଓ ଯାତ୍ରାରେ ସଂଗୀତ ତାର ସ୍ୱତନ୍ତ୍ରତା ଜାହିର କରି ବସିଛି । ଉତ୍କଳର ନାଥ ଜଗନ୍ନାଥଙ୍କ ଉପାସନାରେ ସଂଗୀତ ନୈବେଦ୍ୟର ପରମ୍ପରା ଆଜି ବି ରହିଛି । ଆଜିର ସମାଜରେ ସଂଗୀତଚର୍ଚ୍ଚାର ଆଦର ବଢ଼ିଲାଣି । ବହୁ ନବୀନ ପ୍ରତିଭା ସୃଷ୍ଟି ହେଲେଣି । ଓଡ଼ିଶୀ ନୃତ୍ୟ ଓ ସଂଗୀତ ପରିବେଷଣ କରି ଦେଶ ବିଦେଶରେ ଉତ୍କଳୀୟ ସଂସ୍କୃତିର ସୁନାମ ପ୍ରତିଷ୍ଠା କଲେଣି । 'ସଂଗୀତ ନାଟକ ଏକାଡେମୀ'ଠାରୁ 'ନୃତ୍ୟ ସଂଗୀତ କଳାମନ୍ଦିର' ଆଦି ସରକାରୀ ଏବଂ ବେସରକାରୀ ବହୁ ଅନୁଷ୍ଠାନ ସୃଷ୍ଟିହୋଇ ନବୀନ ପ୍ରତିଭାମାନଙ୍କୁ ଗଢ଼ି ତୋଳିବା କ୍ଷେତ୍ରରେ ବହୁ ଉତ୍ସାହ ଦିଆଯାଉଛି । ଦିନେ ବ୍ୟାସକବି ମଧ୍ୟ ଏହି ଆଶା ପୋଷଣ କରି ଉଲ୍ଲେଖ କରିଥିଲେ, "ଦେଶର ସର୍ବ ବିଷୟର ଭରସାର ସ୍ଥଳ ଶିକ୍ଷିତ ଯୁବକମାନେ ସଂଗୀତଚର୍ଚ୍ଚା" ଏବଂ ନାଟକାଭିନୟ କରଣୀୟ ସ୍ଥାନରେ ସେଥିରେ କ୍ରମଶଃ ପ୍ରବୃତ୍ତ ହେଉଛନ୍ତି । (ଫକୀରମୋହନଙ୍କ ଦୁର୍ଲଭରଚନାବଳୀ (୨୦୦୦) - ପୃ ୧୧୧୭-୧୯) ବାସ୍ତବିକ୍ ଫକୀରମୋହନଙ୍କ ସଂଗୀତ ବିଷୟକ ମନ୍ତବ୍ୟଟି ଯେତିକି ଶିକ୍ଷଣୀୟ, ସେତିକି ଉପାଦେୟ ମଧ୍ୟ ।



# ଉତ୍କଳ ସାହିତ୍ୟ ସମାଜ ଓ ଫକୀରମୋହନ

୧୮୯୩ ମସିହା ଡିସେମ୍ବର ୧୨ ତାରିଖରେ କଟକ ନର୍ମାଲ ଟ୍ରେନିଂ ସ୍କୁଲକୁ କେନ୍ଦ୍ରକରି ଯେଉଁ ଆଲୋଚନା ସଭା ଅନୁଷ୍ଠିତ ହୋଇଥିଲା, ତାହା ୧୯୦୩ ମସିହା ମେ ମାସ ୭ ତାରିଖରେ "ଉତ୍କଳ - ସାହିତ୍ୟ - ସମାଜ" ନାମରେ ନାମିତ ହେଲା । ଉକ୍ତ ଆଲୋଚନା ସଭାର ପ୍ରାଣ ପ୍ରତିଷ୍ଠାତା ଥିଲେ ତତ୍‌କାଳୀନ ନର୍ମାଲ ଟ୍ରେନିଂ ସ୍କୁଲ୍‌ର ହେଡମାଷ୍ଟର ମଧୁସୂଦନ ରାଓ ଏବଂ ଦ୍ୱିତୀୟ ଶିକ୍ଷକ ସୁସାହିତ୍ୟିକ ଚନ୍ଦ୍ରମୋହନ ମହାରଣା । ଉକ୍ତ ଆଲୋଚନା ସଭାର ପ୍ରଥମ ସଭାପତି ଥିଲେ ମଧୁସୂଦନ ରାଓ ପ୍ରଥମ ସମ୍ପାଦକ ଥିଲେ ଚନ୍ଦ୍ରମୋହନ ମହାରଣା ।

ମଧୁସୂଦନ ଚନ୍ଦ୍ରମୋହନଙ୍କ ଭଳି ଜଣେ ଉତ୍ସାହୀ ଯୁବ ସହକର୍ମୀଙ୍କୁ ପାଇ ନର୍ମାଲ ସ୍କୁଲର କ୍ଷୁଦ୍ର ପରିସର ମଧ୍ୟରେ ଏକ ସାହିତ୍ୟ ସଭାର ପରିକଳ୍ପନା କରିଥିଲେ । ତାଙ୍କର ସତ୍ ପରିକଳ୍ପନା ବାସ୍ତବରୂପ ନେଇ ଏକ ପବିତ୍ର ସାରସ୍ୱତ ଅନୁଷ୍ଠାନରେ ପରିଣତ ହୋଇପାରିଥିଲା । ଏହାର ପ୍ରାଥମିକ ଅବସ୍ଥା 'ଆଲୋଚନା ସଭା' ବା ପରବର୍ତ୍ତୀ ରୂପାନ୍ତର ହେଲା 'ଉତ୍କଳ - ସାହିତ୍ୟ - ସମାଜ' ।

ଯୁବଶକ୍ତିକୁ ପବିତ୍ର ଶିକ୍ଷାଦାନ ପ୍ରତି ଆକୃଷ୍ଟ କରିବା ସଙ୍ଗେସଙ୍ଗେ ସେମାନଙ୍କ ହୃଦୟରେ ସାହିତ୍ୟଲିପ୍ସା ଜାଗ୍ରତ କରିବା ଥିଲା ଏହି ଆଲୋଚନା-ସଭାର ମୁଖ୍ୟ ଉଦ୍ଦେଶ୍ୟ । ସପ୍ତାହର ପ୍ରତି ଶନିବାର ଉଭୟ ଶିକ୍ଷକ ଓ ଛାତ୍ରମାନଙ୍କୁ ନେଇ ଏହି ସଭା ବସୁଥିଲା । ବହିରାଗତ ଅନେକ ସାହିତ୍ୟିକ ବନ୍ଧୁ ଏହି ସଭାରେ ଯୋଗ ଦେଇ ଆଲୋଚନାରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ । ସେମାନଙ୍କ ମଧ୍ୟରେ ଥଲେ ସାହିତ୍ୟିକ ବିଶ୍ୱନାଥ କର, ମଧୁସୂଦନ ଦାସ, ରାଜମୋହନ ବସୁ, ନନ୍ଦକିଶୋର ବଳ, ଦାମୋଦର କର, ଶ୍ୟାମ ସୁନ୍ଦର ନନ୍ଦ, ମିଶ୍ରୁ ନନ୍ଦ, ଦଇତାରୀ କର, କୃଷ୍ଣପ୍ରସାଦ ଚୌଧୁରୀ ଓ ଗୋପାଳ ଚନ୍ଦ୍ର ପ୍ରହରାଜ । ଶିକ୍ଷକ ମାନଙ୍କ ମଧ୍ୟରେ ଜଗନ୍ନାଥ ତ୍ରିପାଠୀ, ଆର୍ତ୍ତତ୍ରାଣ

ଶତପଥୀ ଏବଂ ଛାତ୍ରମାନଙ୍କ ମଧ୍ୟରେ ମୃତ୍ୟୁଞ୍ଜୟ ରଥ, ରତ୍ନାକର ଗରାବଡୁଙ୍କ ନାମ ଉଲ୍ଲେଖଯୋଗ୍ୟ ।

୧୮୯୪ ମସିହା 'ଆଲୋଚନା ସଭା'ର ପ୍ରଥମ ଅଧିବେଶନରେ ଚନ୍ଦ୍ରମୋହନ ସଭାପତି ଆସନ ଅଳଙ୍କୃତ କରି 'ସାହିତ୍ୟ' ଶୀର୍ଷକ ଏକ ଉପାଦେୟ ପ୍ରବନ୍ଧ ପାଠ କରିଥିଲେ । ଏହାର ଦ୍ୱିତୀୟ ଅଧିବେଶନରେ ବିଶ୍ୱନାଥ କର ମହାଶୟ ଉକ୍ତ ଅନୁଷ୍ଠାନକୁ ଲକ୍ଷ୍ୟକରି କହିଥିଲେ, "ଏହି ଆଲୋଚନା ସଭା ଉପଯୁକ୍ତ କ୍ଷେତ୍ରରେ ସଂସ୍ଥାପିତ ହୋଇଅଛି । ନର୍ମାଲ ସ୍କୁଲ ଓଡ଼ିଆ ଭାଷାର ସର୍ବୋଚ୍ଚ ବିଦ୍ୟାଳୟ । ଏହାର ଛାତ୍ରମାନେ ଉତ୍କଳଭୂମିର ନାନା ସ୍ଥାନରେ କାର୍ଯ୍ୟ କରିବାକୁ ଯିବେ । ସେମାନେ ଯେବେ ସାହିତ୍ୟ ସେବାର ଉନ୍ନତଭାବ ଓ ଆକାଂକ୍ଷା ପ୍ରାଣରେ ପୋଷଣ କରି କର୍ତ୍ତବ୍ୟ ସାଧନରେ ତତ୍ପର ହୁଅନ୍ତି, ତାହାହେଲେ ସେମାନଙ୍କ ଦ୍ୱାରା ଦେଶର ଅଶେଷ କଲ୍ୟାଣ ସାଧିତ ହୋଇପାରିବ । ସେମାନେ ନିଜେ ସାହିତ୍ୟ ସେବା କରି ଜୀବନ କୃତାର୍ଥ କରିପାରିବେ ଏବଂ ଅନ୍ୟ ଶତଶତ ପ୍ରାଣରେ ସାହିତ୍ୟ ସେବାର ଭାବ ଜାଗ୍ରତ କରିବାକୁ ସମର୍ଥ ହେବେ ।" ଫଳରେ ପ୍ରାଚୀନ ଓ ଆଧୁନିକ ଉତ୍କଳ ସାହିତ୍ୟର ଆଲୋଚନା ଏବଂ ଉତ୍କଳ ଭାଷା ଓ ସାହିତ୍ୟର ଉନ୍ନତି ସମ୍ଭବ ହୋଇପାରିଥିଲା । ଉତ୍କଳର ସମଗ୍ର ଶିକ୍ଷିତ ମଣ୍ଡଳୀଙ୍କର ଏହି ସଭାର ସଭ୍ୟଶ୍ରେଣୀଭୁକ୍ତ ହେବାର ଅଧିକାର ଥିଲା । ଓଡ଼ିଶାର ରାଜନ୍ୟବର୍ଗ ଓ ଜମିଦାର ଏହାର ପୃଷ୍ଠପୋଷକ ଥିଲେ ଏବଂ ଶିକ୍ଷିତ ବ୍ୟକ୍ତି ଓ ଅଭିଭାବକ ମାନେ ଏହି ସମାଜର ସଭ୍ୟ ହୋଇଥିଲେ ।

ପ୍ରଥମେ 'ଉତ୍କଳ ସାହିତ୍ୟ ସମାଜ'ର ଯେଉଁମାନେ କାର୍ଯ୍ୟ ନିର୍ବାହିକା କମିଟିର କର୍ମକର୍ତ୍ତା ଥିଲେ, ସେମାନେ ହେଲେ ମଧୁସୂଦନ ରାଓ-ସଭାପତି, ଫକୀରମୋହନ ସେନାପତି ଏବଂ ରାମଶଙ୍କର ରାୟ-ସହକାରୀ ସଭାପତି, ବିଶ୍ୱନାଥ କର- ସମ୍ପାଦକ, ମୃତ୍ୟୁଞ୍ଜୟ ରଥ, ଗୋପାଳ ପ୍ରହରାଜ ଏବଂ ଚନ୍ଦ୍ରଶେଖର ନନ୍ଦ-ସହକାରୀ ସମ୍ପାଦକ, କୃଷ୍ଣପ୍ରସାଦ ଚୌଧୁରୀ କୋଷାଧ୍ୟକ୍ଷ । ପ୍ରଥମ ବର୍ଷରେ ମୋଟ୍ ତିନୋଟି ଅଧିବେଶନ ହୋଇଥିଲା । ପ୍ରଥମ ଅଧିବେଶନରେ ଓଡ଼ିଆ ଭାଷା ଓ ସାହିତ୍ୟର ଇତିହାସ ସଂକଳନ, ଓଡ଼ିଆ ଶବ୍ଦକୋଷ ସଂକଳନ ଓ ଓଡ଼ିଆ ପ୍ରାଚୀନ ଗ୍ରନ୍ଥମାନଙ୍କର ସଂଗ୍ରହ ଭାର କାର୍ଯ୍ୟ ନିର୍ବାହିକା ସମିତି ହସ୍ତରେ ନ୍ୟସ୍ତ ହୋଇଥିଲା ।

ବିଶୁଦ୍ଧ ଓଡ଼ିଆ ଶବ୍ଦକୋଷ ସଂକଳନ ନିମନ୍ତେ ଉତ୍କଳଖଣ୍ଡର ବିଭିନ୍ନ ଅଞ୍ଚଳରେ ପ୍ରଚଳିତ ବିଶେଷ ଶବ୍ଦମାନ ସଂଗ୍ରହ କରିବା ନିମିତ୍ତ ବିଭିନ୍ନ ଅଞ୍ଚଳର ବ୍ୟକ୍ତିମାନଙ୍କୁ

ନେଇ ଶାଖା କମିଟି ଗଠନ କରାଯାଇଥିଲା । ବାଲେଶ୍ୱରରୁ ଏହି କାର୍ଯ୍ୟରେ ନିୟୋଜିତ ଥିଲେ ଫକୀରମୋହନ ସେନାପତି ଓ ଭୋଳାନାଥ ସାମନ୍ତରାୟ । 'ଉତ୍କଳ ସାହିତ୍ୟ ସମାଜ'ର ବାଲେଶ୍ୱରରୁ ଅନ୍ୟ ଯେଉଁମାନେ ପୃଷ୍ଠପୋଷକ ଓ ସଭ୍ୟଥିଲେ, ସେମାନେ ହେଲେ ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ ବାହାଦୁର, ରାଜା ଶ୍ରୀ ଶ୍ୟାମଚନ୍ଦ୍ର ଭଞ୍ଜଦେଓ (ନୀଳଗିରି), ସାମନ୍ତ ରାଜନାରାୟଣ ଦାସ, ସାମନ୍ତ ରାଧାଚରଣ ଦାସ ପୃଷ୍ଠପୋଷକ ଏବଂ ଶ୍ରୀଯୁକ୍ତ ରାଧାନାଥ ରାୟ ବାହାଦୁର, ଶ୍ରୀଯୁକ୍ତ ଚନ୍ଦ୍ରମୋହନ ମହାରଣା, ଶ୍ରୀଯୁକ୍ତ ଲୋକନାଥ ମହାପାତ୍ର, ଓ ନୀଳମଣି ଚାନ୍ଦ ଦେ ଅନ୍ୟତମ ସଭ୍ୟ ।

ଫକୀରମୋହନ 'ଉତ୍କଳ - ସାହିତ୍ୟ - ସାମଜ'ର ପ୍ରଥମ, ଦ୍ୱିତୀୟ ଓ ତୃତୀୟ ବାର୍ଷିକ ଅଧିବେଶନର କାର୍ଯ୍ୟକାରୀ ସଭାପତି ଥାଇ ସୁଚାରୁରୂପେ ଦାୟିତ୍ୱ ସମ୍ପାଦନ କରିଥିଲେ । 'ଉତ୍କଳ ସାହିତ୍ୟ ସମାଜ'ର ସ୍ଥାୟୀ ଗୃହ, ପୁସ୍ତକାଗାର, ପ୍ରାଚୀନ ଓ ଆଧୁନିକ ଓଡ଼ିଆ ପୁସ୍ତକ, ପତ୍ରପତ୍ରିକା ତଥା ପୋଥିପତ୍ର ସଂଗ୍ରହ ଆଦି ସ୍ଥାୟୀ ଅଭାବ ଅସୁବିଧା ଦୂରୀକରଣ ପାଇଁ ବିହିତ ପଦକ୍ଷେପ ଗ୍ରହଣ କରିଥିଲେ ।

'ଉତ୍କଳ ସାହିତ୍ୟ ସମାଜ'ର ଦ୍ୱିତୀୟ ବାର୍ଷିକ ଅଧିବେଶନରେ ଫକୀରମୋହନ ସେନାପତି ଅଭ୍ୟର୍ଥନା ସମିତିର ସଭାପତି ଆସନ ଅଳଂକୃତ କରି ଉପସ୍ଥିତ ଅତିଥି ଓ ଭଦ୍ରବ୍ୟକ୍ତି ମାନଙ୍କୁ ଉତ୍କଳର ପ୍ରାଚୀନ ଗୌରବ ବିଷୟରେ ଅନେକ ଉପାଦେୟ କଥା କହି ସାଦର ସମ୍ଭାଷଣ କରିଥିଲେ ।

ଫକୀରମୋହନ ସେନାପତିଙ୍କ 'କଟକ ଆଲୋଚନା ସଭା'ର ୪ର୍ଥ ବାର୍ଷିକ ଅଧିବେଶନରେ ପ୍ରଦତ୍ତ 'ସଭାପତି ଅଭିଭାଷଣ' ଏବଂ 'ଉତ୍କଳ ସାହିତ୍ୟ ସମାଜ'ର ବାର୍ଷିକ ଉତ୍ସବ (ତା ୬।୯।୧୯୧୪)ର ଅଭିଭାଷଣ ଦୁଇଟି ଖୁବ୍ ଉପାଦେୟ ପ୍ରବନ୍ଧ । ଉକ୍ତ ଅଭିଭାଷଣ ଗୁଡ଼ିକରେ ସ୍ୱୀୟ ମାତୃଭାଷା-ସାହିତ୍ୟର ଉନ୍ନତି କାମନା ହିଁ ଥିଲା ତାଙ୍କ ବକ୍ତବ୍ୟର ମୁଖ୍ୟ ଉଦ୍ଦେଶ୍ୟ ।

ଏହିପରି 'ଉତ୍କଳ - ସାହିତ୍ୟ - ସମାଜ' ସହିତ ଫକୀରମୋହନଙ୍କ ସାରସ୍ୱତ ସମ୍ପର୍କ ଅତି ନିବିଡ଼ ଥିଲା । ଏପରିକି ଜୀବନର ଅନ୍ତିମ କାଳରେ ମଧ୍ୟ ଏହି ଅନୁଷ୍ଠାନର ମହତ୍ ଉଦ୍ଦେଶ୍ୟ ପ୍ରତି ସଚେତନ ରହି ସ୍ୱୀୟ ମାତୃଭାଷା ସାହିତ୍ୟର ଶ୍ରୀବୃଦ୍ଧି ଓ ସମୃଦ୍ଧି ସାଧନ କରିବାକୁ ପରମ କର୍ତ୍ତବ୍ୟ ମନେକରିଥିଲେ ।



# ଫକୀରମୋହନଙ୍କ ଦୁର୍ଲଭ ଅଭିଭାଷଣ

ବ୍ୟାସକବି ଫକୀରମୋହନ ସେନାପତି ତାଙ୍କ ଜୀବଦ୍ଦଶାରେ ତିନୋଟି ସୁଦୀର୍ଘ ଅଭିଭାଷଣ ପ୍ରଦାନ କରିଥିବାର ସୂଚନା ମିଳେ । ଏହି ଅଭିଭାଷଣ ଗୁଡ଼ିକ ଜାତୀୟ ଦାୟ ଦୃଷ୍ଟିରୁ ତାଙ୍କୁ ଦେବାକୁ ପଡ଼ିଥିଲା । ସେହି ଦାୟ ବା ଦାୟିତ୍ୱ ନଥିଲେ ତାଙ୍କ ଅମୃତମୟ ଲେଖନୀରୁ ଆମେ ଉପାଦେୟ "ଅଭିଭାଷଣ" ଗୁଡ଼ିକ ପାଇ ପାରନ୍ତୁ ନାହିଁ । ସେନାପତି ଥିଲେ ଖୁବ୍ ଆଶାବାଦୀ । ଆଧୁନିକ ଶିକ୍ଷିତ ଯୁବସମାଜ ପ୍ରତି ତାଙ୍କର ଅଗାଧ ବିଶ୍ୱାସ ଥିଲା । ପତ୍ରପତ୍ରିକାରେ ପ୍ରକାଶିତ ସେମାନଙ୍କ ଲେଖାଗୁଡ଼ିକୁ ସେ ମନଯୋଗ ସହକାରେ ପାଠ କରୁଥିଲେ । ଏସବୁ ଲେଖାରୁ ସେ ଖୁବ୍ ଆତ୍ମସନ୍ତୋଷ ପାଉଥିଲେ ଏବଂ ମାତୃଭାଷା ସାହିତ୍ୟର ଉନ୍ନତିର ସୁଖସ୍ୱପ୍ନ ମଧ୍ୟ ଦେଖୁଥିଲେ ।

ଆଲୋଚ୍ୟ ତିନୋଟି ଅଭିଭାଷଣ ମଧ୍ୟରୁ ପ୍ରଥମଟି କଟକ 'ଆଲୋଚନା ସଭା' ର ଚତୁର୍ଥ ବାର୍ଷିକ ଅଧିବେଶନ ତା ୪।୫।୧୯୧୨ ମସିହାରେ (ସଭାପତି ଆସନ ଅଳଂକୃତ କରି) ପ୍ରଦତ୍ତ ଅଭିଭାଷଣ, ଯାହା ମୁକୁର/୭ମ ଭାଗ/୧ମ ସଂଖ୍ୟାରେ/ ବୈଶାଖ ୧୩୧୯ ସାଲ/ ଏପ୍ରିଲ୍ ୧୯୧୨ ମସିହାରେ ପ୍ରକାଶ ପାଇଥିଲା । କଟକ ନର୍ମାଲ ଟ୍ରେନିଂସ୍କୁଲକୁ କେନ୍ଦ୍ରକରି ଗଢ଼ିଉଠିଥିଲା ଏହି 'ଆଲୋଚନା ସଭା' (୧୮୯୩) ପରବର୍ତ୍ତୀ କାଳରେ 'ଉତ୍କଳ ସାହିତ୍ୟ ସମାଜ' (୧୯୦୩) ନାମରେ ନାମିତ ହେଲା । ଫକୀରମୋହନ ଉକ୍ତ 'ଉତ୍କଳ ସାହିତ୍ୟ ସମାଜ' ର ପ୍ରଥମ, ଦ୍ୱିତୀୟ ଓ ତୃତୀୟ ବାର୍ଷିକ ଅଧିବେଶନର କାର୍ଯ୍ୟକାରୀ ସଭାପତି ଥାଇ ସୁଚାରୁରୂପେ ଦାୟିତ୍ୱ ସଂପାଦନ କରିଥିଲେ । ଦ୍ୱିତୀୟ ଅଭିଭାଷଣଟି ତା ୬।୯।୧୯୦୪ ମସିହାରେ ଅନୁଷ୍ଠିତ ଦ୍ୱିତୀୟ ବାର୍ଷିକ ଅଧିବେଶନରେ ସେ ଅଭ୍ୟର୍ଥନା ସମିତିର ସଭାପତି ଆସନ ଅଳଂକୃତ କରି ଉପସ୍ଥିତ ଅତିଥି ଓ ଭଦ୍ରବ୍ୟକ୍ତିମାନଙ୍କୁ ଉତ୍କଳର ପ୍ରାଚୀନ ଗୌରବ ବିଷୟରେ ଅନେକ ଉପାଦେୟ ବ୍ୟାଖ୍ୟା କରି ସମ୍ଭାଷଣ କରିଥିଲେ । ଉକ୍ତ ଅଭିଭାଷଣ ଦୁଇଟିରେ ସେ

ଓଡ଼ିଆ ଜାତି, ଭାଷା ଓ ସାହିତ୍ୟର ପ୍ରାଚୀନତା, ଅନ୍ୟାନ୍ୟ ପ୍ରାଦେଶିକ ଭାଷା, ସାହିତ୍ୟର ବିକାଶ ତୁଳନାରେ ଓଡ଼ିଆ ସାହିତ୍ୟର ଦରିଦ୍ର ଅବସ୍ଥା ଏବଂ ଏହାର ଉନ୍ନତି ପାଇଁ ରାଜ ଅନୁଗ୍ରହ କାମନା କରିଥିଲେ । ଏଥି ସହିତ ଜାତୀୟ କର୍ତ୍ତବ୍ୟ ଦୃଷ୍ଟିରୁ ଶିକ୍ଷିତ ଯୁଗଗୋଷ୍ଠୀଙ୍କର ସାରସ୍ୱତ ସାଧନା କ୍ଷେତ୍ରରେ ଆଗ୍ରହ ଓ ଯୋଗଦାନ ଦେଖି ସନ୍ତୋଷ ପ୍ରକାଶ କରି ଭାଷା ସାହିତ୍ୟର ଉନ୍ନତି ସମ୍ଭାବନାକୁ ସ୍ୱୀକାର କରିଥିଲେ । ଏହାପରେ ଫକୀରମୋହନ ୧୯୧୪ ମସିହାରୁ ୧୯୧୮ ମସିହା ପର୍ଯ୍ୟନ୍ତ 'ଉତ୍କଳ ସାହିତ୍ୟ ସମାଜ'ର ସ୍ଥାୟୀ ସଭାପତି ଦାୟିତ୍ୱ ତୁଲାଇଥିଲେ ।

ତାଙ୍କର ତୃତୀୟ ଓ ଶେଷ ଅଭିଭାଷଣଟି ଥିଲା ଉତ୍କଳ ସମ୍ମିଳନୀର ୧୩ଶ ଅଧିବେଶନରେ ପ୍ରଦତ୍ତ ସଭାପତି ଅଭିଭାଷଣ । ଏହି ସମ୍ମିଳନୀ ୧୯୧୮ ମାର୍ଚ୍ଚ ମାସ ତା ୩୦ ଓ ୩୧ ରିଖ ଦୁଇଦିନ ଧରି କଟକର ଉତ୍ତର ପଶ୍ଚିମ ପ୍ରାନ୍ତସ୍ଥିତ 'ଇଦିଗା' ନାମକ ସୁବିସ୍ତୃତ ପଡ଼ିଆରେ ଅନୁଷ୍ଠିତ ହୋଇଥିଲା । ଏଥିପାଇଁ ୧୯୧୭ ମସିହା ନଭେମ୍ବର ୯ ତାରିଖରେ ଅଭ୍ୟର୍ଥନା ସମିତିର ଏକ ଅଧିବେଶନ ବସିଥିଲା । କନିକାର ମାନ୍ୟବର ରାଜାସାହେବ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ସଭାପତି ଆସନ ଅଳଙ୍କୃତ କରିଥିଲେ । ଉକ୍ତ ଅଧିବେଶନରେ ପାରଳାଖେମୁଣ୍ଡିର ଉଦୀୟମାନ ରାଜାସାହେବ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କୁ ସଭାପତି ନିର୍ବାଚନ କରାଯିବାର ସ୍ଥିର ହୋଇଥିଲା । ଯଦି ପାରଳାଧୀଶ୍ୱର କୌଣସି କାରଣ ବଶତଃ ଅସମ୍ମତ ହୁଅନ୍ତି, ତା'ହେଲେ ଶେରଗଡ଼ର ମାନ୍ୟବର ରାଜା ସାହେବ ଶୋଭାଚନ୍ଦ୍ର ସିଂହଦଓଙ୍କୁ ସଭାପତି ପଦରେ ବରଣ କରାଯିବ ବୋଲି ସ୍ଥିର ହୋଇଥିଲା । ତାଙ୍କ ଅସମ୍ମତିରେ ଉତ୍କଳର ବ୍ୟାସକବି ଫକୀରମୋହନ ସେନାପତି ଉକ୍ତ ପଦରେ ଅଭିଷିକ୍ତ ହେବେ ବୋଲି ପ୍ରସ୍ତାବ ଆଗତ ହୋଇ ସର୍ବସମ୍ମତି କ୍ରମେ ଗୃହୀତ ହୋଇଥିଲା । ଉକ୍ତ ଅଧିବେଶନରେ 'କାର୍ଯ୍ୟନିର୍ବାହିକା ସମିତି' ମଧ୍ୟ ଗଠନ କରାଯାଇଥିଲା । ଉକ୍ତ 'କାର୍ଯ୍ୟନିର୍ବାହିକା ସମିତି'ର ସଭାପତି ଥିଲେ କନିକାର ରାଜା ସାହେବ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ଏବଂ ସଂପାଦକ ଥିଲେ ମିଷ୍ଟର ମଧୁସୂଦନ ଦାସ ।

ବ୍ୟାସକବିଙ୍କ ପ୍ରତି ଈଶ୍ୱରଙ୍କର କରୁଣା ଥିଲା ଅପାର । ତା' ନହୋଇଥିଲେ ଆଜୀବନ ଉତ୍କଳ-ଜନନୀଙ୍କ ସେବାରେ ଓ ଉତ୍କଳବାଣୀଙ୍କର ଆରାଧନାରେ ବ୍ରତୀ

ହୋଇ ସମ୍ମାନ ପ୍ରୟାସୀ ନଥିବା ଫକୀରମୋହନଙ୍କୁ ଅଯାଚିତ ସମ୍ମାନ ଅଜାଡ଼ି ଦେଇ ଉତ୍କଳବାସୀ ନିଜକୁ ଭାଗ୍ୟବାନ ମନେ କରିବା ସହିତ ଏକ ଆଦର୍ଶ ପରମ୍ପରା ସୃଷ୍ଟି କରିନଥାନ୍ତେ । ସମ୍ମିଳନୀ ଆରମ୍ଭ ହେବାର ଦୁଇ ଚାରିଦିନ ପୂର୍ବରୁ ହଠାତ୍ ପାରଳାଧୀଶ୍ୱରଙ୍କ ପାଟପ୍ରିୟା ରୋଗାକ୍ରାନ୍ତ ହେଲେ । ଫଳରେ ସହଧର୍ମିଣୀଙ୍କୁ ରୋଗଗ୍ରସ୍ତ ଅବସ୍ଥାରେ ଛାଡ଼ିଦେଇ ଗଜପତି ମହାରାଜା ସମ୍ମିଳନୀରେ ଯୋଗଦେବା ସମ୍ଭବ ହେଲାନାହିଁ । ତେଣୁ ଶେରଗଡ଼ାଧୀଶ୍ୱରଙ୍କୁ ସଭାପତି ପଦରେ ଅଳଂକୃତ କରାଯିବ ବୋଲି ସ୍ଥିର ହେଲା । କିନ୍ତୁ ଶେରଗଡ଼ର ରାଜାସାହେବ ମାନ୍ଦ୍ରାଜ ବ୍ୟବସ୍ଥାପକ ସଭାରେ ଯୋଗଦାନ କରିବାକୁ ସ୍ଥିର କରିଥିବାରୁ ସେ ମଧ୍ୟ ସମ୍ମିଳନୀରେ ଯୋଗ ଦେବାକୁ ସମ୍ମତ ହେଲେନାହିଁ । ପରିଶେଷରେ ଅଭ୍ୟର୍ଥନା ସମିତିର ପୂର୍ବ ନିଷ୍ପତ୍ତି ଅନୁଯାୟୀ ବ୍ୟାସକବିଙ୍କୁ ସମ୍ମିଳନୀର ସଭାପତି ହେବାପାଇଁ ନିମନ୍ତ୍ରଣ ଦିଆଯାଇଥିଲା ।

ଏହି ସମ୍ବାଦ ପାଇଲା ସମୟରେ ବ୍ୟାସକବି ଖୁବ୍ ରୋଗାକ୍ରାନ୍ତ ଥିଲେ । ଏକେତ ବୃଦ୍ଧାବସ୍ଥା, ସେଥିରେ ରୋଗଗ୍ରସ୍ତ ହୋଇ ଖୁବ୍ ରୁଗ୍ଣ ଓ ଅବସନ୍ନ ହୋଇଯାଇଥିଲେ । ତଥାପି, ମନରେ ଦୃଢ଼ ସଂକଳ୍ପ ନେଇ ନିଜର ଭଗ୍ନ ଶରୀର ଓ ସ୍ୱାସ୍ଥ୍ୟ ପ୍ରତି ଭ୍ରୂକ୍ଷେପ ନକରି ଜାତୀୟ କର୍ତ୍ତବ୍ୟ ଜ୍ଞାନରେ ସମ୍ମିଳନୀରେ ଯୋଗଦେବାକୁ ନିଷ୍ପତ୍ତି ନେଇଥିଲେ ଏବଂ ସଭାପତି ଆସନ ଅଳଂକୃତ କରି ସ୍ୱୀୟ କାର୍ଯ୍ୟ ସୁସଂପନ୍ନ କରିଥିଲେ । ବ୍ୟାସକବି ସ୍ୱୀୟ ଅଭିଭାଷଣରେ ଲେଖିଛନ୍ତି, "ଉତ୍କଳ ସମ୍ମିଳନୀ ସଭାପତି" ପଦରେ ନିଯୁକ୍ତି ସମ୍ବନ୍ଧେ ସମ୍ମିଳନୀ ପକ୍ଷରୁ ଖଣ୍ଡିଏ ଟେଲିଗ୍ରାଫ୍ ପାଇବାର ମୁଁ କେତେକ ଘଣ୍ଟା ପୂର୍ବେ ଦୁରାରୋଗରୁ ଉଠି ବସିଥିଲି । ପ୍ରଥମରେ ଯେପରି ଟେଲିଗ୍ରାମର ଅର୍ଥ ବୁଝିପାରିଲି ନାହିଁ । ସମ୍ମିଳନୀର ଆରମ୍ଭଠାରୁ ଗତବର୍ଷ ପର୍ଯ୍ୟନ୍ତ ଯେଉଁ ସିଂହାସନ ରାଜା, ମହାରାଜା ଏବଂ ମହାମହା ବିଦ୍ୱାନ୍ ସମ୍ଭ୍ରାନ୍ତ ମହାପୁରୁଷମାନଙ୍କ ଦ୍ୱାରା ଶୋଭିତ ହୋଇ ଆସୁଥିଲା, ଆଜି ହଠାତ୍ ସର୍ବ ବିଷୟରେ ଶକ୍ତିହୀନ ଜରାଜୀର୍ଣ୍ଣ ରୋଗ ଭୋଗରେ ବିଚଳିତମତି ଗୋଟାଏ ଲୋକକୁ ଆହ୍ୱାନ କି ସକାଶେ ? ଟେଲିଗ୍ରାମରେ ମାନନୀୟ ଦାସ ମହାଶୟଙ୍କ ସ୍ୱାକ୍ଷର ଦେଖିଲି, ଅନ୍ୟଥା ମୋତେ କେହି ବିଦ୍ରୂପ କରୁଅଛି ବୋଲି ମନରେ କରିଥାନ୍ତି । ଯାହାହେଉ ମନରେ କଲି ବର୍ତ୍ତମାନ ମୋ ପକ୍ଷରେ କର୍ତ୍ତବ୍ୟ କ'ଣ ? ପର ମୁହୂର୍ତ୍ତରେ ଭାବିଲି ଏହି ସମ୍ମିଳନୀ ଉତ୍କଳର ରାଜା, ମହାରାଜା କିମ୍ବା ଶିକ୍ଷିତ ଧନବନ୍ତ ଲୋକମାନଙ୍କର ନୁହେଁ । ରାଜା ମହାରାଜାଠାରୁ ଦୀନ ଦରିଦ୍ର ପର୍ଯ୍ୟନ୍ତ ସର୍ବଜାତୀୟ

ସର୍ବଶ୍ରେଣୀୟ ଲୋକଙ୍କର ମଙ୍ଗଳ କାମନାରେ ଏହା ପ୍ରତିଷ୍ଠିତ । ସୁତରାଂ ଉତ୍କଳବାସୀ ପ୍ରତ୍ୟେକ ଲୋକର ଏଥିରେ ସମାନ ଅଧିକାର ଅଛି । ଏହି କଥା ସମ୍ମିଳନୀ ପକ୍ଷରୁ ବାରମ୍ବାର ବୁଝାଇ ଦିଆଯାଉଅଛି । ମାତ୍ର ବାକ୍ୟଠାରୁ କାର୍ଯ୍ୟର ଦୃଷ୍ଟାନ୍ତ ଅଧିକ ଫଳଦାୟୀ ଅଟେ । ଏହା ପ୍ରମାଣ କରିବା ନିମନ୍ତେ ମୁଁ ନିମ୍ନ ଶ୍ରେଣୀରୁ ବାହାରି ଆସି ସଭାପତି ଆସନ ଅଧିକାର କରି ବସିବାକୁ ସାହସ କରିଅଛି । ଉତ୍ତର-ଆମେରିକାର ଯୁକ୍ତରାଜ୍ୟରେ ଏକ ସମୟରେ ଜଣେ ନାଉଡ଼ି (ନାଉରୀ) ପ୍ରେସିଡେଣ୍ଟ ଅର୍ଥାତ୍ ରାଜକୀୟ ପ୍ରଧାନ ପଦରେ ନିଯୁକ୍ତ ହୋଇଥିଲେ, ଯେହେତୁ ତାହା ସାଧାରଣତନ୍ତ୍ରାଧୀନ ଥିଲା ।"

ଉତ୍କଳ ସମ୍ମିଳନୀର ସୃଷ୍ଟି (୧୯୦୩) ଠାରୁ ବ୍ୟାସକବିଙ୍କର ସଂପର୍କ ନିରବଚ୍ଛିନ୍ନ ଥିଲା । ଏହି ଅନୁଷ୍ଠାନ ଥିଲା ଏକ ଜାତୀୟ ମଞ୍ଚ । ଭାଷା ଭିତ୍ତିରେ ସମସ୍ତ ବିଚ୍ଛିନ୍ନାଞ୍ଚଳକୁ ଏକତ୍ର କରି ଗୋଟିଏ ଶାସନାଧୀନରେ ଆଣି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବା ଏହି ଅନୁଷ୍ଠାନର ମୂଳ ଲକ୍ଷ୍ୟ ଥିଲା । କାରଣ ତତ୍କାଳୀନ ଚେତନଶୀଳ ଉତ୍କଳବାସୀ (ରାଜା, ଜମିଦାର, ଶିକ୍ଷିତବର୍ଗ) ଅନୁଭବ କରିଥିଲେ, ଯଦି ସମଗ୍ର ଓଡ଼ିଆ ଭାଷା ପ୍ରଚଳିତ ଅଞ୍ଚଳକୁ ଏକତ୍ର କରାନଯିବ, ତା'ହେଲେ ଓଡ଼ିଆ ଜାତିର ସାମାଜିକ ଜୀବନଧାରା, ଭାଷା, ସାହିତ୍ୟ ଓ ସଂସ୍କୃତିର ବିକାଶ ସାଧିତ ହୋଇପାରିବ ନାହିଁ । ବରଂ ଏହା ବରଜାତିର ଦାୟାଦ ହୋଇ, କଳା, ଭାସ୍କର୍ଯ୍ୟର ପରାକାଷ୍ଠା ଦେଖାଇ ଏକ ଜୀବନ୍ମୃତ ପଙ୍ଗୁ ଜାତିରେ ପରିଣତ ହେବ । ଦୀନ, ଦରିଦ୍ର, କୁଲିଗିରି ଓ ଗୋତି ଶ୍ରମିକ ଜାତି ଭାବରେ ନିଜର ପରିଚୟ ଦେବ । ଫକୀରମୋହନ ଏକଥା ଭଲଭାବରେ ଅନୁଭବ କରିଥିଲେ ଏବଂ ଏହାର ନିରାକରଣ ପାଇଁ ସମଗ୍ର ଓଡ଼ିଶାରେ ଜନସଚେତନତା ସୃଷ୍ଟି କରିବାରେ ସେନାପତିର ଭୂମିକା ନିର୍ବାହ କରିଥିଲେ ।

ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ କଟକ (୧୯୦୩), ଦ୍ୱିତୀୟ ଅଧିବେଶନ, କଟକ (୧୯୦୪), ତୃତୀୟ ଅଧିବେଶନ, ବାଲେଶ୍ୱର (୧୯୦୬), ଚତୁର୍ଥ ଅଧିବେଶନ, ବ୍ରହ୍ମପୁର (୧୯୦୭), ପଞ୍ଚମ ଅଧିବେଶନ, ପୁରୀ (୧୯୦୮), ଷଷ୍ଠ ଅଧିବେଶନ, କଟକ (୧୯୦୯), ସପ୍ତମ ଅଧିବେଶନ, କଟକ (୧୯୧୧), ଅଷ୍ଟମ ଅଧିବେଶନ, ବ୍ରହ୍ମପୁର (୧୯୧୨), ନବମ ଅଧିବେଶନ, ପୁରୀ (୧୯୧୩), ଦଶମ ଅଧିବେଶନ, ପାରଳାଖେମୁଣ୍ଡି (୧୯୧୪), ଏକାଦଶ ଅଧିବେଶନ,

ସମ୍ବଲପୁର (୧୯୧୫), ୧୨ଶ ଅଧିବେଶନ, ବାଲେଶ୍ୱର (୧୯୧୬), ୧୩ଶ ଅଧିବେଶନ, କଟକ (୧୯୧୮), ଉତ୍କଳ ସମ୍ମିଳନୀର ବିଶେଷ ବା ସ୍ୱତନ୍ତ୍ର ଅଧିବେଶନ, କଟକ (୧୯୧୮), ୧୪ଶ ଅଧିବେଶନ, କଟକ (୧୯୧୯), ୧୫ଦଶ ଅଧିବେଶନ, ପୁରୀ (୧୯୨୦) ଠାରେ ଅନୁଷ୍ଠିତ ହୋଇଥିଲା । ବ୍ୟାସକବି ୧୯୧୮ ମସିହା, ଉତ୍କଳ ସମ୍ମିଳନୀର ୧୩ଶ ଅଧିବେଶନ ପର୍ଯ୍ୟନ୍ତ ପ୍ରାୟ ସବୁ ସମ୍ମିଳନୀରେ ଯୋଗଦେଉଥିଲେ ଏବଂ ସକ୍ରିୟ ସହଯୋଗ ମଧ୍ୟ କରିଥିଲେ । ତାଙ୍କ ସହିତ ବାଲେଶ୍ୱରର ଅନ୍ୟ ଯେଉଁମାନେ ଉତ୍କଳ ସମ୍ମିଳନୀର ସକ୍ରିୟ ସଭ୍ୟ ଥାଇ ବିଭିନ୍ନ କାର୍ଯ୍ୟଭାର ତୁଲାଇଥିଲେ, ସେମାନେ ହେଲେ ରାଜା ବୈକୁଣ୍ଠନାଥ ଦେ ବାହାଦୁର, ସାମନ୍ତ ରାଧାଚରଣ ଦାସ, ଦୈତାରୀ ପ୍ରସାଦ ଦାସ, ଭୋଳାନାଥ ସାମନ୍ତରାୟ, ଭଗବାନ ଚନ୍ଦ୍ର ଦାସ, ଶ୍ୟାମ ସୁନ୍ଦର ବିଶ୍ୱାଳ, ମୁକୁନ୍ଦ ପ୍ରସାଦ ଦାସ, ଭଦ୍ରକରୁ ଭାଗବତ ପ୍ରସାଦ ମହାପାତ୍ର (ପ୍ଲିଡର), ଲକ୍ଷ୍ମୀକାନ୍ତ ମହାପାତ୍ର, ଚିନ୍ତାମଣି ମହାନ୍ତି । ଉତ୍କଳ ସମ୍ମିଳନୀର ଆରମ୍ଭରେ କବିବର ରାଧାନାଥଙ୍କ ରଚିତ 'ଭାରତ ଗୀତିକା' (ସର୍ବେଷାଂ ନୋ ଜନନୀ ଭାରତ......) ହାର୍ମୋନିୟମ ସାହାଯ୍ୟରେ ଗାନ କରାଯାଉଥିଲା । ଏହି ସଂଗୀତ ଗାନ କରାହେବା ମାତ୍ରେ ସଭାସ୍ଥ ସମସ୍ତବ୍ୟକ୍ତି ଦଣ୍ଡାୟମାନ ହୋଇ ନିବିଷ୍ଟ ଚିତ୍ତରେ ଜନନୀ ଜନ୍ମଭୂମିର ସ୍ତବ ଶ୍ରବଣ କରୁଥିଲେ । ପୁରୀଠାରେ ଅନୁଷ୍ଠିତ 'ଉତ୍କଳ ସମ୍ମିଳନୀ'ର ନବମ ଅଧିବେଶନ (୧୯୧୩) ଆରମ୍ଭରେ ମଧ୍ୟ କବିବରଙ୍କ ରଚିତ 'ଭାରତ ଗୀତିକା' ହାର୍ମୋନିୟମ ସାହାଯ୍ୟରେ ଗାନ କରାଯାଇଥିଲା ଏବଂ ପ୍ରଥମ ଦିନର ଅଧିବେଶନ ଶେଷରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ରଚିତ 'ବନ୍ଦେ ଉତ୍କଳ ଜନନୀ' ସଂଗୀତ ଗାନ କରାଯାଇଥିଲା । ଏହାପରେ ପ୍ରଥମ ଦିନର କାର୍ଯ୍ୟ ସମାପ୍ତ ବୋଲି ଘୋଷଣା କରାଯାଇଥିଲା । ଦୁଃଖର ବିଷୟ ନିଜକୁ ଏ ପରମ୍ପରାର ଉତ୍ତରଦାୟାଦ କହିବାକୁ ଆଜି ଘୃଣା ଲାଗେ । 'ଭାରତ ଗୀତିକା' ଏବଂ 'ବନ୍ଦେ ଉତ୍କଳ ଜନନୀ' ଗାନ କଲାବେଳେ ସାମାନ୍ୟ ଦୁଇ ମିନିଟ୍ ଛିଡ଼ା ହେବାକୁ ଏତେ କଷ୍ଟବୋଧ କରୁ ଏବଂ ନିର୍ଲଜ୍ଜ ଭାବରେ ସିଟ୍‌ରେ ବସି ରହି ଏକ ଜାତୀୟ ପରମ୍ପରାକୁ ଗଳରୋଧ କରି ହତ୍ୟା କରିବାକୁ କୁଣ୍ଠା ପ୍ରକାଶ କରୁନାହୁଁ । ନେତା, ଶ୍ରୋତା ଉପସ୍ଥିତ କେତେକ ସାଂସ୍କୃତିକ ଅନୁଷ୍ଠାନରେ ଏଭଳି ଦୁର୍ଘଟଣା ଘଟିବାର ଦୃଶ୍ୟ ଏ ଲେଖକ ମଧ୍ୟ ଅଙ୍ଗେ ଲିଭାଇଛି ।

ବ୍ୟାସକବି ତାଙ୍କ ଅଭିଭାଷଣରେ ଓଡ଼ିଆ ଭାଷାଭାଷୀ ବିଚ୍ଛିନ୍ନ ଅଞ୍ଚଳର ଏକତ୍ରୀକରଣ, ସ୍ୱଦେଶୀୟ ବସ୍ତ୍ରର ଉତ୍ପାଦନ ଓ ବ୍ୟବହାର, ଦେଶୀୟ ଲୁଣ (ପଙ୍ଗାଲୁଣ) ଉତ୍ପାଦନ ଓ ବ୍ୟବହାର, ମାତୃଭାଷା ଓ ସାହିତ୍ୟର ଉନ୍ନତି, ଉତ୍କଳ ଦେଶରେ ଇଂରାଜୀ ପତ୍ରିକା ପ୍ରକାଶରେ ସପକ୍ଷ ଯୁକ୍ତି ଏବଂ ଦୀର୍ଘାୟୁ କାମନା ତଥା ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟ ଉତ୍କଳୀୟ ଶିକ୍ଷିତ ଯୁବକମାନଙ୍କୁ ସୈନ୍ୟବାହିନୀରେ ଗ୍ରହଣ କରିବାର ସୁଯୋଗ ସପକ୍ଷରେ ଗୁରୁତ୍ୱ ଆରୋପ କରିଛନ୍ତି । ଉକ୍ତ ବିଷୟରେ ଫକୀରମୋହନଙ୍କ ସୁଦୂର ଦୃଷ୍ଟିଭଙ୍ଗୀ, ଅତ୍ୟାଧୁନିକ ରୁଚିବୋଧ, ଉତ୍କଳୀୟ ପରମ୍ପରା ପ୍ରତି ଗୁରୁତ୍ୱ, ସ୍ୱାଧୀନ ମନ୍ତବ୍ୟ ସହିତ ଉତ୍କଳପ୍ରାଣତାର ପରିଚୟ ମିଳିଥାଏ । ଦେଶ ମିଶ୍ରଣ ପ୍ରସଙ୍ଗରେ ସେ କହିଛନ୍ତ, "ଭାଇମାନେ ! ଯେ ପର୍ଯ୍ୟନ୍ତ ସମସ୍ତ ଉତ୍କଳ ଏକତ୍ରିତ ହୋଇନାହିଁ ଏହାର ଉନ୍ନତିର ପ୍ରତ୍ୟାଶା ବିଡ଼ମ୍ବନା ମାତ୍ର- ଏହା ଆପଣମାନେ ଜାଣି ପାରୁଅଛନ୍ତି । ସମ୍ମିଳନୀ ଆରମ୍ଭଠାରୁ ଏ ପର୍ଯ୍ୟନ୍ତ ମନୋଦୁଃଖ ସହିତ ଏହି ବିଷୟ ଆଲୋଚନା କରିଆସୁଅଛନ୍ତି ଏବ କୃତକାର୍ଯ୍ୟ ହେବା ପର୍ଯ୍ୟନ୍ତ ଚେଷ୍ଟା କରୁଥିବେ ଏହା ନିଶ୍ଚୟ ଅଟେ । ଆମ୍ଭେମାନେ ରାଜସରକାରରେ ପୁନଃ ପୁନଃ ଆବେଦନ କରି ଅକୃତକାର୍ଯ୍ୟ ହେଉଅଛୁଁ ସତ୍ୟ କିନ୍ତୁ ନିବୃତ୍ତ ହେବୁନାହିଁ । କୋଟି ସଂଖ୍ୟକ ଦୁର୍ବଳ ଉତ୍କଳ ସନ୍ତାନର ଆକୁଳ ରଡ଼ି କେତେବେଳେ ହେଲେ ଦିଲ୍ଲୀରେ ରାଜାଧିରାଜଙ୍କର କର୍ଣ୍ଣଗୋଚର ହେବ ।"

ମନୁଷ୍ୟ ଜୀବନଧାରଣ ପାଇଁ ତିନୋଟି ବସ୍ତୁ ବ୍ୟବହାର କରିଥାଏ-ଅନ୍ନ, ବସ୍ତ୍ର ଓ ଲବଣ । ଏହି ତିନୋଟି ବସ୍ତୁର ଉତ୍ପାଦନ କ୍ଷେତ୍ରରେ ବିଦେଶୀ ଶିଳ୍ପଜାତ ଦ୍ରବ୍ୟର ପ୍ରସାର ଓ ଦେଶୀୟ ଶିଳ୍ପର ବିଲୋପ ଦେଖି ଫକୀରମୋହନ ଖୁବ୍ ବ୍ୟଥିତ ହୋଇଥିଲେ । କାରଣ ବିଲାତି ମିଲ୍ ବସ୍ତ୍ରର ଚାକଚକ୍ୟ ଓ ସୁଲଭ ମୂଲ୍ୟ ହେତୁ ଦେଶୀୟ ବସ୍ତ୍ର ଉତ୍ପାଦନ ଏକ ପ୍ରକାର ବନ୍ଦ ହେବା ଫଳରେ ଉତ୍କଳ କାହିଁକି ସମଗ୍ର ଭାରତ ବର୍ଷରେ ବସ୍ତ୍ର ଉତ୍ପାଦନକାରୀ କୁଟୀରଶିଳ୍ପର ଘୋର ବିପର୍ଯ୍ୟୟ ଘଟିଥିଲା । ଲୋକମାନଙ୍କୁ ଏ ବିଷୟରେ ସଚେତନ କରାଇ ଦେଶୀୟ ବସ୍ତ୍ରଶିଳ୍ପ ଓ ଦେଶର ଅର୍ଥନୀତିର ବିକାଶ ସାଧନ ପାଇଁ ଲୋକମାନଙ୍କର ରୁଚିର ପରିବର୍ତ୍ତନ ହେବା ଆବଶ୍ୟକ ମନେକରି ସମ୍ମିଳନୀ ମାଧ୍ୟମରେ ଜନଜାଗରଣ ସୃଷ୍ଟି କରିଥିଲେ । ଫକୀରମୋହନ ସ୍ୱଗ୍ରାମ ପାର୍ଶ୍ୱବର୍ତ୍ତୀ ଗ୍ରାମର ବାସ୍ତବଚିତ୍ର ପ୍ରଦାନ କରି କହିଥିଲେ, "ମୋ ଘର ସମୀପରେ

ମାକଲପୁର ନାମରେ ଗୋଟିଏ ଗ୍ରାମ ଅଛି । ମୁଁ ବାଲ୍ୟକାଳରେ ଦେଖିଥିଲି ସେଠାରେ ପ୍ରାୟ ଶତାଧିକ ତନ୍ତୀଘର ଥିଲା । ସେମାନଙ୍କ ଘରର ସ୍ତ୍ରୀଲୋକମାନେ ସୁନାରୁପା ଅଳଙ୍କାରରେ ଭୂଷିତ ଥିଲେ । ଗ୍ରାମରେ ଅନେକ ତନ୍ତୀ ମହାଜନ ମଧ୍ୟ ଥିଲେ । ବର୍ତ୍ତମାନ ସେହି ଗ୍ରାମ କ୍ରମଶଃ ପଡ଼ିଆ ପଡ଼ିଲାଣି । ଯେଉଁ ୧୦/୨୦ ଘର ତନ୍ତୀ ଅଛନ୍ତି ସେମାନଙ୍କ ଘରର ଚାଳରେ କୁଟା ନାହିଁ ଏବଂ ଘର ଭଂଗା, ସମସ୍ତେ ପ୍ରାୟ ଭିକାରୀ, ଯେହେତୁ ତନ୍ତୀଜାତି କୋଡ଼ିଧରା କାମ କରିବାକୁ ଅକ୍ଷମ ଏବଂ କୁସଂସ୍କାର ହେତୁ ମଧ୍ୟ ହଳ ଧରିଲେ ସେମାନଙ୍କର ଜାତି ଯାଏ । ମୁଁ ଯେଉଁ ତନ୍ତୀଗ୍ରାମ କଥା କହିଲି, ସେମାନେ 'ପୋଷାକୀ' ଲୁଗାବୁଣା ତନ୍ତୀ ଅଟନ୍ତି । ବଂଗଦେଶ, ସିମିଳା, ଶାନ୍ତିପୁରୀ ଲୁଗାଠାରୁ ମଧ୍ୟ ଦଶ ପନ୍ଦର ଟଙ୍କା ମୂଲ୍ୟର ଯୋଡ଼ା ଲୁଗାବୁଣା କେତେଘର ତନ୍ତୀ ବୁଣୁଥିଲେ ।" ପୁନଶ୍ଚ ସମ୍ମିଳନୀରେ ଉପସ୍ଥିତ ସମସ୍ତ ଉତ୍କଳବାସୀଙ୍କୁ ସମ୍ବୋଧନ କରି କହିଛନ୍ତି, "ଭାଇମାନେ ! ଲୁଗାକିଣା ହଇରାଣରୁ ରକ୍ଷା ପାଇବା ଓ ଆମ୍ଭମାନଙ୍କ ସମାଜରୁ ତଥା-କଥିତ ନିମ୍ନ ଶ୍ରେଣୀ ଅତି ପ୍ରୟୋଜନୀୟ ତନ୍ତୀବଂଶକୁ ରକ୍ଷା କରିବା ଏବଂ ଲୁଗାକିଣା ସୂତ୍ରରେ ଦେଶର ବିପୁଳ ସଂପତ୍ତି ଦେଶରୁ ବାହାର କରି ନଦେବା ଆମ୍ଭମାନଙ୍କ ପକ୍ଷରେ ଉଚିତ୍ କି ନାହିଁ ଥରେ ଚିନ୍ତା କରିବା ନିମନ୍ତେ ସମ୍ମିଳନୀର ପ୍ରଥମ ପ୍ରସ୍ତାବ ଅନୁସାରେ ଆମ୍ଭମାନଙ୍କର ଅତି ନିକୃଷ୍ଟରେ 'ପଖାଳ କରା' ପିନ୍ଧିବାର ଉଚିତ୍ କି ନାହିଁ, ଥରେ ମାତ୍ର ବିଚାର କରି ଦେଖନ୍ତୁ । ଆମ୍ଭେମାନେ ଆଶା କରୁ କେହି କେହି ମହାତ୍ମା ଲୋକ ସମ୍ମିଳନୀରୁ ଗୃହକୁ ବାହୁଡ଼ି ଯାଇ କେବଳ ନିଜେ 'ପଖାଳକରା' ପିନ୍ଧିବେ ତାହା ନୁହେଁ, ଗ୍ରାମସ୍ଥ ଲୋକମାନଙ୍କ 'ପଖାଳକରା' ପିନ୍ଧାଇବାର ଉପକାରିତା ବୁଝାଇଦେବେ ।"

'ଲବଣ' ଉତ୍ପାଦନ ଓ ରପ୍ତାନୀ କ୍ଷେତ୍ରରେ ବାଲେଶ୍ୱର ଉତ୍କଳରେ ଶୀର୍ଷସ୍ଥାନ ଲାଭ କରିଥିଲା । ଶହଶହ ପାଲଟଣା ଜାହାଜ ଏହି କାର୍ଯ୍ୟରେ ନିଯୁକ୍ତ ଥିଲେ । ଲୁଣପୋଖରୀଗୁଡ଼ିକରେ ବହୁ ସଂଖ୍ୟକ ମଳିଙ୍ଗା ବା ଲୁଣ ମାରିବା ଲୋକ କାମ କରୁଥିଲେ । ଜାହାଜ ତିଆରି ଓ ମରାମତି ନିମନ୍ତେ ବଢ଼େଇ,କମାର ସହସ୍ରାଧିକ ନିଯୁକ୍ତ ଥିଲେ । ମଫସଲର ଚାଟି ପାଇକଠାରୁ ସଦରର ଦାରୋଗା, ଦେବାନ ଓ ଆସିଷ୍ଟାଣ୍ଟ ସଲ୍ଟଏଜେଣ୍ଟ ପର୍ଯ୍ୟନ୍ତ ଶତଶତ ଅମଲା ନିଯୁକ୍ତି ପାଇଥିଲେ । ବର୍ଷକୁ ପ୍ରାୟ ଆଠଲକ୍ଷ ମହଣ ଲୁଣ ବଙ୍ଗ ଦେଶରେ ବିକ୍ରି ପାଇଁ କଲିକତା ପଠାଯାଉଥିଲା ।

ନୌବାଣିଜ୍ୟ କ୍ଷେତ୍ରରେ ବାଲେଶ୍ୱର ବନ୍ଦରର ସୁଖ୍ୟାତି ବଢ଼ିଥିଲା । ଫକୀରମୋହନ ଦୁଃଖର ସହିତ ଲେଖିଥିଲେ, "ପ୍ରାୟ ୫୦/୬୦ ବର୍ଷହେଲା ପୋତ୍ତାନ ଉଠି ଯାଇଅଛି । ଏହି ଲୁଣ ଉଠିଯିବା ସହିତ ବାଲେଶ୍ୱରର ଯେମନ୍ତ ଲକ୍ଷ୍ମୀ ଚାଲିଯାଇଅଛନ୍ତି । ବଙ୍ଗଦେଶକୁ ଲୁଣ ବହି ଘେନିଯିବା ନିମନ୍ତେ ପ୍ରାୟ ଚାରିଶତ ଜାହାଜ ନିଯୁକ୍ତ ଥିଲା । ମୁଁ ନିଜେ ଦେଖିଅଛି ତିନି ଚାରି ହଜାର ଟଙ୍କା ମୂଲ୍ୟରେ ଜାହାଜ ସବୁ ଦୁଇ ତିନିଶତ ଟଙ୍କାରେ ଜାଳେନି କାଠ ରୂପେ ବିକ୍ରିତ ହୋଇଅଛି ଏବଂ ଅନ୍ୟ ବାଣିଜ୍ୟ ଚଳାଇବା ନିମନ୍ତେ ମହାଜନମାନଙ୍କ ହାତରେ ଯଥେଷ୍ଟ ଅର୍ଥ ନଥିବାରୁ ସମୁଦ୍ରଗାମୀ ଜାହାଜ ସମସ୍ତ ବିନଷ୍ଟ ହେତୁ ବାଲେଶ୍ୱରର ମହାଜନମାନେ ଉଚ୍ଛନ୍ନ ଯାଇଅଛନ୍ତି । ସେମାନଙ୍କର ବଡ଼ବଡ଼ କୋଠାଘରର କାନ୍ଥଡ଼ା ସବୁ ପୂର୍ବ ଗୌରବ ପରିଚୟ ଦେବା ନିମନ୍ତେ ଦଣ୍ଡାୟମାନ ରହିଅଛନ୍ତି ।"

ମାନବଜାତିର ଉନ୍ନତିର ଶ୍ରେଷ୍ଠତା ତା'ର ଉନ୍ନତ ଭାଷାରୁ ହିଁ ଜଣାଯାଇଥାଏ । ଜଳବାୟୁ, ସ୍ଥାନ ଓ ପ୍ରାକୃତିକ ନିୟମର ଭେଦରେ ଭିନ୍ନଭିନ୍ନ ମଣିଷର ଭାଷା ମଧ୍ୟ ଭିନ୍ନଭିନ୍ନ ହୋଇଥାଏ । ଫକୀରମୋହନଙ୍କ ଭାଷାରେ "ମାନବ ଶିଶୁ ସର୍ବପ୍ରଥମ ଜନନୀ କୋଳରେ ଶୋଇ ସେହି ଭାଷା ଶୁଣିବାକୁ ପାଏ, ଏଥିପାଇଁ ଏହାର ନାମ 'ମାତୃଭାଷା' । ବିଶେଷତଃ ମାତୃଭାଷା ଯେଉଁ ଦେଶରେ ଯେତେ ଉନ୍ନତ ଏବଂ ବିସ୍ତୃତ ସେ ଦେଶର ଲୋକେ ସେହି ଅନୁସାରେ ଜ୍ଞାନୀ ଏବଂ ଉନ୍ନତ । ଏହି ଭାଷା ଉନ୍ନତାବନତ ଅବସ୍ଥାନୁସାରେ ଇଂରେଜ, ଜର୍ମାନ ପ୍ରଭୃତି ପାଶ୍ଚାତ୍ୟ ଜାତି ଆମ୍ଭମାନଙ୍କଠାରୁ ସଭ୍ୟ ଓ ଜ୍ଞାନୀ, ଏହା ଆମ୍ଭେମାନେ ପ୍ରତ୍ୟକ୍ଷରେ ଦେଖୁଅଛୁ । ସେହି କାରଣରୁ ମଧ୍ୟ ଗୋଟିଏ ଗୋଟିଏ ଜାତି ଅନ୍ୟାନ୍ୟ ଜାତିମାନଙ୍କଠାରେ ସମ୍ମାନିତ ଏବଂ ପୂଜ୍ୟ ହୋଇଥାନ୍ତି ।"

ଗୋଟିଏ ଜାତିର ବିକାଶ ସାଧନ ପାଇଁ ନାରୀ ଶିକ୍ଷାର ବିକାଶ ଯେ ଅପରିହାର୍ଯ୍ୟ, ସେ ବିଷୟରେ ଫକୀର ମୋହନଙ୍କ ମନ୍ତବ୍ୟ ହେଉଛି, "... ପ୍ରଥମେ ଜନନୀମାନଙ୍କୁ ସୁଶିକ୍ଷିତା କରିବା ଉଚିତ । ଆମ୍ଭମାନଙ୍କର ଦେଶୀୟ କନ୍ୟାଗଣ ୮/୯ ବର୍ଷ ପର୍ଯ୍ୟନ୍ତ ଶିକ୍ଷା ପ୍ରାପ୍ତ ହୋଇଥାନ୍ତି । ଏହି ଅତ୍ୟଳ୍ପ ସମୟରେ ସୁଶିକ୍ଷିତ ହେବା ଅସମ୍ଭବ । ପିତା ଏବଂ ଅଭିଭାବକମାନେ ପୁତ୍ରମାନଙ୍କ ସକାଶେ ପାଠ୍ୟ ପୁସ୍ତକ କିଣିବା ପାଇଁ ଯେତେ ଅର୍ଥ ବ୍ୟୟ କରନ୍ତି, କନ୍ୟାମାନଙ୍କ ପାଇଁ ତାହା କରନ୍ତି ନାହିଁ । ଆମ୍ଭମାନଙ୍କ ବିବେଚନାରେ କନ୍ୟାମାନଙ୍କୁ ଶିକ୍ଷିତ କରାଇବା ପାଇଁ ସେମାନଙ୍କ ଶିକ୍ଷାର ଉପଯୁକ୍ତ

ପୁସ୍ତକ ସେମାନଙ୍କୁ କିଣି ଦିଆଯାଉ । କିମ୍ବା ଗ୍ରାମସ୍ଥ ଲୋକମାନଙ୍କ ଦତ୍ତ ଭେଦାରେ ପୁସ୍ତକ କିଣାଯାଇ କ୍ଷୁଦ୍ର କ୍ଷୁଦ୍ର ପୁସ୍ତକାଳୟ ସ୍ଥାପନ କରାଯାଉ । ସେହି ସ୍ଥାନରୁ ପୁସ୍ତକ ନେଇ ଆପଣା ଆପଣା ଘରେ ପଢ଼ିବାକୁ ସକ୍ଷମ ହେବେ । ଦ୍ୱିତୀୟ ପ୍ରସ୍ତାବ: ଗ୍ରାମ ମଧ୍ୟରେ କିଞ୍ଚିତ ଅଧିକ ଶିକ୍ଷିତା ସ୍ତ୍ରୀ ବିଶେଷଙ୍କୁ ମାସିକ କିଛି ବୃତ୍ତି ଦିଆଯାଉ । ସେ ଘରେ ଘରେ ବୁଲି କିମ୍ବା ଏକ ସ୍ଥାନରେ କେତେଗୋଟି ବଧୂ ବା କନ୍ୟାଙ୍କୁ ବସାଇ ପ୍ରତିଦିନ ସାୟାହ୍ନ ସମୟରେ ରାମାୟଣ, ମହାଭାରତ ଓ ଭାଗବତ ପ୍ରଭୃତି ପୁସ୍ତକ ପଢ଼ାଇ ଶୁଣାଇବେ । ଏହିପରି ଉପାୟ ଅବଲମ୍ବନ ଦ୍ୱାରା ପ୍ରତିଦିନ ଆଲୋଚନା ଯୋଗେ ପୁସ୍ତକ ପାଠ ବିଷୟରେ କନ୍ୟାମାନେ ଅଭ୍ୟସ୍ତ ହୋଇଯିବେ ।"

ଉତ୍କଳ ଦେଶରେ 'ଓଡ଼ିଆ' ନାମକ ଇଂରାଜୀ ପତ୍ରିକାଟିଏ ପ୍ରକାଶ ପାଇବା ଫଳରେ ଫକୀର ମୋହନ ଅତ୍ୟନ୍ତ ଆନନ୍ଦ ଓ ଆତ୍ମସନ୍ତୋଷ ଲାଭ କରିଛନ୍ତି । କାରଣ ପ୍ରତିବେଶୀ ବଙ୍ଗାଳୀ, ବିହାରୀ ଓ ଆନ୍ଧ୍ର ଜାତିମାନଙ୍କ ମଧ୍ୟରେ ଅନେକ ଗୁଡ଼ିଏ ଦୈନିକ, ସାପ୍ତାହିକ ଇଂରାଜୀ ପତ୍ରିକା ପ୍ରକାଶ ପାଉଥିଲା ବେଳେ ଉତ୍କଳ ଭୂମିରେ ଏଭଳି ପତ୍ରିକାର ଘୋର ଅଭାବ ପରିଲକ୍ଷିତ ହେଉଥିଲା । ଯାହାକି ଗୋଟିଏ ଜାତି ପାଇଁ ଅତ୍ୟନ୍ତ ଲଜ୍ଜାକର ବିଷୟ ଥିଲା । ତା'ଛଡ଼ା ଉତ୍କଳବାସୀମାନେ ନିଜର ଅଭାବ ଅସୁବିଧା ଇଂରେଜ ଶାସକ ଗୋଷ୍ଠୀକୁ ଜଣାଇପାରୁନଥିଲେ । ଦୂରଦ୍ରଷ୍ଟା ଫକୀରମୋହନ ନିଜ ଭାଷାରେ କହିଥିଲେ, "ଆମ୍ଭମାନଙ୍କର ଗଭର୍ଣ୍ଣମେଣ୍ଟ ଇଂରାଜୀ ଜାତି । ଆମ୍ଭମାନଙ୍କ ଅଭାବ ଅଭିଯୋଗମାନ ତାହାଙ୍କୁ ଇଂରାଜୀ ଭାଷାରେ ଜଣାଇବା ଆବଶ୍ୟକ । ସଚରାଚର ଆଭ୍ୟନ୍ତରୀଣ ଘଟଣାମାନ ରାଜପୁରୁଷଙ୍କୁ ଜଣାଇବାକୁ ହେଲେ ଇଂରାଜୀ ପତ୍ରିକାର ସହାୟତା ଆବଶ୍ୟକ । ଅତ୍ୟନ୍ତ ଆନନ୍ଦ ଏବଂ ଆଶାର ବିଷୟ ଗତବର୍ଷଠାରୁ 'ଓଡ଼ିଆ' ନାମକ ଗୋଟିଏ ସାପ୍ତାହିକ ଇଂରାଜୀ ପତ୍ରିକା ପ୍ରକାଶିତ ହୋଇଅଛି । ଏହି ଅଳ୍ପକାଳ ମଧ୍ୟରେ ଦେଶର ଅନେକ ହିତକର ବିଷୟ ଏବଂ ଉତ୍କଳ ମିଳନ ସମ୍ବନ୍ଧେ କେତେକ ପ୍ରୟୋଜନୀୟ ପ୍ରବନ୍ଧ ପ୍ରକାଶିତ ହୋଇଗଲାଣି । ଦୟାମୟ ପରମେଶ୍ୱର ଏହି କ୍ଷୁଦ୍ର ପତ୍ରିକା ଖଣ୍ଡ ପ୍ରତି ଆଶୀର୍ବାଦ ପ୍ରଦାନ କରନ୍ତୁ ।"

ବ୍ରିଟିଶ ଶାସକ ଉତ୍କଳୀୟ ଶିକ୍ଷିତ ଯୁବକମାନଙ୍କୁ ସୈନ୍ୟ ବାହିନୀରେ ଗ୍ରହଣ କରିବାର ଘୋଷଣା ପ୍ରକାଶ କରିଥିଲେ । ଏହି ସମ୍ବାଦ ଜାଣି ବୃଦ୍ଧ ଫକୀରମୋହନ ବିଶେଷ ଖୁସି ହୋଇଥିଲେ । ଏଭଳି ସୁଯୋଗକୁ ଉତ୍କଳର ଶିକ୍ଷିତ ଯୁବଗୋଷ୍ଠୀ ସାଦରେ

ଗ୍ରହଣ କରିନେବା ଉଚିତ ବୋଲି ସ୍ୱୀୟ ମନ୍ତବ୍ୟ ଦେଇଥିଲେ । ଏ ପ୍ରସଙ୍ଗରେ ସେ କହିଥିଲେ, "ନିଜସ୍ୱ ଏବଂ ସ୍ୱଦେଶର ସମ୍ପତ୍ତି ତସ୍କରମାନଙ୍କ ହସ୍ତରୁ ରକ୍ଷା କରିବା ନିମନ୍ତେ ବୀରତ୍ୱ ଏବଂ ଯୁଦ୍ଧବିଦ୍ୟା ଆୟତ୍ତ କରିବା କିମ୍ବା ଅତ୍ୟାଚାରୀ ବଳିଷ୍ଠ ଲୋକ ହସ୍ତରୁ ସମାଜର ଧନପ୍ରାଣ ରକ୍ଷା କରିବା ଆବଶ୍ୟକ । ଏଥିପାଇଁ ବୀରମାନେ ଜଗତରେ ପୂଜ୍ୟ । ଗଡ଼ଜାତମାନଙ୍କରେ ପାଇକମାନଙ୍କର ଯେମନ୍ତ ବୀରତ୍ୱ ଏବଂ କୌଶଳ ଦେଖୁଅଛୁ, ଆଶାକରେ ଏମାନେ ଯୁଦ୍ଧବିଦ୍ୟା ଶିକ୍ଷାକଲେ କିଛିଦିନ ଉତ୍ତାରେ ଗୋଟିଏ ଯୋଦ୍ଧାଦଳ ପ୍ରସ୍ତୁତ ହୋଇପାରିବେ ।" ଫକୀରମୋହନଙ୍କ ଏଭଳି ଉକ୍ତିରେ ଦ୍ୱିବିଧ ଅର୍ଥ ଥାଇପାରେ । ସ୍ୱଦେଶର ସମ୍ପତ୍ତି 'ତସ୍କର' ମାନଙ୍କ ହସ୍ତରୁ ରକ୍ଷା କରିବା ଅର୍ଥ ଇଂରେଜ ଶାସକମାନଙ୍କୁ 'ତସ୍କର' କହିବାର ବୁଝାପଡ଼େ । କାରଣ ଫକୀରମୋହନଙ୍କ ଅନେକ ଲେଖାରେ ଦ୍ୱିବିଧ ଅର୍ଥ ଥିବା ପାଠକମାନେ ଭଲ ଭାବରେ ଜାଣିଥିଲେ । ଆଧୁନିକ ଯୁଦ୍ଧବିଦ୍ୟାରେ ପାରଙ୍ଗମ, କୌଶଳୀ ହୋଇ ଶିକ୍ଷିତ ଉତ୍କଳ ଯୁବକ ଦେଶର ସ୍ୱାର୍ଥରକ୍ଷା କରିବେ ଏବଂ ଉତ୍କଳର ସମ୍ମାନ ବଢ଼ାଇବା ସହିତ ନିଜର ନାମ ସ୍ୱର୍ଣ୍ଣାକ୍ଷରେ ଲିପିବଦ୍ଧ କରିବେ ଏହି ଆଶା ସେ ପୋଷଣ କରିଥିଲେ ।

(ବି.ଦ୍ର.: ଉକ୍ତ ପ୍ରବନ୍ଧଟି 'ଉତ୍କଳ ସମ୍ମିଳନୀ' / ୧୩ଶ ଅଧିବେଶନର କାର୍ଯ୍ୟ ବିବରଣୀ Printed by B.S. Das, Press, Cuttack, 1919 କୁ ପାଥେୟ କରି ରଚିତ ଏବଂ ଏହି ଉପାଦାନ ବିଶିଷ୍ଟ ଗବେଷକ ବନ୍ଧୁ ଦେବେନ୍ଦ୍ର କୁମାର ଦାଶ, ବରିଷ୍ଠ ଅଧ୍ୟାପକ, ଓଡ଼ିଆ ଭାଷା ସାହିତ୍ୟ ବିଭାଗ, ଇସ୍ପାତ କଲେଜ, ରାଉରକେଲାଙ୍କ ସୌଜନ୍ୟରୁ ସଂଗୃହୀତ ।)



# ବ୍ୟାସକବିଙ୍କ କେତୋଟି ଦୁର୍ଲଭ ଅଭିମତ

ବ୍ୟାସକବି ଫକୀରମୋହନ ସେନାପତି ଆଧୁନିକ ଓଡ଼ିଆ କଥା ସାହିତ୍ୟର ଜନକ ହେବା ପୂର୍ବରୁ ଜଣେ ସଫଳ ଅନୁବାଦକ ଭାବରେ ଖ୍ୟାତି ଅର୍ଜନ କରିଥିଲେ । ତାଙ୍କର ସ୍ୱୀକାରୋକ୍ତି ଅନୁଯାୟୀ ଦୁଷ୍ପ୍ରାପ୍ୟ 'ଲଛମନିଆ' ଅଥବା 'ରେବତୀ' ଗଳ୍ପ ସୃଷ୍ଟି ପୂର୍ବରୁ ଜୀବନ ଚରିତ (୧୮୬୬), ରାମାୟଣ (୭ଟି କାଣ୍ଡ), ମହାଭାରତ (ଆଦି, ସଭା, ବନ ଓ ବିରାଟ ପର୍ବ), ଶ୍ରୀମଦ୍ଭଗବତ୍ ଗୀତାର (ଉତ୍କଳ ପଦ୍ୟାନୁବାଦ) ପ୍ରାୟ ଦୁଇ ହଜାରରୁ ଊର୍ଦ୍ଧ୍ୱ ପୃଷ୍ଠା ଅନୁବାଦ କାର୍ଯ୍ୟ ସାରି ଏସବୁ ପ୍ରକାଶ କରିଥିଲେ । ଏହାଛଡ଼ା ମହାଭାରତର ଅନ୍ୟାନ୍ୟ ସମସ୍ତ ପର୍ବର ଅନୁବାଦ ସାରି ପାଣ୍ଡୁଲିପି ପ୍ରସ୍ତୁତ କରିଥିବାର ଚାକ୍ଷୁସ ପ୍ରମାଣ ଥିଲେ ମଧ୍ୟ ଆଜି ତାହା କେଉଁ ଅଜ୍ଞାତ ଗର୍ଭରେ ଲୁପ୍ତ, କହିବା କଷ୍ଟକର । ଶୁଣାଯାଏ ତାଙ୍କ ବଂଶଜ ପୈତୃକ ସ୍ୱତ୍ୱାଧିକାରୀ ଭାବରେ ଏସବୁ ସମ୍ପତ୍ତିକୁ ଅଜ୍ଞାତ ଅନ୍ଧକାରରେ କାରାରୁଦ୍ଧ କରି ରଖିଛନ୍ତି । ତେବେ ତାଙ୍କ ପ୍ରକୃତ ସ୍ୱାର୍ଥ ବା କ'ଣ ? ବ୍ୟକ୍ତି ଫକୀରମୋହନ ତାଙ୍କର ପୈତୃକ ସମ୍ପତ୍ତି ହୋଇଥାଇ ପାରନ୍ତି, ମାତ୍ର ସ୍ରଷ୍ଟା ଫକୀରମୋହନ ଓ ତାଙ୍କ ସୃଷ୍ଟିସମ୍ପଦ ଯେ ଓଡ଼ିଆର ଜାତୀୟ ସମ୍ପତ୍ତି ସେକଥା ସେ କ'ଣ ଅନୁଭବ କରିନାହାନ୍ତି ? ତା'ଛଡ଼ା ତାଙ୍କ ଜୀବନପରିଧି ବା କେତେବଡ଼ ? ଏହି ସମୟ ମଧ୍ୟରେ ତାଙ୍କର ଅପ୍ରକାଶିତ ସୃଷ୍ଟିସମ୍ପଦ ଯଦି ଲୋକଲୋଚନକୁ ଆଣିବା କ୍ଷେତ୍ରରେ ସହାୟକ ହୁଅନ୍ତେ ତା'ହେଲେ ତାଙ୍କର ସୁନାମ ବଢ଼ିବା ସହିତ ଜାତିର ଗୌରବ ବଢ଼ନ୍ତା, ତା' ନହେଲେ ସେସବୁ ପାଣ୍ଡୁଲିପି ସମୟ ରୂପକ କୀଟ ମୁଖରେ ନଷ୍ଟ ହୋଇଯିବା ହିଁ ସାର ହେବ ।

ଫକୀରମୋହନ ଥିଲେ ଦୂରଦ୍ରଷ୍ଟା ଶିଳ୍ପୀ । ଜାତୀୟ ଦାୟ ଦୃଷ୍ଟିରୁ ଲେଖନୀ ଧରିବାକୁ ବାଧ୍ୟ ହୋଇଥିଲେ ଏବଂ ଓଡ଼ିଆ ପାଠ୍ୟପୁସ୍ତକ ରଚନାରେ ମନୋନିବେଶ କରିଥିଲେ । ଏଥି ସହିତ ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଜାତିର ସେନାପତି ଦାୟିତ୍ୱ

ଗ୍ରହଣ କରି ଓଡ଼ିଆ କାବ୍ୟ କବିତା, ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, ସମାଲୋଚନା ଓ ଜୀବନ ଚରିତ ଆଦି ରଚନା କରି ଆଧୁନିକ ଓଡ଼ିଆ ଭାଷା ସାହିତ୍ୟର ଏକ ନୂତନ ସରଣୀ ପ୍ରସ୍ତୁତ କରିଥିଲେ । ଏହି ସରଣୀକୁ ଅଧିକ ଭାବରେ ମଜବୁତ୍ କରିଥିଲା ତା'ଙ୍କ ପ୍ରତିଷ୍ଠିତ ପି.ଏମ. ସେନାପତି ଏଣ୍ଡକୋ ଉତ୍କଳ ପ୍ରେସ୍ ଏବଂ ସମ୍ପାଦିତ 'ବୋଧଦାୟିନୀ ଓ ବାଲେଶ୍ୱର ସମ୍ବାଦ ବାହିକା' (୧୮୬୮) ପତ୍ରିକା । କଟକରୁ 'ଉତ୍କଳଦୀପିକା' (୧୮୬୬) ସମ୍ବାଦପତ୍ରଟି ଗୌରୀଶଙ୍କର ରାୟଙ୍କ ସମ୍ପାଦନାରେ ପ୍ରକାଶ ପାଇ 'ବାଲେଶ୍ୱର ସମ୍ବାଦ ବାହିକା' ସହିତ ଓଡ଼ିଶାର ଜନମତକୁ ସଚେତନ କରିବା କ୍ଷେତ୍ରରେ ସହାୟକ ହୋଇଥିଲା ।

ବ୍ୟାସକବି ସ୍ୱୀୟ ବ୍ୟକ୍ତିଗତ ଜୀବନ ମଧ୍ୟରେ ସବୁବେଳେ ଜାତୀୟ ଜୀବନର ସ୍ୱପ୍ନ ଦେଖୁଥିଲେ । ଓଡ଼ିଆ ଭାଷା ସାହିତ୍ୟର ଉନ୍ନତି, ଓଡ଼ିଆ ଜାତୀୟ ଜୀବନର ବିକାଶ ପାଇଁ ସେ ଖୁବ୍ ବ୍ୟଗ୍ର ହୋଇ ପଡୁଥିଲେ । ମାତୃଭୂମି ଓ ମାତୃଭାଷାର ପୂର୍ବ ଗାରିମା ବିଷୟରେ ମଧ ଖୁବ୍ ସଚେତନ ଥିଲେ । ଫଳରେ କେହି ଓଡ଼ିଆ ଭାଷା ବିଦ୍ୱେଷୀ ଅଜ୍ଞାନତା ବଶତଃ ଏହାର ବିରୁଦ୍ଧାଚରଣ କଲେ, ସେ ଖୁବ୍ ଅସହିଷ୍ଣୁ ହୋଇ ପଡୁଥିଲେ ଏବଂ ଜାତୀୟ କର୍ତ୍ତବ୍ୟ ଦୃଷ୍ଟିରୁ ପ୍ରାୟ  ଲେଖନୀକୁ ତୀବ୍ରତର କରୁଥିଲେ । ପୁଣି ଓଡ଼ିଆ ମାତୃଭାଷା ତଥା ଓଡ଼ିଆ ଜାତିର ସେବା କରୁଥିବା ବ୍ୟକ୍ତିଟିକୁ ଦେଖିଲେ ତାଙ୍କ ପ୍ରତି ହୃଦୟର ସମସ୍ତ ସ୍ନେହ ଅଜାଡ଼ି ଦେଉଥିଲେ । ସେ ନିଜେ ସ୍ୱୀକାର କରିଛନ୍ତି, ନିଜ ମାତୃଭାଷାରେ ନୂଆ ବହିଟି ପ୍ରକାଶ ପାଇବା ସମ୍ବାଦ ଜାଣିବା ମାତ୍ରେ ମନେମନେ ବହୁତ ଖୁସି ହେଉଥିଲେ ଏବଂ ପୁସ୍ତକଟି ସଂଗ୍ରହ କରି ପଢ଼ିବା ପାଇଁ ସବୁପ୍ରକାର ଉଦ୍ୟମ ମଧ କରୁଥିଲେ । ଉତ୍କଳର ପାଠକବର୍ଗଙ୍କ ଫକୀରମୋହନଙ୍କ ପ୍ରତି ଅଗାଧ ଭକ୍ତି ଓ ଆନ୍ତରିକତା ଥିଲା । କେହି କେହି ଲେଖକ କାବ୍ୟ କି ପୁସ୍ତକଟି ଏ ରଚନା କରି ତାଙ୍କଠାରୁ ସଂଶୋଧନ କରାଇ ନେଉଥିଲେ । ତା'ଛଡ଼ା ସେମାନେ ବ୍ୟାସକବିଙ୍କ ସ୍ୱୀୟ ଅଭିମତଟି ପୁସ୍ତକରେ ସଂଯୁକ୍ତ କରୁଥିଲେ । ଫଳରେ ପୁସ୍ତକର ଲେଖକ ଅଭିମତବ୍ୟ ଦାତାଙ୍କ ଶୁଭେଚ୍ଛାର ପାତ୍ର ବୋଲି ପାଠକବର୍ଗ ଜାଣିପାରୁଥିଲେ । ଏହିଭଳି ପୁସ୍ତକ ଗୁଡ଼ିକରେ ବ୍ୟାସକବିଙ୍କ କେତୋଟି ମନ୍ତବ୍ୟ/ ଅଭିମତ ପ୍ରକାଶ ପାଇଥିବା ଦୃଷ୍ଟିକୁ ଆସିଛି । ଯାହା ଆଜିର ତଥା ଉତ୍ତରଦାୟାଦମାନଙ୍କ ପାଇଁ ଖୁବ୍ ଉପାଦେୟ । ଯେଉଁଥିପାଇଁ ଓଡ଼ିଆ ସାହିତ୍ୟ ସଂସ୍କୃତି ଓ ସମାଜ ବିଷୟରେ ଫକୀରମୋହନଙ୍କ

ଜୀବନ-ଦର୍ଶନ ବହୁଭାବରେ ପ୍ରତିଫଳିତ । ନିମ୍ନରେ ଏହି ଦୁର୍ଲଭ ଅଭିମତ ଗୁଡ଼ିକରୁ କେତୋଟି ଆଲୋଚନା କରାଗଲା ।

'ସମୁଦ୍ର ଯାତ୍ରା' ଅଭିନନ୍ଦନ ପୁସ୍ତକଟି ସୁରଙ୍ଗୀର ଇଛାପୁର ନିବାସୀ ଶ୍ରୀ ଚିନ୍ତାମଣି ମହାନ୍ତିଙ୍କ ଦ୍ୱାରା ସଙ୍କଳିତ ଓ ପ୍ରକାଶିତ ହୋଇଥିଲା ୧୯୧୨ ମସିହାରେ । ସୁରଙ୍ଗୀର ଯୋଗଜନ୍ମା ନରପତି ରାଜକବି ଶ୍ରୀମାନ୍ ଚନ୍ଦ୍ରଚୂଡ଼ାମଣି ହରିଚନ୍ଦନ ଜଗଦ୍ଦେବଙ୍କ ପାଶ୍ଚାତ୍ୟ ଭୂଖଣ୍ଡ-ଇଂଲଣ୍ଡ, ଆୟର୍ଲାଣ୍ଡ, ସ୍କଟଲ୍ୟାଣ୍ଡ, ଫ୍ରାନ୍ସ, ତୁରସ୍କ, ଇଟାଲୀ ଏବଂ, ଆମେରିକାର ନିଉୟର୍କ ଦେଶ ଭ୍ରମଣ ତଥା ସାଗର ବକ୍ଷ-କୌସ୍ତୁଭ ଲଙ୍କାଦ୍ୱୀପ ଭ୍ରମଣ ଜନିତ ତାଙ୍କ ଜ୍ଞାନାର୍ଜନ ତୃଷା ତଥା ସାହସରେ ମୁଗ୍ଧ ହୋଇ ସୁରଙ୍ଗୀର ପ୍ରଜାକୁଳ, ରାଜା, ବିଶିଷ୍ଟ ବ୍ୟକ୍ତି ତଥା ବିବିଧ ଅନୁଷ୍ଠାନ ତାଙ୍କୁ ଦେଇଥିବା ଅଭିନନ୍ଦନ ସହିତ ସୁରଙ୍ଗୀର ପ୍ରଜାମାନଙ୍କ ଉଦ୍ଦେଶ୍ୟରେ ରାଜା ମହୋଦୟଙ୍କ ପ୍ରଦତ୍ତ ବକ୍ତବ୍ୟକୁ ଆଧାର କରି ଏହାର ଆତ୍ମପ୍ରକାଶ ।

ଅତୀତ କାଳର ବିଦେଶ ଯାତ୍ରା କଲେ ଜାତିଚ୍ୟୁତ ହେବାକୁ ପଡୁଥିଲା । ସମାଜର ବଡ଼ପଣ୍ଡା ବ୍ରାହ୍ମଣ ସମାଜ ଏଭଳି ପ୍ରାଚୀର ସୃଷ୍ଟି କରିଥିଲେ । ଏଭଳି ଅମୂଳକ କୁସଂସ୍କାର ଭାରତବର୍ଷ ପ୍ରଗତିର ଅଧଃପତନର ଅନ୍ୟତମ କାରଣ ହୋଇଥିଲା । ଅନେକ ନରପତି ଏଭଳି ଅନ୍ଧବିଶ୍ୱାସ ବା ମୂଢ଼ବିଶ୍ୱାସ ମସ୍ତକରେ କୁଠାରାଘାତ କରି ସତ୍ ସାହସର ସହିତ ବିଦେଶ ଭ୍ରମଣ ସମୁଦ୍ର ଯାତ୍ରାରେ କରିଥିଲେ । ସେହି ନରପତିମାନେ ଥିଲେ ଉନ୍ନତ ଚିନ୍ତାସମ୍ପନ୍ନ ବ୍ୟକ୍ତି, ଯେଉଁମାନେ ଭଲ ଭାବରେ ଉପଲବ୍ଧି କରିଥିଲେ ଯେ ସଭ୍ୟଦେଶ ଓ ସଭ୍ୟ ସମାଜର ଉନ୍ନତି ଦର୍ଶନରେ ସ୍ୱୀୟ ରାଜ୍ୟର ରୀତି, ନୀତି, ଶିକ୍ଷା, ସଭ୍ୟତା ତଥା ଶାସନପଦ୍ଧତିର ସଂସ୍କାର ଆଣିବାରେ ପ୍ରେରଣା ଲାଭ କରିଥିଲେ । କେବଳ ଏତିକି ନୁହେଁ, ସେମାନେ ନିଜର ଉପଲବ୍ଧ ଅଭିଜ୍ଞତା ଦ୍ୱାରା ସ୍ୱଦେଶର ହିତସାଧନ କରୁଥିଲେ । ତା'ଛଡ଼ା ବିଦେଶର ଏକ ବୃହତ୍ତର ଆଦର୍ଶ ଓ ବିଶିଷ୍ଟ ବ୍ୟକ୍ତିମାନସ ସହିତ ସମ୍ପର୍କ ପ୍ରତିଷ୍ଠା ଫଳରେ ନିଜର କ୍ଷୁଦ୍ରତା ଓ ଅହଂଭାବକୁ ଦୂର କରିବା ସହିତ ଉନ୍ନତ ଜ୍ଞାନ ବିଜ୍ଞାନର ସୁପରାମର୍ଶ ଲାଭ କରୁଥିଲେ । ବିଶେଷ କରି ପାଶ୍ଚାତ୍ୟ ଦେଶର ବାଳକ ବାଳିକାମାନଙ୍କ ପାଇଁ ପ୍ରାଥମିକ, ମାଧ୍ୟମିକ, ହାଇସ୍କୁଲ ଓ କଲେଜ ଶିକ୍ଷାର ବାଧ୍ୟତାମୂଳକ ବ୍ୟବସ୍ଥାରେ ଅନୁପ୍ରାଣିତ ହୋଇ ନିଜ ରାଜ୍ୟ ମାନଙ୍କରେ ଶିକ୍ଷାର ପ୍ରସାର ପାଇଁ ଶିକ୍ଷାନୁଷ୍ଠାନ ମାନ ଗଢ଼ିବାରେ ସହାୟକ ହୋଇଥିଲେ ।

ଉକ୍ତ ପୁସ୍ତକରେ ସ୍ୱୀୟ ଅଭିମତ ବ୍ୟକ୍ତ କରିଥିବା ବିଶିଷ୍ଟ ବ୍ୟକ୍ତିମାନେ ହେଲେ ଟିକିଟିର ରାଜା ଶ୍ରୀ ରାଧାମୋହନ ରାଜେନ୍ଦ୍ର ଦେବ, ଫକୀରମୋହନ ସେନାପତି, ଭଦ୍ରକର ଚିନ୍ତାମଣି ମହାନ୍ତି, ସୋମନାଥ ମହାନ୍ତି, ହିଞ୍ଜିଳିକାଟୁର ପଦ୍ମଚରଣ କବିଚନ୍ଦ୍ର, ଧରାକୋଟର ଶ୍ୟାମସୁନ୍ଦର ଦାଶ ଗୋସ୍ୱାମୀ, ଗୋପାଳ ପ୍ରହାରାଜ, ନିମାପଡ଼ାର ମଧୁସୂଦନ ଦାଶ ଶର୍ମା, ରାମଶଙ୍କର ରାୟ, ଭଦ୍ରକର ଡେପୁଟୀ ମାଜିଷ୍ଟ୍ରେଟ୍ ହରେକୃଷ୍ଣ ମହାନ୍ତି, ପୁରୀର ଗୋପାଳ ଚରଣ ପଟ୍ଟନାୟକ, ତରଳାର ସାମନ୍ତ ତ୍ରିଲୋଚନ ଶୂରଦେଓ, ପୁରୀ ଜିଲ୍ଲା ସ୍କୁଲର ହେଡ଼ମାଷ୍ଟର ଦାଶରଥି ପାଣିଗ୍ରାହୀ, ମୟୂରଭଞ୍ଜର ଓଭରସିଅର ଭଗବାନ୍ ପ୍ରସାଦ ଦାସ, ସାନଖେମୁଣ୍ଡିର ଗୋପୀନାଥ ରାଜଗୁରୁ, ସମ୍ବଲପୁର ଜିଲ୍ଲା ସ୍କୁଲର ହେଡ଼ମାଷ୍ଟର ଶ୍ରୀ ନନ୍ଦକିଶୋର ବଳ, ମେଦିନୀପୁର ବ୍ରାହ୍ମଣ ସମାଜ ପକ୍ଷରୁ ଓକିଲ ରାଧାନାଥ ପତି, ଟିକିଟିର ଗଦାଧର କବିରାଜ ବିଦ୍ୟାଭୂଷଣ, ଧରାକୋଟର ଲିଙ୍ଗରାଜ ମିଶ୍ର ଶର୍ମା, ଇଛାପୁରର ଦାମୋଦର କବିରତ୍ନ, ଘୁମୁସରର ହରିହର ସଦସ୍ୟ ଏବଂ ପତ୍ର ପତ୍ରିକା ମଧ୍ୟରେ 'ଗଡ଼ଜାତ ବାସିନୀ', ବାଲେଶ୍ୱରର 'ଓଡ଼ିଆ ଓ ନବ ସମ୍ବାଦ' ତଥା ରମ୍ଭାର ପ୍ରଜାବନ୍ଧୁ ସମିତି, ସୁରଙ୍ଗୀର ପ୍ରଜାସଭା, ବିରୁଳୀର ପ୍ରଜାବନ୍ଧୁ ସମିତି, ଗଞ୍ଜାମ ଉତ୍କଳ ସମାଜ ଆଦି ଅନୁଷ୍ଠାନ ।

'ସମୁଦ୍ର ଯାତ୍ରା' ବିଷୟରେ ଫକୀରମୋହନଙ୍କ ଲିଖିତ ବ୍ୟକ୍ତିଗତ ଅଭିମତ ପତ୍ରଟି ହେଉଛି :

ବନ୍ଧୁ ମାନାସ୍ପଦ ଶ୍ରୀଯୁକ୍ତ ସୁରଙ୍ଗୀ ଅଧୀଶ୍ୱର ମହୋଦୟ ......... ସମୀପେଷୁ

ମହାଭାଗ,

ବିଲାତ ଅବସ୍ଥାନ ସମୟରେ ଶ୍ରୀଯୁତଙ୍କ ଗିତିବିଧି ତଥା କାର୍ଯ୍ୟକଳାପ ବିଷୟ ଅବଗତ ହେବା ନିମନ୍ତେ ସମ୍ବାଦପତ୍ରିକାମାନ ପାଠ କରୁଥିଲି । ସମ୍ପ୍ରତି ସର୍ବ ଶୁଭଯେ ସ୍ୱକୀୟ ରାଜ୍ୟକୁ ପ୍ରତ୍ୟାଗତ ହେବା ସମ୍ବାଦ ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲି ।

ଶ୍ରୀଯୁତଙ୍କ ବିଲାତଯାତ୍ରା ଆମ୍ଭମାନଙ୍କ ଜାତୀୟ ଉନ୍ନତି ବିଷୟରେ ପ୍ରତ୍ୟକ୍ଷ ଭାବରେ ସମ୍ବନ୍ଧ ରଖେ । ପ୍ରଧାନ ଲୋକଙ୍କ କାର୍ଯ୍ୟାବଳୀ ଇତର ସାଧାରଣର ଅନୁକରଣୀୟ । ସମ୍ପ୍ରତି ବିଂଶ ଶତାବ୍ଦୀର ଜୀବନ ସଂଗ୍ରାମ ସମୟରେ ଶିକ୍ଷା ଓ ବାଣିଜ୍ୟ ସକାଶେ ଆମ୍ଭେମାନେ କୂପମଣ୍ଡୁକବତ୍ ପରିତ୍ୟାଗ ପୂର୍ବକ ଦେଶାନ୍ତରକୁ ନବାହାରିଲେ

ଦୁର୍ଦ୍ଦଶା ଅପ୍ରତିହାର୍ଯ୍ୟ । ସୌଭାଗ୍ୟ ମାନବକାର୍ଯ୍ୟର ଅନୁଗାମୀ । ସାହସୀ ଦେଶଦେଶାନ୍ତର ଭ୍ରମଣକାରୀ ସହିତ ସୌଭାଗ୍ୟ ସତେଜରେ ଯେପରି ଭ୍ରମଣ କରେ, ବୃଥା ଧର୍ମଭୀରୁ, ଅଳସ କୋଣପଶା ଲୋକର ଭାଗ୍ୟଲକ୍ଷ୍ମୀ ମଧ ତାହା ସହିତ ନିସ୍ତେଜ ଭାବରେ ପଡ଼ିଥାନ୍ତି ।

ମୁଁ ସାହସପୂର୍ବକ ବୋଲିବାକୁ ପ୍ରସ୍ତୁତ, ଆମ୍ଭମାନଙ୍କ ଦୁର୍ଦ୍ଦଶା ସକାଶ ଅନେକ ବିଷୟରେ ଧର୍ମଯାଜକମାନେ ଦାୟୀ । ମୂର୍ଖତା ସମ୍ଭୂତ କୁସଂସ୍କାର ମାନବ ସମାଜକୁ ବିନାଶୋନ୍ମୁଖୀ କରିପକାଏ । ସମୁଦ୍ରଯାତ୍ରା ଏଥିର ଗୋଟିଏ ଅନ୍ୟତମ ଦୃଷ୍ଟାନ୍ତସ୍ଥଳ । ଯଦିଚ ବିଦେଶ ଭ୍ରମଣ ତଥା ସମୁଦ୍ର ଯାତ୍ରା ଧନ, ମାନ, ଜ୍ଞାନ, ସଭ୍ୟତା, ସାହସ ପ୍ରଭୃତି ଲାଭର ବିଶେଷ ପନ୍ଥା, ମାତ୍ର ଆମ୍ଭମାନଙ୍କର ଅଶିକ୍ଷିତ ଧର୍ମଯାଜକ ତଥାକଥିତ ବ୍ୟବସ୍ଥାପକମାନଙ୍କ ମତରେ ଏହା ଗୋଟିଏ ଘୋର ମହାପାତକ ଏବଂ ଜାତିପାତର କାରଣ ଅଟେ । ଜାତିପାତ ଭୟରେ ଏତାବତ୍‌କାଳ ଆମ୍ଭେମାନେ ସମୁଦ୍ର ଯାତ୍ରାରୁ ପରାଙ୍‌ମୁଖ ଥିଲୁଁ । ବର୍ତ୍ତମାନ ଶିକ୍ଷା ପ୍ରଭାବରେ ଦେଶ ମଧ୍ୟରୁ କୁସଂସ୍କାର କ୍ରମଶଃ ଦୂରୀଭୂତ ହେଉଅଛି । ଅଳ୍ପଦିନ ପୂର୍ବେ କାଶୀସ୍ଥ କୌଣସି ଧର୍ମାଧିକରଣରେ ସମବେତ ପଣ୍ଡିତ ମଣ୍ଡଳୀଙ୍କ ସାକ୍ଷ୍ୟ ଦ୍ୱାରା ସମୁଦ୍ରଯାତ୍ରା ଶାସ୍ତ୍ରସିଦ୍ଧ ବୋଲି ସାବ୍ୟସ୍ତ ହୋଇଯାଇଛି ।

ଯେଉଁ ଧର୍ମଯାଜକମାନେ ସମୁଦ୍ରଯାତ୍ରୀମାନଙ୍କୁ ଜାତିଚ୍ୟୁତ ବା ପ୍ରାୟଶ୍ଚିତ୍ତ କରିବାକୁ ବ୍ୟବସ୍ଥା ଦିଅନ୍ତି, ପ୍ରକୃତ ପକ୍ଷରେ ସେହିମାନେହିଁ ଦେବବିଧି ଅମାନ୍ୟକାରୀ ହେତୁ ପ୍ରାୟଶ୍ଚିତ୍ତ କରିବାର ଉପଯୋଗୀ । ଅନ୍ୟଥା ବୈଦିକ ମହାକାବ୍ୟର ସମ୍ମାନ ରକ୍ଷା ହୁଏ ନାହିଁ ।

ହିନ୍ଦୁଶାସ୍ତ୍ରର ଅନେକ ସ୍ଥଳରେ ସମୁଦ୍ରଯାତ୍ରା ପ୍ରସଙ୍ଗ ଉଲ୍ଲେଖ ଥିବା ବିଷୟ ଦେଖାଯାଏ । ପ୍ରମାଣ ନିମନ୍ତେ ବର୍ତ୍ତମାନ ଋକ୍‌ବେଦରୁ କେତୋଟି ମାତ୍ର ବାକ୍ୟ ଉଲ୍ଲେଖ କରିବାକୁ ଇଚ୍ଛା କରେଁ । ବେଦରେ ଉଲ୍ଲିଖିତ ମହାକାବ୍ୟ ପ୍ରତିବାଦ କରିବା କାହାରି ଆପତ୍ତି ନାହିଁ ।

'ତ୍ରିସ୍ତଃ କ୍ଷପସ୍ତ୍ରିରହାତି ବ୍ରଜଦ୍ଭିର୍ନାସତ୍ୟାଭୁଜ୍ୟୁ ମୁହଥୁଃ ପତଙ୍ଗୈଃ

ସମୁଦ୍ରସ୍ୟ ଧନ୍ୱନ୍ନାର୍ଦ୍ରସ୍ୟ ପାରେ ତ୍ରିଭିରଥୈଃ ଶତପଦ୍ଭିଃ ଷଡ଼ଶ୍ୱୈଃ ।"

(ଋକ୍‌ବେଦ, ୧ମ ଅଧ୍ୟାୟ, ୮ମ ମଂ)

ନୌକାନିର୍ମାଣ ଏବଂ ସମୁଦ୍ରଯାତ୍ରା ସମ୍ବନ୍ଧେ ବେଦରେ ଅନେକ ସ୍ଥାନରେ ଉଲ୍ଲେଖ ଅଛି । ସାମାନ୍ୟ ପତ୍ରରେ ସେ ସମସ୍ତ କଥା ଲେଖିବାର ଉପଯୁକ୍ତ ବୋଲି ବୋଧ କଲି ନାହିଁ ।

ବାଲେଶ୍ୱର — ନିତାନ୍ତ ବଶମ୍ବଦ

୧୭ ।୧୨ ।୧୧ — ଶ୍ରୀ ଫକୀରମୋହନ ସେନାପତି ।

"ସମୁଦ୍ର ଯାତ୍ରା" ବିଷୟରେ ନନ୍ଦକିଶୋର ବଳଙ୍କର ମନ୍ତବ୍ୟଟି ମଧ ଏଠାରେ ଉଦ୍ଧାର କରାଗଲା । "ସମୁଦ୍ରଯାତ୍ରା ଶୁଭଜନକ । ପ୍ରାଚୀନ କାଳରେ ସମୁଦ୍ରଯାତ୍ରା କରି ହିନ୍ଦୁମାନେ ଜାଭା, ବାଲି, ସୁମାତ୍ରା, ପ୍ରଭୃତି ଦ୍ୱୀପରେ ଉପନିବେଶ ସ୍ଥାପନ କରିଥିଲେ । ଉକ୍ତ ଉପନିବେଶମାନ ଅଦ୍ୟାପି ଥାଇ ତଦୀୟ ନିବାସିମାନଙ୍କ ଭାରତବାସୀ ହିନ୍ଦୁ ବା ବୌଦ୍ଧ ଥିବାର ନାନା ପ୍ରମାଣ ଦେଉଅଛନ୍ତି । ଉତ୍କଳ ପ୍ରଚଳିତ କାହାଣୀ ମାନଙ୍କରେ ବୋଇତଯାତ୍ରା ସମ୍ବନ୍ଧୀୟ ନାନା ତତ୍ତ୍ୱ ରହିଅଛି । ବାଲେଶ୍ୱର ବନ୍ଦର ସ୍ମରଣୀୟ କାଳ ମଧ୍ୟରେ ବାଣିଜ୍ୟ ସ୍ଥାନ ଥିଲା । ଓଡ଼ିଆ ହିନ୍ଦୁମାନେ ପୋତଯାତ୍ରା କରି ପ୍ରଚୁର ଅର୍ଥ ଲାଭ କରୁଥିଲେ । 'ଗୁଧି' ପ୍ରଭୃତି ପୋତ ସମ୍ବନ୍ଧୀୟ ଶବ୍ଦ ଏହାର ପ୍ରମାଣ । 'ନାରଦଙ୍କ ଶ୍ୱେତଦୀପ ଗମନ' ହିନ୍ଦୁ ପୁରାଣ-ପ୍ରସିଦ୍ଧ । ପତିତ ଭାରତର ଅଗଣନ ଅଭିସମ୍ପାତ ମଧ୍ୟରେ ସମୁଦ୍ରଯାତ୍ରା ନିଷେଧ ଏକତମ । ଏହି କୁସଂସ୍କାର ନିବନ୍ଧନ ବହିର୍ବାଣିଜ୍ୟ ଦ୍ୱାରା ପ୍ରଚୁର ସମ୍ପଦ ସଂଗ୍ରହ, ବିଦେଶ ଭ୍ରମଣ ପ୍ରସୂତ କବିଙ୍କ ଅଭିଜ୍ଞତା ଲାଭ, ଜ୍ଞାନର ସଂପ୍ରସାରଣ, ହୃଦୟର ଉନ୍ନତି, ସଂକୀର୍ଣ୍ଣତା - ପରିହାର ଆଦି ବ୍ୟକ୍ତିଗତ ଓ ସମାଜଗତ ନାନା ଉପକାରରୁ ଆମ୍ଭେମାନେ ବଞ୍ଚିତ ହୋଇ ରହିଅଛୁଁ । କରାଳ କୁସଂସ୍କାର-ରାକ୍ଷସର କି ମୋହନମନ୍ତ୍ରରେ ଅନ୍ଧୀଭୂତ ହୋଇ ଆମ୍ଭେମାନେ ମନୁଷ୍ୟର ସ୍ୱାଭାବିକ ଓ ନିର୍ଦ୍ଦୋଷ ଅଧିକାରରୁ ବଞ୍ଚିତ ହୋଇଅଛୁଁ, ଭାବିଲେ ହୃଦୟରେ ନିର୍ବେଦ ଉପସ୍ଥିତ ହୁଏ । ସୁରଙ୍ଗୀ ନରପତି ପ୍ରକୃତ ଏହି ପାଶବ ଅତ୍ୟାଚାରରେ ପଦାଘାତ କରି ଆମ୍ଭମାନଙ୍କର ଭକ୍ତି ଓ କୃତଜ୍ଞତାର ପାତ୍ର ଓ ସମାଜର ଉପକାରୀ ହୋଇଅଛନ୍ତି ।"

ସମ୍ବଲପୁର — ଶ୍ରୀ ନନ୍ଦକିଶୋର ବଳ ବି.ଏ.

୨୨.୦୧.୧୯୧୨ — ହେଡ୍‌ମାଷ୍ଟର, ସମ୍ବଲପୁର ଜିଲ୍ଲାସ୍କୁଲ

ଫକୀରମୋହନ ଓ ନନ୍ଦକିଶୋରଙ୍କ ପତ୍ର ଦୁଇଟିରୁ ଏକଥା ସ୍ପଷ୍ଟ ହୁଏ ଯେ, ସମୁଦ୍ରଯାତ୍ରା ଯେ କୌଣସି ଦେଶର ଭାଗ୍ୟଲକ୍ଷ୍ମୀ ଉଦୟର ଶୁଭ ସଙ୍କେତ । 'ବାଣିଜ୍ୟେ

ବସତି ଲକ୍ଷ୍ମୀ' ନ୍ୟାୟରେ ଦେଶାନ୍ତର ଗମନର ସମସ୍ତ ଅନ୍ଧବିଶ୍ୱାସ ଓ କୁସଂସ୍କାରକୁ ପରିତ୍ୟାଗ କରି ଦେଶ ବିଦେଶର ଉନ୍ନତ ଆଚାର, ବିଚାର, ସଂସ୍କୃତି ଓ ଜ୍ଞାନକୌଶଳ ଆହରଣ କରି ନିଜର ସଭ୍ୟତା, ସଂସ୍କୃତି ଓ ଜ୍ଞାନ କୌଶଳକୁ ଅଧିକ ଉନ୍ନତ କରିବା ସହିତ ଦେଶର ହିତ ସାଧନ କ୍ଷେତ୍ରରେ ଅଗ୍ରଣୀ ଭୂମିକା ଗ୍ରହଣ କରିବା ଏବଂ ଧନଧାନ୍ୟରେ ସ୍ୱଦେଶକୁ ବିଭବଶାଳୀ କରି ଗଢ଼ି ତୋଳିବା ଆମର ମୁଖ୍ୟ ଆଭିମୁଖ୍ୟ ହେବା ଉଚିତ ।

(୨)

'ଗୋବର୍ଦ୍ଧନ' କାବ୍ୟର ରଚୟିତାଙ୍କ ନାମ ଜଣାନଥିବା ପୁସ୍ତକଟି ଉପରେ ଫକୀରମୋହନ ଏକ ଲିଖିତ ଅଭିମତ ବ୍ୟକ୍ତ କରିଥିଲେ । ଉକ୍ତ ପୁସ୍ତକଟିର ପ୍ରଥମ ଦୁଇପୃଷ୍ଠା ନଥିବା ଅବସ୍ଥାରେ ଏ ଲେଖକଙ୍କର ହସ୍ତଗତ ହୋଇଥିଲା । ଫଳରେ ଏହାର ପ୍ରକାଶିତ ମସିହା, ମୁଦ୍ରିତ ପ୍ରେସ୍ ଓ ଲେଖକଙ୍କ ନାମ ଜାଣିବାର କୌଣସି ଉପାୟ ନଥିଲା । ଏହାର ସାଇଜ ଏବଂ କାଗଜଗୁଡ଼ିକ ବହୁ ପୁରୁଣା, ଧରିଲେ ଭାଙ୍ଗିଯିବ । ସମ୍ଭବତଃ ଏହା କବିଶେଖର ଚିନ୍ତାମଣିଙ୍କ ମେଘାସନ (୧୯୦୮), ମହେନ୍ଦ୍ର (୧୯୧୮) ଏବଂ ମୃତ୍ୟୁଞ୍ଜୟ ରଥଙ୍କ 'ନରାଜ' କାବ୍ୟ ଭଳି । କବି ସ୍ୱରଚିତ ପାଣ୍ଡୁଲିପିଟିକୁ ଉତ୍କଳର ଲବ୍ଧପ୍ରତିଷ୍ଠ କବିବର ରାଧାନାଥ ରାୟ, ମଧୁସୂଦନ ରାଓ ବାହାଦୁର ଓ ଫକୀରମୋହନ ସେନାପତିଙ୍କ ଦ୍ୱାରା ସଂଶୋଧନ କରାଇଥିଲେ । ଉକ୍ତ କବିଙ୍କର ମୃତ୍ୟୁର ଅନେକ ଦିନ ପରେ ପାଣ୍ଡୁଲିପିଟି ତାଙ୍କର ହସ୍ତଗତ ହୋଇଥିଲା । ଯଦ୍ଦ୍ୱାରା ମଧୁବାବୁଙ୍କର ମନ୍ତବ୍ୟ ଆଣି ପାରିନଥିବା ସ୍ୱୀକାର କରିଛନ୍ତି । ଗ୍ରନ୍ଥକାର ପୁସ୍ତକର 'ମୁଖବନ୍ଧ 'ରେ ଲେଖିଛନ୍ତି – "ମୁଁ ଜଣେ ନଗଣ୍ୟ ଲେଖକ । ପାଟନା ରାଜଧାନୀ ବଲାଙ୍ଗିର ସନ୍ନିକଟ ଏହି କ୍ଷୁଦ୍ର ଶୈଳ ଗୋବର୍ଦ୍ଧନର ଅପୂର୍ବ ମହିମାରେ ମୁଗ୍ଧ ହୋଇ ଆତ୍ମଶକ୍ତି ବିବେଚନା ନକରି ଧୃଷ୍ଟତା ବଶତଃ ଏହି କ୍ଷୁଦ୍ର ପଦ୍ୟପୁସ୍ତିକାଟି ଲେଖି ପକାଇଲି ଓ ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରି ଦେଲି । ସହୃଦୟ ପାଠକଗଣ ଉକ୍ତ ଧୃଷ୍ଟତା କ୍ଷମା କରି ଥରେ ମାତ୍ର ପାଠ କଲେ ଚରିତାର୍ଥ ହେବି ।"

ଉକ୍ତ ପୁସ୍ତକଟି ଉପରେ ଫକୀରମୋହନ ଲେଖିଛନ୍ତି, ".....ପୁସ୍ତକ ଖଣ୍ଡିକ ମନୋଯୋଗ ସହିତ ଆମୂଳ ପଢ଼ିଛି । ପଢ଼ିବାକୁ ବିଶେଷ ଆନନ୍ଦ ଜାତ ହେଲା । ମୁଁ ସାହସ ପୂର୍ବକ ଆପଣଙ୍କ ପୁସ୍ତକ ସମ୍ବନ୍ଧେ ଏତିକି ମାତ୍ର ବୋଲୁଛି ରାଧାନାଥ ମୃତ୍ୟୁ ଉତ୍ତାରେ ଏମନ୍ତ ସୁନ୍ଦର ନୂତନ ପଦ୍ୟ ବାହାରିବାର ଦେଖି ନାହିଁ, ଉତ୍କଳ ଭାଷାରେ

ଏହା ଖଣ୍ଡିଏ ଅମୂଲ୍ୟ ରତ୍ନ ।

ପୁସ୍ତକର ଅତି ଅଳ୍ପ ସ୍ଥାନରେ କେତୋଟି କବିତା ମାତ୍ର ବଦଳାଇ ଦେଇଛି ।'

ଆପଣଙ୍କ

ଫକୀରମୋହନ ସେନାପତି

ଏ କାବ୍ୟଟି ଆରମ୍ଭ ଏତେ ଚମତ୍କାର ହୋଇଛି, ଯାହାକୁ ପାଠକଲେ ରାଧାନାଥଙ୍କ 'ଚିଲିକା' କାବ୍ୟ ପାଠ କଲାବେଳେ ପାଠକ ଯେଉଁ ବର୍ଣ୍ଣନାର ସୌନ୍ଦର୍ଯ୍ୟ ପାଟବତାରେ ଆତ୍ମହରା ହୋଇପଡ଼େ, ଠିକ୍ ସେହିଭଳି ସୌନ୍ଦର୍ଯ୍ୟ ଆସ୍ୱାଦନ କରିଥାଏ । କବି ନିଜକୁ ନଗଣ୍ୟ ଲେଖକ ଭାବରେ ପରିଚୟ ଦେଇ ପାରିଥାନ୍ତି, କିନ୍ତୁ ତାଙ୍କ ବର୍ଣ୍ଣନାରେ ପ୍ରତିଭାର ଭାବ ତରଙ୍ଗ ସ୍ପଷ୍ଟ ବାରି ହୋଇଯାଏ । ଉଦାହରଣ ସ୍ୱରୂପ :

"ଅରଣ୍ୟ - ପ୍ରସୂନ ତୁହି ଗୋବର୍ଦ୍ଧନ ।
କିଏବା ବୁଝୁଛି ତୋ ଗୁଣ ଶୋଭନ ।। ।
ବସାଇ ଉନ୍ମୁକ୍ତ ଅଙ୍କେ ଦିନେ ତୋର,
କରିବୁ ଜାଗ୍ରତ ସ୍ୱପନେ ବିଭୋର ।
ନୋହୁ ତୁ ହିମାଦ୍ରି ଗିରି - କୁଳେଶ୍ୱର,
ଶୋଭାର ଆଧାର ଭୀଷଣ ସୁନ୍ଦର ।
ପ୍ରକୃତି ସୁନ୍ଦରୀ ନବନବ ବେଶେ,
ଯହିଁ ଖେଳୁଥାଇ ବିଳାସ ଆବେଶେ ।
ଯକ୍ଷ କିଂପୁରୁଷ ଦିବିଷଦଗଣ
କରିଛନ୍ତି ଯାକୁ ପ୍ରମୋଦ କାନନ ।"

(ଗୋବର୍ଦ୍ଧନ - ପୃ - ୧)

(୩)

ବ୍ୟାସକବି 'ସଙ୍ଗୀତ ରତ୍ନ' ପୁସ୍ତକର ମଧ୍ୟ ଏକ ଆଲୋଚନା ଲେଖିଥିଲେ । ଉକ୍ତ ପୁସ୍ତକଟିର ଲେଖକ ଥିଲେ କନିକା ରାଜବାଟୀର ପଣ୍ଡିତ ସରସ୍ୱତୀ ଶ୍ରୀ ଦାମୋଦର ମିଶ୍ର । କନିକାର ଗିରୀୟା ଶାସନରେ ତାଙ୍କର ବାସସ୍ଥାନ ଥିଲା । ଯେ'କି ଶତାଧିକ

କ୍ଷୁଦ୍ର ପୁସ୍ତକ ମଧ୍ୟ ରଚନା କରିଥିଲେ । ଏଥି ମଧ୍ୟରୁ କନକବର୍ଷ ଚରିତ (କାବ୍ୟ), ରାଜେନ୍ଦ୍ର ପ୍ରଶସ୍ତି (ଅଳଙ୍କାର), ସଙ୍ଗୀତ ରତ୍ନ, ଧ୍ରୁବ ତପସ୍ୟା (ନାଟକ), ସତ୍ୟ ବିଜୟ (ନାଟକ), କିରାତାର୍ଜ୍ଜୁନୀୟ (ଅନୁବାଦ), ଭଞ୍ଜ କନିକା (କାବ୍ୟ) ଶ୍ରୀମଦ୍ଭାଗବତ ମାହାତ୍ମ୍ୟ ଅନ୍ୟତମ ।

'ସଙ୍ଗୀତରତ୍ନ' ପୁସ୍ତକଟି କଟକ ଲକ୍ଷ୍ମୀନାରାୟଣ ପ୍ରେସ୍, ଶେଖ୍ ନଜିର ମୋହମ୍ମଦଙ୍କ ଦ୍ୱାରା ୧୯୩୫ ମସିହାରେ ମୁଦ୍ରିତ ଏବଂ ଉକ୍ତ ପୁସ୍ତକଟିକୁ କବି ନରସିଂହପୁର ପଟ୍ଟମହିଷୀ ଶ୍ରୀମତୀ କନକଲତା ଦେବୀ ମହୋଦାୟାଙ୍କୁ ଉତ୍ସର୍ଗ କରିଥିଲେ ତା ୧.୩.୩୩ ମସିହାରେ ଏବଂ ଏହାର ମୂଲ୍ୟ ଟ.୦୪ (ଆଠଅଣା) ମାତ୍ର ।

ପୁସ୍ତକର ଭୂମିକାରେ ପୁସ୍ତକ ପ୍ରଣେତା ବ୍ୟାସକବିଙ୍କ ବିଷୟରେ ଲେଖିଛନ୍ତି, "ମୁଁ ସନ ୧୯୧୪ ମସିହାରେ ଏହି ପୁସ୍ତକଗତ ସଙ୍ଗୀତଗୁଡ଼ିକ ରଚନା କରି ସମାଲୋଚନା ନିମନ୍ତେ ଉତ୍କଳର ବ୍ୟାସକବି ଶ୍ରୀଯୁକ୍ତ ଫକୀରମୋହନ ସେନାପତିଙ୍କ କରରେ ଅର୍ପଣ କରିଥିଲି, ସେ ମହାତ୍ମା ଏହା ପାଠକରି ଯେଉଁ ପତ୍ର ଲେଖିଥିଲେ ତାହା ଅବିକଳ ଏହି ପୁସ୍ତକରେ ସଂଯୋଗ କଲି ଏବଂ ତାଙ୍କ ଆଦେଶାନୁସାରେ ଅତ୍ରତ୍ୟ ସଙ୍ଗୀତଜ୍ଞ ଶ୍ରୀ ଗଙ୍ଗାଧର ଆଚାର୍ଯ୍ୟଙ୍କ ସାହାଯ୍ୟରେ ଯେଉଁ ଯେଉଁ ସଂଗୀତର ରାଗ-ତାଳ ଲିଖିତ ହୋଇ ନଥିଲା ତାହା ଯଥାଶକ୍ତି ଲେଖିଛନ୍ତି ।"

ସଙ୍ଗୀତ ବିଷୟରେ ଫକୀରମୋହନ ସୁଚିନ୍ତିତ ମନ୍ତବ୍ୟଟି ଏପରି ଥିଲା -

ମାନବ୍ୟର-

ଶ୍ରୀଯୁକ୍ତ ପଣ୍ଡିତ ଦାମୋଦର ମିଶ୍ର ମହାଶୟ.......ସମୀପେଷୁ

ମହାଶୟ !

ବିଶେଷ ମନଯୋଗ ସହିତ ଆପଣଙ୍କ 'ସଙ୍ଗୀତ ରତ୍ନ' ପୁସ୍ତକଗତ ପ୍ରତ୍ୟେକ ସଙ୍ଗୀତ ପାଠ କରି ଆନନ୍ଦିତ ହେଲି । ଉତ୍କଳ ସାହିତ୍ୟ-ସଂସାରରେ ଏହି ପୁସ୍ତକ ଖଣ୍ଡିକ ଉଚ୍ଚସ୍ଥାନ ଅଧିକାର କରିବ, ଏକଥା ନିଶ୍ଚୟ ରୂପେ ବୋଲାଯାଇ ପାରେ । ଅନେକ ଗୁଡ଼ିଏ ସଙ୍ଗୀତର ରାଗିଣୀ ତାଳ ଲିଖିତ ନାହିଁ, ଆଶାକରେ ଏହି ଅଭାବ ପୂର୍ଣ୍ଣ କରି ଦେବାକୁ ଭୁଲିବେ ନାହିଁ । ସାହସପୂର୍ବକ ବୋଲୁଅଛି ବର୍ତ୍ତମାନ ସକାଶେ

ଦେଶସ୍ଥ ଲୋକ-ସାଧାରଣ ପକ୍ଷରେ ପୁସ୍ତକ ଖଣ୍ଡିକ ବିଶେଷ ଉପଯୋଗୀ ଅଟେ । ଉତ୍କଳ ଭାଷାରେ ଶିକ୍ଷଣୀୟ ଅନ୍ୟାନ୍ୟ ବିଷୟ ନିତାନ୍ତ ଅଭାବ ଥିଲେ ମଧ୍ୟ ବହୁ ଶତାବ୍ଦୀ ପୂର୍ବରୁ ଦେଶସ୍ଥ କବିବୃନ୍ଦ ଅନେକ ଗୁଡ଼ିଏ ପୁରାଣ ଅନୁବାଦ ଏବଂ ସଂଗୀତ ରଚନା ଯୋଗେ ଉତ୍କଳସାହିତ୍ୟକୁ ଜାଗ୍ରତ ରଖାଇ ଯାଇ ଅଛନ୍ତି । ପ୍ରାଞ୍ଜଳ ଶବ୍ଦ ବିନ୍ୟାସ, ରଚନା ପାଟବ ଏବଂ ଭାବ ପ୍ରକାଶର କୌଶଳ ଇତ୍ୟାଦି ବିଷୟମାନ ଆଲୋଚନା କରି ଦେଖିଲେ ସାହିତ୍ୟ ହିସାବରେ ପ୍ରାଚୀନ ସଙ୍ଗୀତମାନ ଅତି ଉଚ୍ଚଶ୍ରେଣୀର କବିତା ବୋଲି ସ୍ୱୀକାର କରାଯାଇପାରେ । ମାତ୍ର ଗୋଟିଏ ଉତ୍କଟ ଦୋଷ ସମସ୍ତଗୁଡ଼ାକୁ ବ୍ୟର୍ଥ କରି ଦେଇଅଛି । ଅଧିକାଂଶ ସଙ୍ଗୀତ ଆଦିରସ ଘଟିତ ଏବଂ ମୁକ୍ତ ଭାବରେ ଅଶ୍ଳୀଳତାପୂର୍ଣ୍ଣ ଅଟେ ଏବଂ ଧର୍ମ ସଙ୍ଗୀତ ନାମରେ ଯାହା ଦେବାଳୟମାନଙ୍କରେ ମଧ୍ୟ ଭକ୍ତି ପୂର୍ବକ ସଙ୍ଗୀତ ହୁଏ, ଉକ୍ତ ଦୋଷରୁ ନିତାନ୍ତ ବିମୁକ୍ତ ନୁହେଁ । ଆନନ୍ଦର ବିଷୟ ଅନେକ ଗୁଡ଼ିଏ ସଙ୍ଗୀତ ବିଲୁପ୍ତ ହୋଇ ଗଲାଣି, ବିଲୁପ୍ତ ହେଉଅଛି । ହେବା ବାଞ୍ଛନୀୟ ଅଟେ । ପ୍ରସଙ୍ଗରେ କିଞ୍ଚିତ୍ ଦୂରବର୍ତ୍ତୀ ବିଷୟ ହେଲେ ମଧ୍ୟ ଆନନ୍ଦପୂର୍ବକ ପ୍ରକାଶ କରୁଅଛୁଁ । ବାବୁ ଦାମୋଦର ପଟ୍ଟନାୟକ ବାଛି ବାଛି ଅନେକ ଗୁଡ଼ିଏ ସଙ୍ଗୀତ ସଂଗ୍ରହ କରି ଅଛନ୍ତି, ଉତ୍କଳ ଭାଷାର ଗୌରବ ବର୍ଦ୍ଧନ ନିମନ୍ତେ ଏଗୁଡ଼ିକ ଚିରକାଳ ବିଦ୍ୟମାନ ରହିବ । ସୁରଙ୍ଗୀ ରାଜ୍ୟର ଶ୍ରୀଯୁକ୍ତ ରାଜା ସାହେବ ବିଜ୍ଞାନ ସମ୍ମତ ରୂପେ ଖଣ୍ଡିଏ ସଙ୍ଗୀତ ଶିକ୍ଷା ପୁସ୍ତକ ପ୍ରକାଶ କରି ଗୋଟିଏ ବିଶେଷ ଅଭାବ ମୋଚନରେ ସହାୟତା କରିଛନ୍ତି । ଉତ୍କଳ ମାତାର ଏହି ଯୋଗ୍ୟ ସନ୍ତାନଗଣ ଜାତି ସାଧାରଣର ଧନ୍ୟବାଦାର୍ହ ଅଟନ୍ତି । ସମ୍ବାଦପତ୍ରିକା, ବକ୍ତୃତା, ଉପନ୍ୟାସ ଏବଂ ନାଟକ ପ୍ରଭୃତି ଦେଶୀୟ ଭାଷା ପ୍ରଚାର ପକ୍ଷରେ ବିଶେଷ ଅନୁକୂଳ ହେଲେ ହେଁ ନିତାନ୍ତ ନିରକ୍ଷର ଲୋକମାନଙ୍କ ପକ୍ଷରେ ତାଦୃଶ ଉପଯୋଗୀ ନୁହେଁ । ମାତ୍ର ସଙ୍ଗୀତରେ ଆବାଳବୃଦ୍ଧବନିତା ଜ୍ଞାନୀ ମୂର୍ଖ ସର୍ବସାଧାରଣ ବିମୋହିତ । ଗୀତ ଗାଏ ନାହିଁ, କାନ୍ଦି ନଜାଣେ ପୃଥିବୀରେ ଲୋକ ନିତାନ୍ତ ବିରଳ । ସଙ୍ଗୀତ କ୍ଷୁଧା ତୃଷାରେ ମାନବ ଜାତିର ଗୋଟିଏ ପ୍ରକୃତିଦତ୍ତ ଗୁଣ ଅଟେ । ନିତାନ୍ତ ଶିଶୁମାନଙ୍କୁ ହାତତାଳି ଦେଇ ନାଚିବା ଏବଂ ପାଟିକରି ଗୀତ ଗାଇବା କିଏ ଶିଖାଇଲା ? ସଙ୍ଗୀତ କେବଳ ଆମୋଦପ୍ରମୋଦ ସମ୍ଭୋଗ ପ୍ରକାଶେ ନୁହେଁ, ଏହା ସ୍ୱାସ୍ଥ୍ୟ ଏବଂ ଆୟୁବର୍ଦ୍ଧନ ପକ୍ଷରେ ବିଶେଷ ସହାୟ । ସଙ୍ଗୀତଚର୍ଚ୍ଚା ଯୋଗେ ମାନବ ଦେହର ଫୁସ୍‌ଫୁସ୍ ଯନ୍ତ୍ର ସବଳ ହେବା ଯୋଗୁଁ ଦେହକୁ ଅନେକ ପ୍ରକାର

ରୋଗରୁ ବିମୁକ୍ତ କରାଏ । ଫରାସୀ ଜାତି ପୃଥିବୀର ଅନ୍ୟାନ୍ୟ ଜାତିଠାରୁ ବିଶେଷ ସଙ୍ଗୀତପ୍ରିୟ, ଏଥକୁ ତୁଳନାରେ ଅନ୍ୟାନ୍ୟ ଜାତିଠାରୁ ସୁସ୍ଥ ଶରୀର ଏବଂ ଦୀର୍ଘଜୀବୀ । କେବଳ ଶରୀର ପକ୍ଷରେ ନୁହେଁ, ସଙ୍ଗୀତ ମାନବ-ଜାତିର ସର୍ବ ପ୍ରକାର ଚିତ୍ତବୃତ୍ତିର ଉତ୍ତେଜନାକାରୀ । ଏଥକୁ ଈଶ୍ୱରାଧନା ସମୟ ଏବଂ ସମରାଙ୍ଗଣରେ ବିଶେଷ ସହାୟ ଅଟେ । ଆବାହମାନ କାଳରୁ ପୁଣ୍ୟକ୍ଷେତ୍ର ଭାରତବର୍ଷସ୍ଥ ଆର୍ଯ୍ୟଜାତି ମଧ୍ୟରେ ବାହୁଲ୍ୟ ରୂପେ ସଙ୍ଗୀତ ଚର୍ଚ୍ଚା ହୋଇ ଆସୁଥିବା ପର୍ଯ୍ୟାପ୍ତ ପ୍ରମାଣ ବିଦ୍ୟମାନ । ଅନ୍ୟତମ ସାମବେଦ ଖଣ୍ଡିକ ସଙ୍ଗୀତମୟ । ସଭ୍ୟତାର ସମ୍ପର୍କ ରହିତ ଆରଣ୍ୟ ଜାତିମାନେ ମଧ୍ୟ ସଙ୍ଗୀତ ସମ୍ପର୍କଶୂନ୍ୟ ନୁହନ୍ତି । ମାନବଜାତି କଥା ଥାଉ, ଦେବତା, ପିଶାଚ, ରାକ୍ଷସ, ଦୈତ୍ୟଦାନବ କେହି ସଙ୍ଗୀତ ସମ୍ପର୍କବିହୀନ ନୁହନ୍ତି । ଗନ୍ଧର୍ବ ଅପ୍‌ସରା ଜାତିମାନେ ପ୍ରକୃତ ସଙ୍ଗୀତ ବ୍ୟବସାୟୀ ଜାତି ଅଟନ୍ତି । ଅଧିକ କ'ଣ ! ହସ୍ତୀ, ମୃଗ, ସର୍ପ, ପକ୍ଷୀ, ତିର୍ଯ୍ୟକ୍ ଜାତିମାନେ ମଧ୍ୟ ସଂଗୀତ ବିମୁଗ୍ଧ ଅଟନ୍ତି । ଦାରୁଣ ଦୁଃଖର କଥା, ମାନବଜାତିର ଅବଶ୍ୟ ଅବଲମ୍ବନୀୟ ଦେବଦୁର୍ଲ୍ଲଭ ବିଷୟଟି ଆମ୍ଭମାନଙ୍କ ଦେଶରେ ଥୋକେ ଶିଥିଳ ଚରିତ୍ର ଲୋକହସ୍ତରେ ବିନ୍ୟସ୍ତ ଅଛି । ଆମ୍ଭମାନଙ୍କ ସମାଜରେ ବିଶେଷ ଉତ୍ସବ ବା ମଙ୍ଗଳ କାର୍ଯ୍ୟରେ ଆନନ୍ଦ ବର୍ଦ୍ଧନ ନିମନ୍ତେ ଗୁଡ଼ାଏ ଅମଙ୍ଗଳା ଆହୂତା ହୁଅନ୍ତି । ସଙ୍ଗୀତ ନାମରେ ସେହି ନରକଦୂତୀମାନଙ୍କର କଦର୍ଯ୍ୟ ଅଙ୍ଗସଞ୍ଚାଳନ, ବିକୃତ ତାନ ଲୟ ଚିତ୍କାରକୁ ପିତାପୁତ୍ର, ମାତାପୁତ୍ରୀ ଏକ ସଂଗରେ ବସି ଦର୍ଶନ ଶ୍ରବଣ ସକାଶ କିଞ୍ଚିତ୍ ମାତ୍ର ହେଲେ ନୀତିବିରୁଦ୍ଧ ବିଷୟ ବୋଲି ବିବେଚନା କରନ୍ତି ନାହିଁ । ନୀଚଶ୍ରେଣୀ-ବ୍ୟବସାୟରେ ଭଦ୍ରସନ୍ତାନ ତଥା କୁଳଲଳନାମାନେ ସଂଗୀତ ବ୍ୟବସ୍ଥାକୁ ଲଜ୍ଜାକର ମନେକରୁଥିଲେ । ଅନେକ ବର୍ଷ ପୂର୍ବେ ମୁଁ ଥରେ ପାରଳାଖେମୁଣ୍ଡି ଯାଇ ଶ୍ରୀଯୁକ୍ତ ମହାରାଜଙ୍କ ସ୍ଥାପିତ ଦୁଇଗୋଟି ବାଳିକା ବିଦ୍ୟାଳୟ ଦେଖିଲି । ଗୋଟିଏ ତେଲଙ୍ଗୀ, ଆଉ ଗୋଟିଏ ଉତ୍କଳୀ । ତୈଲଙ୍ଗୀ ବିଦ୍ୟାଳୟରେ ଶିକ୍ଷକ ବୟାଲ ବଜାଇଲେ ଦେବକନ୍ୟା ପରି ବାଳିକାମାନଙ୍କ ସଂଗୀତ ନର୍ତ୍ତନ ଦେଖି ବିମୋହିତ ହୋଇଗଲି । ଉତ୍କଳୀ ବାଳିକା ବିଦ୍ୟାଳୟକୁ ଯାଇ ଦେଖିଲି ଏହି ମନୋହର ବିଦ୍ୟାଟି ସେ ସ୍ଥାନରେ ପ୍ରବେଶ ଲାଭ କରି ନାହିଁ । ହାୟ, ଆମ୍ଭମାନଙ୍କ କୁଳଲକ୍ଷ୍ମୀମାନଙ୍କ ସଂଗୀତ ଶିକ୍ଷା ନିମନ୍ତେ କେବେ ବୃହନ୍ନଳା ପାର୍ଥ ନିଯୁକ୍ତ ହେବେ ! ନିତାନ୍ତ ଆନନ୍ଦର ବିଷୟ, ଶିକ୍ଷା ଏବଂ ସଭ୍ୟତା ପ୍ରଚାର ସହିତ ଉକ୍ତ ପ୍ରକାର ମାରାତ୍ମକ କଥା କ୍ରମଶଃ

ରହିତ ହୋଇ ଯାଉଅଛି । ଦେଶର ସର୍ବବିଷୟରେ ଭରସାର ସ୍ଥଳ ଶିକ୍ଷିତ ଯୁବକମାନେ ସଙ୍ଗୀତଚର୍ଚ୍ଚା ଏବଂ ନାଟକାଭିନୟ କରଣୀୟ ସ୍ଥାନରେ ସେଥିରେ କ୍ରମଶଃ ପ୍ରବୃତ୍ତ ହେଉଛନ୍ତି । ଆମୋଦ ପ୍ରମୋଦ ଛାଡ଼ି ମଧ ଧର୍ମଚର୍ଚ୍ଚା ସକାଶ ସଙ୍ଗୀତ ବିଶେଷ ପ୍ରୟୋଜନ ଅଟେ । ବ୍ରାହ୍ମ, ବୈଷ୍ଣବ, ଖ୍ରୀଷ୍ଟିୟାନ, ମୁସଲ୍‌ମାନ, ବୌଦ୍ଧ, ସମସ୍ତ ଧର୍ମାବଲମ୍ବୀ ସର୍ବଦେଶୀୟ ଲୋକେ ସଂପର୍କକୁ ଧର୍ମସାଧନାରେ ଗୋଟିଏ ବିଶେଷ ଅଙ୍ଗ ସ୍ଥାନରେ ଅବଲମ୍ବନ କରିଥାନ୍ତି ।

ପୂର୍ବାଚାର୍ଯ୍ୟମାନଙ୍କର ମତ ଶତଥର ଈଶ୍ୱରନାମ ଉଚ୍ଚାରଣରେ ଯେଉଁ ପୁଣ୍ୟ, ଥରେ ଧ୍ୟାନରେ  ସେହି ପୁଣ୍ୟ, ଶଏଥର ଧ୍ୟାନରେ ଯେଉଁ ପୁଣ୍ୟ, ଥରେ ସଂଗୀତରେ ସେହି ପୁଣ୍ୟ, କାରଣ ସଂଗୀତରେ ସର୍ବଶରୀର ବିକଶିତ ହୋଇଯାଏ, ଅର୍ଥାତ୍ ପ୍ରତ୍ୟେକ ରକ୍ତବିନ୍ଦୁ ଈଶ୍ୱରାରାଧନାରେ ନିଯୁକ୍ତ ହୁଅନ୍ତି ।

ବର୍ତ୍ତମାନ ପ୍ରୟୋଜନ ସମୟରେ ଆପଣ ଏହି ପୁସ୍ତକ ଖଣ୍ଡିକ ପ୍ରଣୟନ ଦ୍ୱାରା ଧର୍ମସଂଗୀତ ବାହୁଲ୍ୟ ପ୍ରଚାର ସମ୍ବନ୍ଧେ ବିଶେଷ ସହାୟତା କରିଅଛନ୍ତି । ଉପସ୍ଥିତ 'ସଙ୍ଗୀତରତ୍ନ' ଈଶ୍ୱରସ୍ତବ, ଧର୍ମନୀତି, ସୁନୀତିପରିପୂର୍ଣ୍ଣ ଗୃହପଞ୍ଜିକା ପରି ପ୍ରତ୍ୟେକ ଶିକ୍ଷିତ ଭଦ୍ରଲୋକ ଘରେ, ଶିକ୍ଷିତା କୁଳଲଳନା ମାନଙ୍କ ହସ୍ତରେ ଖଣ୍ଡିଏ ଖଣ୍ଡିଏ ପୁସ୍ତକ ରହିବା ନିତାନ୍ତ ବାଞ୍ଛନୀୟ ଅଟେ

।ଇତି।

ତା ୮.୩.୧୫ ରିଖ — ଆପଣଙ୍କ ବଶମ୍ବଦ

ମଲ୍ଲିକାଦେଈପୁର : — ଶ୍ରୀ ଫକୀରମୋହନ ସେନାପତି

ସଂଗୀତ ବିଷୟରେ ଫକୀରମୋହନଙ୍କ ତଥ୍ୟବହୁଳ ଯୁକ୍ତିନିଷ୍ଠ ମନ୍ତବ୍ୟଟି ଯେଭଳି ଉପାଦେୟ ସେଭଳି ଶିକ୍ଷଣୀୟ । ଆଜିର ସମାଜରେ ଶସ୍ତା ଓ ଅଶ୍ଳୀଳ ସଂଗୀତ ବହୁଭାବରେ ରଚିତ ହୋଇ ଯୁବ ସମାଜକୁ ଉଦ୍‌ଭ୍ରାନ୍ତ ଓ ବିପଥଗାମୀ କରାଇବାରେ ଯେପରି ସାହାଯ୍ୟ କରୁଛି, ତଦନୁରୂପୀ ଚଳଚ୍ଚିତ୍ରମାନଙ୍କରେ ଅଭିନୀତ ଅଶ୍ଳୀଳ ଦୃଶ୍ୟ ବହୁଳ ଚିତ୍ରକୁ ସପରିବାର ବସି ଦେଖିବା ସାମାଜିକ ରୁଚିହୀନତା ବା ଦୁଷ୍ଟ ମାନସିକ ବିକାଶ ଦିଗରେ ସେତିକି ପ୍ରୋତ୍ସାହିତ କରୁଛି । ଏସବୁକୁ ଲକ୍ଷ୍ୟ କରି ଫକୀରମୋହନ ମଧ ପ୍ରତିକ୍ରିୟା ପ୍ରକାଶ କରି ଲେଖିଥିଲେ, "ଆମ୍ଭମାନଙ୍କ ସମାଜରେ ବିଶେଷ ଉତ୍ସବ ବା ମଙ୍ଗଳ କାର୍ଯ୍ୟରେ ଆନନ୍ଦ ବର୍ଦ୍ଧନ ନିମନ୍ତେ ଗୁଡ଼ାଏ ଅମଙ୍ଗଳା ଆହୂତା ହୁଅନ୍ତି ।

ସଙ୍ଗୀତ ନାମରେ ସେହି ନରକଦୂତୀମାନଙ୍କର କଦର୍ଯ୍ୟ ଅଙ୍ଗସଞ୍ଚାଳନ, ବିକୃତ ତାନ ଲୟ ଚିତ୍କାରକୁ ପିତାପୁତ୍ର, ମାତାପୁତ୍ରୀ ଏକ ସଙ୍ଗରେ ବସି ଦର୍ଶନ ଶ୍ରବଣ ସକାଶ କିଞ୍ଚିତ୍ ମାତ୍ର ହେଲେ ନୀତିବିରୁଦ୍ଧ ବିଷୟ ବୋଲି ବିବେଚନା କରନ୍ତି ନାହିଁ।" ବ୍ୟାସକବିଙ୍କ ୧୯୧୫ ସମିହାରେ ଏଭଳି ଉକ୍ତିଟି ବିଷୟରେ ଆମେ ଆଜି କେତେଦୂର ସଚେତନ ହୋଇଛୁ, ସେ କଥା ନକହିବା ଭଲ। କିନ୍ତୁ ଏଭଳି ସଙ୍ଗୀତ ଯେଉଁମାନେ ରଚନା କରୁଛନ୍ତି ଏବଂ ଯେଉଁ ସଂସ୍ଥାମାନ ସଂଗୀତ ରୂପ ଦେଇ ପ୍ରକାଶ କରୁଛନ୍ତି, ସେମାନେ ଅନ୍ତତଃ ବ୍ୟାବସାୟିକ ଦୃଷ୍ଟିକୋଣରୁ ସବୁବେଳେ ପ୍ରାଧାନ୍ୟ ନଦେଇ ଜାତୀୟ ସଂସ୍କୃତି ସଚେତନତା ପ୍ରତି ଧ୍ୟାନ ଦେଲେ ଜାତିର ବହୁକିଛି ହିତ ସାଧିତ ହୋଇଥାନ୍ତା।

ବ୍ୟାସକବିଙ୍କ ଉକ୍ତ ଅଭିମତଟିରେ ମୁଦ୍ରଣଗତ ଏବଂ କାବ୍ୟ ରଚନା ଗତ କିଛି ତ୍ରୁଟି ରହିଛି। କାରଣ ଫକୀରମୋହନଙ୍କ ଲିଖିତ ସ୍ୱହସ୍ତାକ୍ଷର ଅଭିମତଟି ୨୦ ବର୍ଷ ପରେ 'ସଙ୍ଗୀତରନ୍' ପୁସ୍ତକର ଲେଖକ ଶ୍ରୀଯୁକ୍ତ ଦାମୋଦର ମିଶ୍ର ମହାଶୟ ପ୍ରକାଶ କରିଛନ୍ତି। ସେତେବେଳେ ତାଙ୍କର ହାତଲେଖା ପତ୍ରଟିର ଅନେକ ଅକ୍ଷର ଅସ୍ପଷ୍ଟ ହୋଇଯାଇଥିବ ନିଶ୍ଚୟ। ତା' ନହେଲେ ଏଭଳି ପ୍ରମାଦ ପରିଲକ୍ଷିତ ହୋଇ ନଥାନ୍ତା। ଯେପରି ଉକ୍ତ ଚିଠିଟି ଶେଷରେ ଫକୀରମୋହନଙ୍କ ଜନ୍ମସ୍ଥାନ 'ମଲ୍ଲିକାଶପୁର' ପରିବର୍ତ୍ତେ 'ମଲ୍ଲିକାଦେଈପୁର' ମୁଦ୍ରଣ ତ୍ରୁଟିଜନିତ ସମ୍ଭବ ହୋଇଛି।

ଉକ୍ତ ପୁସ୍ତକାଭିମତ ଗୁଡ଼ିକରେ ଫକୀରମୋହନଙ୍କ ଉଦାର ବ୍ୟକ୍ତିତ୍ୱ ଯେଭଳି ସୁସ୍ପଷ୍ଟ, ତାଙ୍କର ଉତ୍କଳପ୍ରାଣତା ସେଭଳି ବଳିଷ୍ଠ। ଏହା ଜଣେ ସୃଜନଶୀଳ ପ୍ରତିଭାକୁ ଯେଭଳି ପ୍ରେରଣା ଯୋଗାଇଥାଏ, ସ୍ରଷ୍ଟାର ସୃଷ୍ଟି ସମୀକ୍ଷା ଦ୍ୱାରା ଗୋଟିଏ ଜାତିର ସାଂସ୍କୃତିକ ଜୀବନଧାରାକୁ ସୁ-ସଗଠିତ କରିବା କ୍ଷେତ୍ରରେ ତତୋଽଧିକ ସହାୟକ ହୋଇଥାଏ। ବ୍ୟାସକବିଙ୍କ ସୃଷ୍ଟିଧର୍ମୀ ସାରସ୍ୱତ ଶିଳ୍ପର ଏହା ଏକ ଭିନ୍ନ ଦିଗ, ଏଥିରେ ସନ୍ଦେହ ନାହିଁ।



# ଫକୀରମୋହନଙ୍କ ସ୍ୱର୍ଣ୍ଣ ପଦକ କଥା

'Upendra Narayan , being one of the trustees appointed by the former, and having recieved a gift from the deceased, utilised the gift in establishing "The Fakir Mohan Gold Medal," for the best Oriya answer in Matriculation examination."

'Folk tales of Orissa'. ପୁସ୍ତକର ରଚୟିତା ରାୟସାହେବ ଉପେନ୍ଦ୍ର ନାରାୟଣ ଦତ୍ତଗୁପ୍ତଙ୍କ ପୁତ୍ର ଗୋବିନ୍ଦଚନ୍ଦ୍ର ଦତ୍ତଗୁପ୍ତ ଉକ୍ତ ପୁସ୍ତକର ଦ୍ୱିତୀୟ ସଂସ୍କରଣ ମୁଖବନ୍ଧରେ ସ୍ୱୀୟ ପିତୃଦେବଙ୍କ ସଂକ୍ଷିପ୍ତ ଜୀବନୀ ଅଂଶରେ ଏହିକଥା ଉଲ୍ଲେଖ କରିଛନ୍ତି । ଏହା ୧୯୧୭ ମସିହା କଥା । ସେତେବେଳେ ବାଲେଶ୍ୱର ଜିଲ୍ଲାସ୍କୁଲ (ଆଜିର ଫକୀରମୋହନ କଲେଜ) ରେ ଥିଲେ ସ୍ୱନାମଧନ୍ୟ ପ୍ରଧାନ ଶିକ୍ଷକ ଉପେନ୍ଦ୍ର ନାରାୟଣ ଦତ୍ତଗୁପ୍ତ ।

ଫକୀରମୋହନ ମିଶନସ୍କୁଲର ପ୍ରଧାନ ଶିକ୍ଷକ ଥିବାବେଳେ ବାଲେଶ୍ୱର ଜିଲ୍ଲାସ୍କୁଲ ପରିଦର୍ଶକ କମିଟୀର ସଭ୍ୟ ହୋଇଥିଲେ (୧୮୭୧) । ୧୮୭୧ ମସିହା ଅକ୍ଟୋବର ମାସରେ ବାଲେଶ୍ୱର ଜିଲ୍ଲାର କଲେକ୍ଟର ଜନ ବୀମ୍‌ସଙ୍କ ପ୍ରସ୍ତାବ ଅନୁସାରେ ଫକୀରମୋହନ ନୀଳଗିରିରେ ଦେଓ୍ୱାନ ଭାବରେ ଯୋଗ ଦେଲେ । '୧୮୭୨-୭୩ ମସିହାରେ ବାଲେଶ୍ୱର ଜିଲ୍ଲା ଶିକ୍ଷା କମିଟିରେ ଯେଉଁମାନେ ସଭ୍ୟଥିଲେ, ସେମାନେ ହେଲେ ଜନ୍ ବିମ୍‌ସ ସାହେବ, ଫକୀରମୋହନ ସେନାପତି, ଜେ.ଆର ହ୍ୟାଲେଟ (J.R. Hallet) ଜଗଦୀଶନାଥ ରାୟ, ଜଗନ୍ନାଥ ଦାସ, ଅଟଳ ଚନ୍ଦ୍ର ବାନାର୍ଜୀ, (ଡେପୁଟୀ କଲେକ୍ଟର), ରାଧାନାଥ ରାୟ, ଦ୍ୱାରିକାନାଥ ସେନ (ଡେପୁଟି କଲେକ୍ଟର) ଏବଂ ସହିବ ଦାଶ ଭଟ୍ଟ (ଡେପୁଟି ଇନସ୍‌ପେକ୍ଟର) ।" (୨)

ବାଲେଶ୍ୱରସ୍ଥ ଜିଲ୍ଲାସ୍କୁଲକୁ ୧୮୭୧ ରୁ ୧୯୦୨ ମସିହା ପର୍ଯ୍ୟନ୍ତ ବିଭିନ୍ନ ସମୟରେ ପରିଦର୍ଶକ ମାନେ ଆସିଥିଲେ, ସେମାନେ ହେଲେ- ଫକୀରମୋହନ

ସେନାପତି, (ପରିଦର୍ଶକ କମିଟିର ସଭ୍ୟ), ଅଗଷ୍ଟ ୭, ୧୮୭୧, ଆର. ଏଲ ମାର୍ଟିନ (ଇନସ୍‌ପେକ୍ଟର ଅଫ୍ ସ୍କୁଲସ୍) ୧୮୭୨ ଏପ୍ରିଲ ୨୯, ବାଲେଶ୍ୱରର ରାଜା ଶ୍ୟାମାନନ୍ଦ ଦେ - ୧୮୭୪ ମାର୍ଚ୍ଚ ୨୧, ଜନ୍ ବୀମ୍‌ସ (ଅସ୍ଥାୟୀ କମିଶନର) ୧୮୭୭ ଜୁନ୍ ୨୨, ରାଧାନାଥ ରାୟ (ଜଏଣ୍ଟ ଇନସ୍‌ପେକ୍ଟର) ୧୯୭୭ ଡିସେମ୍ବର ୫, ରାଜାବାହାଦୁର ବୈକୁଣ୍ଠନାଥ ଦେ (ବାଲେଶ୍ୱର ରାଜା ଶ୍ୟାମାନନ୍ଦ ଦେଙ୍କ ପୁତ୍ର ଓ ପରିଦର୍ଶକ କମିଟିର ସଭ୍ୟ) ୧୮୭୮ ଏପ୍ରିଲ ୧୩, ରାୟବାହାଦୁର ଭୂଦେବ ମୁଖାର୍ଜୀ (ସି.ଆ.ଇ. ଇନସ୍‌ପେକ୍ଟର ଅଫ୍ ସ୍କୁଲସ୍) ୧୮୭୯ ମାର୍ଚ୍ଚ ୩୧, ରାୟବାହାଦୁର ମଧୁସୂଦନ ରାଓ (ଅଫିସିଏଟିଙ୍ଗ ଇନ୍‌ସପେକ୍ଟର ଅଫ୍ ସ୍କୁଲସ୍) ୧୮୯୮ ଫେବୃଆରୀ ୨୫, ଆଲେକ୍‌ସ ପେଡ୍‌ହର (Aledx Pedher) ଡି.ପି. ଆଇ ବେଙ୍ଗଲ - ୧୯୦୨ ଜୁଲାଇ ୨୯ ତାରିଖ । (୩)

୧୯୧୭ ମସିହା କୌଣସି ଏକ ସକାଳେ ଫକୀରମୋହନ ନିଜେ ହେଡ଼ମାଷ୍ଟର ଉପେନ୍ଦ୍ରବାବୁଙ୍କ ବାଲେଶ୍ୱର ମିର୍ଜାପୋଖରୀ ପୂର୍ବତଟସ୍ଥ ବାସଭବନକୁ ଆସି ତାଙ୍କୁ ସାକ୍ଷାତ କରି ପାଞ୍ଚଶତ ଟଙ୍କା ମୁଦ୍ରାର ଏକ ଟଙ୍କା ଥଳି ଦେଇଥିଲେ ଏବଂ ଉକ୍ତ ଟଙ୍କାରେ ଜିଲ୍ଲାସ୍କୁଲର ଏକ ପ୍ରାଇଜ୍ ଫଣ୍ଡ ସୃଷ୍ଟି କରିବାକୁ କହିଥିଲେ ।

ଫକୀରମୋହନଙ୍କ ଦାନକୁ ତାଙ୍କ ଇଚ୍ଛାଅନୁଯାୟୀ ଉପେନ୍ଦ୍ରବାବୁ ଜିଲ୍ଲାସ୍କୁଲରେ 'ଫକୀରମୋହନ ପ୍ରାଇଜ୍ ବା ମେଡ଼େଲ ଫଣ୍ଡ' ନାମରେ ଉକ୍ତ ଟଙ୍କାକୁ (Govt. Security) ସରକାରୀ ଡିପୋଜିଟ୍ କରିଥିଲେ । ତା'ଛଡ଼ା ସେ ଏକ Trust Board ଗଠନ କରି ଉକ୍ତ ପ୍ରାଇଜ୍ ଫଣ୍ଡର ସମସ୍ତ ଦାୟିତ୍ୱ ଅର୍ପଣ କରିଥିଲେ । ଏଥିରେ ଯେଉଁମାନେ ମେମ୍ବର ଥିଲେ, ସେମାନେ ହେଲେ - ହେଡ଼ମାଷ୍ଟର ଜିଲ୍ଲାସ୍କୁଲ, ରାୟସାହେବ ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ ('ସମ୍ବାଦ ବାହିକା'ର ସମ୍ପାଦକ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକଙ୍କ ଜ୍ୟେଷ୍ଠପୁତ୍ର) ଗୋଲାପ ଖାଁ (ପୁରୁଣା ଜିଲ୍ଲାସ୍କୁଲ ସାମନା ଖାଁ ପରିବାର । ଏବେ ସେମାନଙ୍କ କୋଠା ଓ ଜାଗା ଫକୀରମୋହନ କଲେଜରେ ବାଣିଜ୍ୟ ବିଭାଗ ରୂପେ ବ୍ୟବହୃତ) ଓ ଅନ୍ୟମାନେ ।

ପ୍ରାଇଜର ଉଦ୍ଦେଶ୍ୟ - ଫକୀରମୋହନଙ୍କ ଇଚ୍ଛାନୁଯାୟୀ ବାଲେଶ୍ୱର ଜିଲ୍ଲାସ୍କୁଲର ପ୍ରତିବର୍ଷ ମେଟ୍ରିକ (Matriculation) ପରୀକ୍ଷାରେ ଓଡ଼ିଆ ସାହିତ୍ୟରେ ସର୍ବୋଚ୍ଚ ନମ୍ବର ରଖିଥିବା ଛାତ୍ରକୁ ଉକ୍ତ ଡିପୋଜିଟ୍ ଟଙ୍କାର ଶତକଡ଼ା ୫% ବାର୍ଷିକସୁଧ ଅର୍ଥାତ୍ ପଚିଶ ଟଙ୍କା (ଟ ୨୫)ରେ ପୁରସ୍କୃତ କରାଯିବ ।

ହେଡ୍‌ମାଷ୍ଟର ଉପେନ୍ଦ୍ରବାବୁ ବାଲେଶ୍ୱର ଜିଲ୍ଲା ସ୍କୁଲରେ ସେପ୍ଟେମ୍ବର ୧୦,୧୯୧୯ ମସିହା ପର୍ଯ୍ୟନ୍ତ ରହିଥିଲେ । ପୂଜା ଛୁଟି ପୂର୍ବରୁ ସେ ପୁରୀ ଜିଲ୍ଲାସ୍କୁଲକୁ ହେଡ୍‌ମାଷ୍ଟର ଭାବରେ ବଦଳି ହୋଇଗଲେ । ତାଙ୍କ ବଦଳରେ ଆସିଲେ ପୁରୀ ଜିଲ୍ଲାସ୍କୁଲର ପ୍ରଧାନ ଶିକ୍ଷକ ସୁସାହିତ୍ୟିକ ଚନ୍ଦ୍ରମୋହନ ମହାରଣା । ସେ ବାଲେଶ୍ୱର ଜିଲ୍ଲାସ୍କୁଲର ପ୍ରଧାନ ଶିକ୍ଷକ ଦାୟିତ୍ୱ ନେଲେ ଅକ୍ଟୋବର ୨୩, ୧୯୧୯ ମସିହାରେ ।

ଠିକ୍ ୧୯ ମାସ ପରେ ୧୯୨୧ ମସିହା ମେ' ମାସ ୩୦ ତାରିଖରେ ଏ ବିଷୟ ନେଇ ପୁରୀ ଜିଲ୍ଲାସ୍କୁଲର ପ୍ରଧାନ ଶିକ୍ଷକ ଉପେନ୍ଦ୍ର ନାରାୟଣ ଦତ୍ତଗୁପ୍ତ ବାଲେଶ୍ୱର ଜିଲ୍ଲାସ୍କୁଲର ପ୍ରଧାନ ଶିକ୍ଷକଙ୍କୁ ଯେଉଁ ପତ୍ର ଲେଖିଥିଲେ, ତାର ଉତ୍ତରରେ ୨୮୪ ନଂ ଚିଠି ଅନୁଯାୟୀ ୧୯୨୧ ମସିହା ଜୁନ୍ ୨ ତାରିଖରେ ଅସ୍ଥାୟୀ ପ୍ରଧାନ ଶିକ୍ଷକ ଦାୟିତ୍ୱରେ ଥିବା ସହକାରୀ ଶିକ୍ଷକ ଶ୍ରୀଯୁକ୍ତ ଭୀମ ରାଉତ ଲେଖିଥିଲେ-

"... that correspondence is going on for the award of the Fakir Mohan Prize for 1920 and that no steps can now be taken for the Prize of 1921 which is most probably to be given away in May 1922." (୪)

ଏଥିରୁ ସ୍ପଷ୍ଟ ହୁଏ, ସହକାରୀ ଅସ୍ଥାୟୀ ପ୍ରଧାନ ଶିକ୍ଷକ ଦାୟିତ୍ୱରେ ଥିବା ଭୀମ ରାଉତ ପୁରୀ ଜିଲ୍ଲାସ୍କୁଲର ପ୍ରଧାନ ଶିକ୍ଷକ ଉପେନ୍ଦ୍ରବାବୁଙ୍କୁ ଜଣାଇଥିଲେ, ୧୯୨୦ ମସିହା ପାଇଁ ଫକୀରମୋହନ ମେଡ଼େଲ ପୁରସ୍କାର ଦିଆଯିବା ନେଇ ସରକାରଙ୍କ ସହିତ ଯୋଗାଯୋଗ ଚାଲିଛି । କିନ୍ତୁ ୧୯୨୧ ମସିହା ପାଇଁ ଏ ବିଷୟରେ ବର୍ତ୍ତମାନ କୌଣସି ପଦକ୍ଷେପ ଗ୍ରହଣ କରାଯାଇ ପାରୁନାହିଁ । ଯେତେ ଦୂର ସମ୍ଭବ ଏହା ୧୯୨୨ ମସିହା ମେ ମାସ ଆଡ଼କୁ ଦିଆଯିବ ।

ଇତି ମଧ୍ୟରେ ସରକାରୀ ନୋଟିଫିକେସନ୍ 1015E, ୧୫ ମାର୍ଚ୍ଚ ୧୯୨୦ ମସିହା ଅନୁଯାୟୀ ବାଲେଶ୍ୱର ଜିଲ୍ଲା ସ୍କୁଲର ହେଡ୍‌ମାଷ୍ଟର ଚନ୍ଦ୍ରମୋହନ ମହାରଣା ଚିଠି ନଂ - ୪୦୪, ବାଲେଶ୍ୱର ୧୯୨୧ ଅଗଷ୍ଟ ୨ ତାରିଖରେ ପ୍ରଧାନ ଶିକ୍ଷକ ଉପେନ୍ଦ୍ରବାବୁଙ୍କୁ ଜଣାଇଥିଲେ-

...that Somanath Mishra, who passed the Matriculation Examination of 1920 with a Scholarship of Rs 15/- stood first in Oria

Literature. I had receīved verlal information that the boy had joined the non-co-cperation movement and given up his studies at the college. The Principal of the Revenshaw College informed this office upon enquiry that the name of the boy had Struck off as a defaulter and the police Superintendent of Cuttack could given no information on the subject. ....I beg to suggest that Gajendra Prasad Pattanayak and Haris Ch. Baral having secured the highest marks in Oria Literature among eligible padded pupils of the years 1920 and 1921 respectively, I beg to prospose that Gajendra Prasad Pattanayak may be awarded medal worth Rs 25/- and Haris Ch. Baral who has taken his admission to the Revenshaw college at Cuttack and is too poor to purchase all his books may be awarded books worth Rs 25/-

I have the honour to be

Sir

Yours most obedient servent

Sd/C. Maharana

Headmaster.

To,

Babu Upendra Narayan Duttagupta.

BA. B.T

One of the administrators, FokirMohan Prize or Medal Fund Balasore.

ସେତେବେଳେ ଓଡ଼ିଶାର ଶିକ୍ଷାନୁଷ୍ଠାନ ଗୁଡ଼ିକ ବିହାରର ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା । ଅତଏବ ପାଟନା ବିଶ୍ୱବିଦ୍ୟାଳୟ ମୁଖ୍ୟ Registra ଙ୍କ ଜଣାଇବା ଅନୁଯାୟୀ ସୋମନାଥ ମିଶ୍ର ଯେକି ବାଲେଶ୍ୱର ଜିଲ୍ଲାସ୍କୁଲରୁ ୧୯୨୦ ମସିହାରେ ଟ.୧୫ ବୃତ୍ତିସହ ପାଶ୍ କରି ଓଡ଼ିଆ ସାହିତ୍ୟରେ ସର୍ବୋଚ୍ଚ ନମ୍ବର ରଖିଥିଲେ । ପରେ ସେ ରେଭେନ୍‌ସା କଲେଜରେ ନାମ ଲେଖାଇ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବା ଫଳରେ ଦୀର୍ଘଦିନ କଲେଜରେ ଅନୁପସ୍ଥିତ ହେତୁ ତାଙ୍କ ନାମ

କଟିଯାଇଥିବା ସଠିକ୍ ଅନୁସନ୍ଧାନ ଖବର ଚନ୍ଦ୍ରମୋହନ କଲେଜ ଅଧ୍ୟକ୍ଷଙ୍କ ଠାରୁ ଜାଣିପାରିଥିଲେ । ସୋମନାଥ ମିଶ୍ର ପୁରୀ ଜିଲ୍ଲାବାସୀ ହୋଇଥିବା ଦୃଷ୍ଟିରୁ ହେଡ୍‌ମାଷ୍ଟର ଚନ୍ଦ୍ରମୋହନ ମହାରଣା ପୁରୀ ଜିଲ୍ଲା ପୋଲିସ୍ ସୁପରିଣ୍ଟେଣ୍ଡଙ୍କ ଠାରୁ ତାଙ୍କର ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିବା ଠିକ୍ ସମ୍ବାଦ ମଧ୍ୟ ପାଇଥିଲେ ।

ସେହି ଅନୁଯାୟୀ, ଛାତ୍ର ଗଜେନ୍ଦ୍ର ପ୍ରସାଦ ପଟ୍ଟନାୟକ, ଯେକି ସୋମନାଥ ମିଶ୍ରଙ୍କ ପରବର୍ତ୍ତୀ ଓଡ଼ିଆ ସାହିତ୍ୟର ସର୍ବୋଚ୍ଚ ନମ୍ବରଧାରୀ ତାଙ୍କୁ ୧୯୨୦ ମସିହା ପାଇଁ ଏବଂ ଛାତ୍ର ହରିଶ୍ ଚନ୍ଦ୍ର ବଡ଼ାଲ ଯେକି ୧୯୨୧ ମସିହାର ମେଟ୍ରିକୁଲେସନ୍ ପରୀକ୍ଷାରେ ସମଗ୍ର ବିହାର ଓଡ଼ିଶାରେ ଦ୍ୱିତୀୟ ସ୍ଥାନ ଅଧିକାର କରି ବାଲେଶ୍ୱର ଜିଲ୍ଲାସ୍କୁଲରୁ ଓଡ଼ିଆ ସାହିତ୍ୟରେ ସର୍ବୋଚ୍ଚ ନମ୍ବର ରଖିଥିଲେ ପ୍ରତ୍ୟେକେ ଟ.୨୫ ମୂଲ୍ୟର 'ଫକୀରମୋହନ ପଦକ' ପାଇବା ପାଇଁ ଯୋଗ୍ୟ ବିବେଚିତ ବୋଲି ମତପୋଷଣ କରିଥିଲେ । ମାତ୍ର ହରିଶ୍ଚନ୍ଦ୍ର ବଡ଼ାଲ ପରବର୍ତ୍ତୀ ସମୟରେ ରେଭେନ୍‌ସା କଲେଜର ପ୍ରଥମବର୍ଷ ବିଜ୍ଞାନ ଶ୍ରେଣୀର ଜଣେ ଅତି ଗରିବ ଛାତ୍ର ଭାବରେ ନିଜର ପାଠ୍ୟପୁସ୍ତକ କିଣିବାକୁ ସମ୍ପୂର୍ଣ୍ଣ ଅକ୍ଷମ ଥିବାରୁ ତାଙ୍କୁ ସେହି ମୂଲ୍ୟର ପାଠ୍ୟପୁସ୍ତକ ଦିଆଯାଉ ବୋଲି ସୁପାରିସ୍ କରିଥିଲେ ।

ବ୍ୟାସକବି ଫକୀରମୋହନ ଶେଷ ଜୀବନରେ ଖୁବ୍ ଦୂରଦୃଷ୍ଟିର ସହିତ କେତେକ କାର୍ଯ୍ୟ (ଯାହା ନିଜ ଦ୍ୱାରା ଅକରଣୀୟ) ଯଥା- ନିଜର ସ୍ମୃତି ରକ୍ଷାପାଇଁ ଜିଲ୍ଲାସ୍କୁଲର ଡ୍ରଇଂ ଶିକ୍ଷକ, ପୁରୀ ନିବାସୀ ଆନନ୍ଦ ମିଶ୍ରଙ୍କ ଦ୍ୱାରା ନିଜର ପ୍ରତିମୂର୍ତ୍ତି ଗଢ଼ିବା (ଯାହା ଏବେବି ତାଙ୍କର ପ୍ରିୟ ଶାନ୍ତିକାନନରେ ଦଣ୍ଡାୟମାନ), 'ଆତ୍ମ ଜୀବନ ଚରିତ' ଲେଖିବା ତଥା ନିଜ ନାମରେ ଜିଲ୍ଲାସ୍କୁଲରେ ପଦକ ସୃଷ୍ଟିକରିବା ମୂଳରେ ଏ ଜାତିକୁ କିଛି ନୂତନ ପ୍ରେରଣା ଯୋଗାଇଥିଲେ । ତାଙ୍କର ଉଦ୍ଦେଶ୍ୟ ବିଷୟରେ ସେ ସ୍ୱୀୟ ଆତ୍ମଜୀବନୀ ରେ ସ୍ୱୀକାର କରିଛନ୍ତି, "ଅଦୂର ଭବିଷ୍ୟତରେ ଏ ଜାତିର ଉତ୍ତରଦାୟାଦ ଯେଉଁମାନଙ୍କର ଏଜାତି ପାଇଁ କିଛି ଅବଦାନ ରହିବ ବା ସତ୍‌କର୍ମ କରିବେ, ସେମାନେ ନିଜ ନିଜର ଆତ୍ମଜୀବନୀ ରଚନା କରିବେ ଏବଂ ଅନ୍ୟମାନେ ସେମାନଙ୍କର ପ୍ରତିମୂର୍ତ୍ତି ସ୍ଥାପନ କରି ସମବେତ ଶ୍ରଦ୍ଧାଞ୍ଜଳି ଜଣାଇବେ । ଫଳରେ ଏଜାତି ନିଜକୁ ଓ ନିଜର ପ୍ରତିଭାକୁ ଚିହ୍ନିବାର ଅବକାଶ ପାଇବ ଏବଂ ଆତ୍ମସଚେତନ ହୋଇ ଜାତିର ହିତ ଉଦ୍ଦେଶ୍ୟରେ ନିଜର ପ୍ରତ୍ୟେକଟି କର୍ମକୁ ଉତ୍ସର୍ଗ କରିବ, ଏଥିରେ ଦେଶ, ଜାତିର ଅଶେଷ ମଙ୍ଗଳ ସାଧିତ ହେବ ।

ଫକୀରମୋହନଙ୍କ ଭାଷାରେ-

"ଭାଷାହିଁ ଜୀବନୀ ଶକ୍ତି ଜାତି ମାନଙ୍କର,

ଯେଉଁ ଜାତି ଭାଷାହୀନ, ସେ ଜାତି ବର୍ବର ।"

ଏଣୁ ଜୀବନର ସାୟାହ୍ନ କାଳରେ ମଧ୍ୟ ସେ ସାରସ୍ୱତ ସାଧନାରୁ ନିବୃତ୍ତ ନଥିଲେ । ଫଳରେ ତାଙ୍କର ଅମର ଲେଖନୀ ମୁନରୁ ସମ୍ଭବ ହୋଇଥିଲା କାଳଜୟୀ ସାରସ୍ୱତ ସୃଷ୍ଟି ସମ୍ଭାର ଗୁଡ଼ିକ, ଯଥା – ରାମାୟଣ ଓ ମହାଭାରତ, ଉପନିଷଦ, ଶ୍ରୀମଦ୍ ଭଗବତ୍ ଗୀତାର ସରଳ ଉତ୍କଳ-ପଦ୍ୟାନୁବାଦ, ·ଉପହାର, ପୂଜାଫୁଲ, ପୁଷ୍ପମାଳା, ଅବସର ବାସରେ, ଧୂଳି ଓ ଉତ୍କଳ ଭ୍ରମଣଂ ପ୍ରଭୃତି କବିତା ପୁସ୍ତକ, ଗଳ୍ପସ୍ୱଳ୍ପର ୨୦ଟି ଗଳ୍ପ, ଛଅମାଣ ଆଠଗୁଣ୍ଠ, ମାମୁଁ, ଲଛମା ଓ ପ୍ରାୟଶ୍ଚିତ୍ତ ପ୍ରଭୃତି ଚାରୋଟି ଉପନ୍ୟାସ ।

ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନ (୧୮୬୬-୭୨) କାଳରେ ଓଡ଼ିଆ ପାଠ୍ୟ ପୁସ୍ତକର ଘୋର ଅଭାବ, ଓଡ଼ିଆ ସାହିତ୍ୟର ପ୍ରକୃତ ଅବସ୍ଥାକୁ ଉପଲବ୍‌ଧି କରି ଓଡ଼ିଆ ଭାଷା ସାହିତ୍ୟ ପ୍ରତି ଛାତ୍ରଜୀବନରୁ ସେମାନଙ୍କର ଅନୁରାଗ ଓ ଓଡ଼ିଆ ମାତୃଭାଷା ପ୍ରତି ଆଗ୍ରହ ଭାବ ସୃଷ୍ଟି କରିବା ଉଦ୍ଦେଶ୍ୟରେ ସେ ଜିଲ୍ଲାସ୍କୁଲରେ "ଫକୀରମୋହନ ମେଡେଲ ଫଣ୍ଡ" ପାଇଁ ଅର୍ଥଦାନ ଏହାଦ୍ୱାରା ସ୍କୁଲ ଛାତ୍ର ମାନଙ୍କର କେବଳ ଯେ ଓଡ଼ିଆ ସାହିତ୍ୟ ବିଷୟ ପ୍ରତି ମମତ୍ୱବୋଧ ସୃଷ୍ଟି ହୋଇଥିଲା, ତା ନୁହେଁ, ସେମାନେ ଓଡ଼ିଆ ଭାଷାରେ ଦକ୍ଷତା ଅର୍ଜନ କରିବା ସଂଗେସଂଗେ ନିଜ ଭବିଷ୍ୟତ ସୃଜନଶୀଳ ଲେଖକ ଜୀବନକୁ ବହୁଭାବରେ ପ୍ରଭାବିତ କରିପାରିଥିଲେ । ୧୯୨୧ ମସିହାରେ 'ଫକୀରମୋହନ ପଦକ' ପାଇଥିବା ବାଲେଶ୍ୱର ଜିଲ୍ଲାସ୍କୁଲର ଛାତ୍ର ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବଡ଼ାଳ ଫକୀରମୋହନଙ୍କ ଉଦ୍ଦେଶ୍ୟକୁ ସଫଳ କରି ପରବର୍ତ୍ତୀ ଜୀବନରେ ସବୁଜ ଯୁଗର ଜଣେ ବିଶିଷ୍ଟ ଗାଳ୍ପିକ, ଔପନ୍ୟାସିକ, ପ୍ରାବନ୍ଧିକ ଓ କବି ଭାବରେ ଆଜି ସମ୍ମାନିତ । ବାଲେଶ୍ୱର ଜିଲ୍ଲାସ୍କୁଲ କର୍ତ୍ତୃପକ୍ଷ ପ୍ରତିବର୍ଷ ଫକୀରମୋହନଙ୍କ ହାତଟେକା ଦାନକୁ ଯଥାର୍ଥ ଭାବରେ ସଦ୍‌ବ୍ୟବହାର କରିବା ଉଚିତ୍ । ଦୁଃଖର ବିଷୟ 'ଫକୀରମୋହନ ସ୍ୱର୍ଣ୍ଣପଦକ' କଥା ବାଲେଶ୍ୱର ଜିଲ୍ଲାସ୍କୁଲର କର୍ତ୍ତୃପକ୍ଷ ଏବେ ସମ୍ପୂର୍ଣ୍ଣଭାବରେ ଭୁଲିଗଲେଣି ।



# ଫକୀରମୋହନଙ୍କ ଦୁଷ୍ପ୍ରାପ୍ୟ ଚିଠିପତ୍ରର ସମ୍ପର୍କ

ବ୍ୟାସକବି ଫକୀରମୋହନ ସେନାପତିଙ୍କ ସହିତ ବିଶିଷ୍ଟ ଶିକ୍ଷାବିତ୍ ତଥା ସୁସାହିତ୍ୟିକ ଚନ୍ଦ୍ରମୋହନ ମହାରଣାଙ୍କ ସମ୍ପର୍କ ଥିଲା ମୁଖ୍ୟତଃ ତିନୋଟି ଦୃଷ୍ଟିରୁ- ପ୍ରଥମତଃ ଉଭୟେ ଏକ ଅଞ୍ଚଳରେ ବ୍ୟକ୍ତି ବିଶେଷ, ଦ୍ୱିତୀୟତଃ ଜୀବନର ଆଦ୍ୟଭାଗରେ ଜୀବିକାର୍ଜନ କ୍ଷେତ୍ରରେ ଉଭୟେ ଥିଲେ ଶିକ୍ଷକ, ତୃତୀୟତଃ ମାତୃଭାଷାର ସେବା କ୍ଷେତ୍ରରେ ଦୁହେଁ ଥିଲେ ଏକନିଷ୍ଠ ସାଧକ । ଏତଦ୍‌ଭିନ୍ନ ପରସ୍ପର ମଧ୍ୟରେ ବ୍ୟକ୍ତିଗତ ସମ୍ପର୍କ ଘନିଷ୍ଠରହି ଜୀବନର ଅନ୍ତିମ ଅବସ୍ଥା ପର୍ଯ୍ୟନ୍ତ ତାହା ଅକ୍ଷୁଣ୍ଣ ଥିଲା ।

ବୟସରେ ଫକୀରମୋହନ ଚନ୍ଦ୍ରମୋହନଙ୍କଠାରୁ ଯଥେଷ୍ଟ ବଡ଼ଥିଲେ ମଧ୍ୟ ଚନ୍ଦ୍ରମୋହନଙ୍କ ଭଳି ଜଣେ ମେଧାବୀ ଛାତ୍ରର ସାହିତ୍ୟ ଅନୁରାଗୀ ସୃଜନଶୀଳ ପ୍ରତିଭାର ପରିଚୟ ବହୁ ଆଗରୁ ପାଇଥିଲେ; ଯେତେବେଳେ କି ଚନ୍ଦ୍ରମୋହନ ରେଭେନ୍‌ସା କଲେଜର ଏଫ୍.ଏ.କ୍ଲାସ୍‌ର ଛାତ୍ରଥାଇ 'ସଂସ୍କାରକ', 'ପ୍ରଜାବନ୍ଧୁ', ଆଦି ପତ୍ରିକାରେ ନିଜର ଲେଖା ପ୍ରକାଶ କରୁଥିଲେ ଏବଂ 'ନବୋଦ୍ୟମ' ବୋଲି ପୁସ୍ତକଟିଏ ମଧ୍ୟ ରଚନା କରିଥିଲେ । ଅତଏବ ସ୍କୁଲ ଓ କଲେଜ ଜୀବନରେ ସର୍ବଦା ପ୍ରଥମ ଶ୍ରେଣୀର ଜଣେ ବୃତ୍ତିଧାରୀ ଛାତ୍ର ତଥା ସାହିତ୍ୟ ପ୍ରତିଭାର ଅଧିକାରୀ ଚନ୍ଦ୍ରମୋହନଙ୍କ ପ୍ରତି ଫକୀରମୋହନଙ୍କର କାହିଁକି କବିବର ରାଧାନାଥ ରାୟ, ଭକ୍ତକବି ମଧୁସୂଦନ ରାଓ ତଥା ଅନ୍ୟମାନଙ୍କର ସଦାସର୍ବଦା ଶୁଭଦୃଷ୍ଟି ଥିଲା । ପରବର୍ତ୍ତୀ ଜୀବନରେ ତାଙ୍କର ଉତ୍କଳ ସାହିତ୍ୟ, ଉତ୍କଳପ୍ରଭା, ଶିକ୍ଷାବନ୍ଧୁ, ବିଜୁଳି, ସମ୍ବଲପୁର ହିତୈଷିଣୀ ଆଦି ପତ୍ରିକାରେ ବିବିଧ ପ୍ରବନ୍ଧ ପ୍ରକାଶପାଇ ପାଠକବର୍ଗଙ୍କୁ ଯେଭଳି ମୁଗ୍ଧ କରିଥିଲା, ସେଭଳି ତାଙ୍କର ରଚନା ଓ ମନ୍ତବ୍ୟ ପ୍ରତି ସେମାନଙ୍କର ଗଭୀର ଆସ୍ଥାଭାବ ସୃଷ୍ଟିହୋଇଥିଲା । ଏହାଛଡ଼ା ଜଣେ ନୀତି ଓ ନିଷ୍ଠାବାନ ଶୃଙ୍ଖଳାପ୍ରିୟ ଛାତ୍ରବତ୍ସଳ

ଶିକ୍ଷକଭାବରେ ସମାଜର ତତ୍କାଳୀନ ଆଧୁନିକ ଶିକ୍ଷା ସମ୍ପନ୍ନ ଶିକ୍ଷିତ ଗୋଷ୍ଠୀ ତାଙ୍କୁ ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରୁଥିଲେ । ଫଳରେ ନିଜର ଅସାଧାରଣ ବିଦ୍‌ବତ୍ତା, ବିଚକ୍ଷଣ ଧୀଶକ୍ତି ତଥା ବ୍ୟକ୍ତି ଚରିତ୍ର ଗଠନ କ୍ଷେତ୍ରରେ ତାଙ୍କର କଠୋର ବ୍ୟକ୍ତିତ୍ୱ ହିମାଳୟ ପରି ଉତ୍ତୁଙ୍ଗଥିଲା ।

ଫକୀରମୋହନ ଓ ଚନ୍ଦ୍ରମୋହନଙ୍କ ବ୍ୟକ୍ତିଗତ ତଥା ପାରିବାରିକ ଜୀବନର ବହୁବିଧ ସମ୍ପର୍କ ଥିବା ସ୍ୱାଭାବିକ୍ । କାରଣ ଉଭୟେ ଥିଲେ ସମକାଳୀନ, ସମ ଭାବାପନ୍ନ ତଥା ସମକର୍ମପନ୍ଥାବଲମ୍ବନକାରୀ । ତଥାପି ମୋର ହସ୍ତଗତ ହୋଇଥିବା ଫକୀରମୋହନଙ୍କ କେତୋଟି ଦୁଷ୍ପ୍ରାପ୍ୟ ଚିଠି ଗୁଡ଼ିକରୁ ଉଭୟଙ୍କ ସମ୍ପର୍କ କେତେ ନିବିଡ଼, ପବିତ୍ର, ମଧୁର, ସ୍ୱଚ୍ଛ, ନିର୍ମଳ, ଥିଲା, ତାହା ସ୍ପଷ୍ଟ ସୂଚନା ମିଳେ । ଏଭଳିକି ବୟୋଜ୍ୟେଷ୍ଠ ଫକୀରମୋହନ ପ୍ରତିଟି ଚିଠିରେ, ଅନୁଜ ଚନ୍ଦ୍ରମୋହନଙ୍କୁ ସର୍ବଦା ବନ୍ଧୁତୁଲ୍ୟ 'ପ୍ରିୟତମ ଚନ୍ଦ୍ରମୋହନ' 'ପ୍ରିୟ ଚନ୍ଦ୍ରମୋହନ ବାବୁ' ଭାବରେ ସମ୍ବୋଧନ କରିଛନ୍ତି । ତା' ଛଡ଼ା ସେତେବେଳେ ଯେ କେହି ନୂତନ ବିଷୟରେ ଲେଖନୀ ଚାଳନା କଲାମାତ୍ରେ ଫକୀରମୋହନ ତାଙ୍କୁ ଯେତିକି ଉତ୍ସାହ ପ୍ରଦାନ କରୁଥିଲେ, ପରବର୍ତ୍ତୀ ରଚନା ପାଠ କରିବାପାଇଁ ସେତିକି ଆଗ୍ରହର ସହିତ ଚାତକ ଦୃଷ୍ଟିରେ ଚାହିଁ ବସୁଥିଲେ । ଏହା ଯେ କେବଳ ଫକୀରମୋହନ ଓ ଚନ୍ଦ୍ରମୋହନଙ୍କ ମଧ୍ୟରେ ଘଟୁଥିଲା, ତା' ନୁହେଁ କବିବର ରାଧାନାଥ, ଭକ୍ତକବି ମଧୁସୂଦନ, ସ୍ୱଭାବକବି ଗଙ୍ଗାଧର ଏବଂ ପଲ୍ଲୀକବି ନନ୍ଦକିଶୋରଙ୍କ ମଧ୍ୟରେ ପରସ୍ପର ମୌଳିକ ଭାବ ବିନିମୟ ପତ୍ର ମାଧ୍ୟମରେ ବହୁ ଭାବରେ ଘଟିଛି । ତା'ଛଡ଼ା ପ୍ରକୃତ ସ୍ରଷ୍ଟାର ସୃଷ୍ଟି ପ୍ରତିଭା ଥିଲା ସ୍ୱଚ୍ଛସ୍ଫଟିକ ତୁଲ୍ୟ । ଆଜିକାଲି ପରି ପ୍ରତିଭା କ୍ଷେତ୍ରରେ ଏତେଟା ଭେଜାଲ ନଥିଲା । ଏହାଥିଲା ସେ ଯୁଗର ସାରସ୍ୱତ ଧର୍ମ ।

ଫକୀରମୋହନଙ୍କ ଦୁଷ୍ପ୍ରାପ୍ୟ ଚିଠିଗୁଡ଼ିକ ମଧ୍ୟରୁ ତିନି ଚାରିଟିର ଦୃଷ୍ଟାନ୍ତ ଦେଲେ ପରସ୍ପର ସମ୍ପର୍କ ସେତୁ ବିଷୟରେ ବେଶ୍ ଅନୁମାନ କରିହେବ । ଚନ୍ଦ୍ରମୋହନ ମହାରଣାଙ୍କ 'ଶ୍ରୀଧର ସ୍ୱାମୀ' ପ୍ରବନ୍ଧ, ବିଶ୍ୱନାଥ କରଙ୍କ ସମ୍ପାଦିତ 'ଉତ୍କଳ ସାହିତ୍ୟ' ପତ୍ରିକାର ୬ଷ୍ଠ ଭାଗ/୪ର୍ଥ ସଂଖ୍ୟାରେ ପ୍ରକାଶ ପାଇଥିଲା । ଉକ୍ତ ପ୍ରବନ୍ଧରେ ଚନ୍ଦ୍ରମୋହନ ଶ୍ରୀମଦ୍ ଭାଗବତ ଗୀତାର ଟୀକାକାର ଶ୍ରୀଧର ସ୍ୱାମୀଙ୍କୁ ରେମୁଣା ସନ୍ନିକଟବର୍ତ୍ତୀ

ମରେଇ ଗ୍ରାମବାସୀ ବୋଲି କହିଛନ୍ତି । ଯେଉଁଥିପାଇଁ ଫକୀରମୋହନ ତା ୧୬।୮।୧୯୦୨ ମସିହାରେ କଟକରୁ ଏକ ପତ୍ରରେ ଲେଖିଥିଲେ, "ପ୍ରିୟତମ ଚନ୍ଦ୍ରମୋହନ ବାବୁ! ତୁମ୍ଭର ଲେଖା ପାଠକରିବା ଦିନଠାରୁ ଚିନ୍ତାକରି କରି ମୁଁ ଅସ୍ଥିର ହୋଇ ପଡ଼ିଲିଣି । ଶ୍ରୀଧର ସ୍ୱାମୀ ରେମୁଣାବାସୀ ଥିଲେ ବିଶ୍ୱାସଯୋଗ୍ୟ ପ୍ରମାଣ କାହିଁ ?.... ତୁମ୍ଭେ ଏ ସମ୍ବନ୍ଧେ ଯାହା କିଛି ଜାଣ ତାକୁ ବିସ୍ତାରିତ କରି ମୋତେ ଲେଖ । ମୋଠାରେ ଯଦି କିଛିମାତ୍ର ପ୍ରତ୍ୟୟ ଜନମେ ରେମୁଣା ଯିବି । ସେଠାରେ ଯଦି ଦୁଇଚାରିମାସ ରହିବାକୁ ହୁଏ ରହିବି, ବିଶେଷ ଅନୁସନ୍ଧାନ କରିବି । ଘଟଣା ସତ୍ୟ ହେଲେ ତାହାଙ୍କ ହସ୍ତାକ୍ଷର ମିଳିପାରେ । ମୋହର ଇଚ୍ଛା, ତାହାଙ୍କର ଖ୍ୟାତିଜନକ କିଛି କାର୍ଯ୍ୟ କରାଇବି । କେନ୍ଦୁବିଲ୍ୱ ପରି ସେଠାରେ ଯେମନ୍ତ ଗୋଟିଏ ମେଳା ହୁଏ ସେଥିସକାଶ ପ୍ରତ୍ୟେକ ଉତ୍କଳପୁତ୍ରର ଯତ୍ନ କରିବା ଉଚିତ୍ । ...... ମୋହିନୀ କଲିକତାରେ Duff College ରେ ପଢୁଅଛି, କି ସକାଶେ ସାହିତ୍ୟ ପ୍ରତି ସଂଖ୍ୟାରେ ତୁମ୍ଭର ଲେଖା ଦେଖେଁ ନାହିଁ ? ଉଭୟଙ୍କର ଜବାବ ଦିହି କାର୍ଯ୍ୟ କରୁଅଛ ।" (୧)

ତୁମ୍ଭର ଫକୀରମୋହନ ।

ଠିକ୍ ଆଠଦିନ ବାଦେ ତା ୨୪।୮।୧୯୦୨ ମସିହାରେ ଫକୀରମୋହନ ପୂର୍ବୋକ୍ତ ବିଷୟ ନେଇ ଅନ୍ୟ ଏକ ପତ୍ର ରମ୍ଭା ରୁ ମଧ୍ୟ ଲେଖିଥିଲେ, "ପ୍ରିୟତମ ଚନ୍ଦ୍ରମୋହନ, ତୁମ୍ଭେ ଶ୍ରୀଧର ଏତେ ବଡ଼ କଥାଟା ଜାଣି ଦୁଇ ଚାରିଟା ଧାଡ଼ି ଲେଖି କିପରି ତୁନି ହୋଇ ବସିଅଛ । ମୁଁ ଦିବାରାତ୍ର ଏହିକଥା ଚିନ୍ତା କରୁଅଛି । ତୁମ୍ଭେ ମୋହର ପୂର୍ବ ପତ୍ରର ଉତ୍ତର ଦେଇଅଛ କି ନାହିଁ କହିପାରୁନାହିଁ । ଉତ୍ତର ପାଇଲେ ମୋହର ବକ୍ତବ୍ୟ ବିଷୟ ଲେଖିବି । ମୁଁ ୯ଦିନ ହେଲା ରମ୍ଭାରେ ଅଛି । ଆଉ ୩-୪ ଦିନ ବାଦ କଟକ ଯିବି ।" (୨)

ଇତି

ଫକୀର ମୋହନ ସେନାପତି

ପୁନଶ୍ଚ କଟକ ଚାନ୍ଦିନୀଚୌକରୁ ଫକୀରମୋହନ ତା ୨୬।୯।୧୯୦୨ ମସିହାରେ ଏକ ପତ୍ରରେ ଲେଖିଥିଲେ "ଚନ୍ଦ୍ରମୋହନ, ତୁମ୍ଭେ ନିଶ୍ଚୟ ଜାଣିବ ଶ୍ରୀଧର ସ୍ୱାମୀ ବିଷୟ ମୋହର ଦିବାରାତ୍ର ଚିନ୍ତାର କାରଣ ହୋଇଅଛି । ମୋ ଜୀବନର ଅବଶିଷ୍ଟ କାଳ ସାଧ୍ୟାନୁସାରେ ଅର୍ଥ ଏହି ବିଷୟରେ ବ୍ୟୟ କରିବାକୁ ଇଚ୍ଛା କରେଁ । ତୁମ୍ଭେ ବି ମୋ ପତ୍ର ଉତ୍ତର ଦେବନାହିଁ । ସାବଧାନ ହୁଅ, ତୁମ୍ଭଙ୍କୁ ୭ଦିନ ମାତ୍ର ମିଆଦ ଦେଲି ।

ଏହି ମିଆଦ ମଧ୍ୟରେ ମୋ ପତ୍ରର ଉତ୍ତର ନପାଇଲେ ତୁମ୍ଭ ବସାରେ ପହୁଞ୍ଚିବି । ତୁମ୍ଭ ଇଚ୍ଛା ପୂର୍ବକ ଯଦି ବିପଦରେ ପଡ଼େ ମୁଁ ନାଚାର ।" (ଗ)

ଫକୀରମୋହନ ଚନ୍ଦ୍ରମୋହନଙ୍କ ଲେଖାରୁ ଫକୀରମୋହନ ସେନାପତି ଶ୍ରୀଧର ସ୍ୱାମୀ ଭଳି ନୂଆ କଥାଟି ଫକୀରମୋହନ ସେନାପତି ଜାଣିଲାପରେ ସେ ବିଷୟରେ ଅଧିକ ଜାଣିବାପାଇଁ କିଭଳି ବ୍ୟଗ୍ର ହୋଇପଡ଼ିଛନ୍ତି, ତାହା ପତ୍ରଗୁଡ଼ିକରୁ ମଧ ସ୍ପଷ୍ଟ ସୂଚନା ମିଳେ ।

୧୯୦୨ରୁ ୧୯୦୪ ମସିହା ପର୍ଯ୍ୟନ୍ତ ଚନ୍ଦ୍ରମୋହନ ବାଲେଶ୍ୱର ଜିଲ୍ଲାର ଡେପୁଟୀ ଇନସ୍‌ପେକ୍ଟର ଅଫ୍ ସ୍କୁଲସ୍ ଭାବରେ ନିଯୁକ୍ତି ପାଇଥାନ୍ତି । ଫକୀରମୋହନ ସେତେବେଳେ ବିଭିନ୍ନ ଇସଷ୍ଟେଟ୍‌ର ଦେଓ୍ୱାନୀ କାର୍ଯ୍ୟ ଶେଷକରି କଟକରେ ଅବସ୍ଥାନ କରିଥାନ୍ତି । ମଝିରେ ମଝିରେ ବାଲେଶ୍ୱର ଗୃହକୁ ଆସୁଥାନ୍ତି କାର୍ଯ୍ୟବଶତଃ । ବାଲେଶ୍ୱରରେ ସାମୟିକ ରହଣି ମଧ୍ୟରେ ତାଙ୍କର ସାହିତ୍ୟିକ ବନ୍ଧୁ, ସହକର୍ମୀ, ପଡ଼ୋଶୀ ତଥା ଆତ୍ମୀୟ ସୋଦରମାନଙ୍କୁ ଭେଟୁଥିଲେ । ଏମାନଙ୍କ ମଧରେ ଚନ୍ଦ୍ରମୋହନ ମହାରଣା, ପୋଡ଼ଶୀ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ, ସୁନହଟର ଜମିଦାର ରାଧା ଚରଣ ଦାସ (ଫକବାବୁ), ବାଲେଶ୍ୱର ରାଜା ବୈକୁଣ୍ଠନାଥ ଦେ, ଜମିଦାର ଭଗବାନ ଚନ୍ଦ୍ର ଦାସ, ଫକୀରମୋହନଙ୍କର ଧରମପୁଅ କାବ୍ୟରନ୍ ଅସରଫ୍ ଅଲ୍ଲି ଖାଁ ଥିଲେ ଅନ୍ୟତମ । ସାକ୍ଷାତ୍ ବେଳେ କଥା ପ୍ରସଙ୍ଗରେ ଓଡ଼ିଆ ଭାଷା, ଓଡ଼ିଆ ସାହିତ୍ୟ ତଥା ସହରର ଜଣାଶୁଣା ଲୋକମାନଙ୍କର ଭଲମନ୍ଦ କଥା ପଚାରି ବୁଝୁଥିଲେ ।

ଫକୀରମୋହନଙ୍କ ସହିତ ଚନ୍ଦ୍ରମୋହନଙ୍କର ଆଲୋଚନା ଅବସରରେ ଚନ୍ଦ୍ରମୋହନ ତାଙ୍କୁ ଘୋଡ଼ାଟିଏ କିଣିବାପାଇଁ ସନ୍ଧାନ ବୁଝିବାକୁ କହିଥିଲେ । କାରଣ ଚନ୍ଦ୍ରମୋହନ ମହାରଣା ଡେପୁଟୀ ଇନ୍‌ସପେକ୍ଟର ଥିବା ଦୃଷ୍ଟରୁ ଯାତାୟାତର ଅସୁବିଧାବେଳେ ଘୋଡ଼ା ସାହାଯ୍ୟରେ ଦୂର ସ୍କୁଲ ପରିଦର୍ଶନ କରିବା ସହଜ ସାଧ ଥିଲା । ୧୮୯୦ରେ ସେ ରେଭେନ୍‌ସା କଲେଜରୁ ଏକମାତ୍ର ଛାତ୍ର ଭାବରେ ପ୍ରଥମ ଶ୍ରେଣୀରେ ବି.ଏ. ପାଶ୍ କରି ଆଇ,ସି,ଏସ୍, ପରୀକ୍ଷାକୁ ପ୍ରସ୍ତୁତି ଅବସରରେ ଘୋଡ଼ା ଚଢ଼ା ଜାଣିବା ଉକ୍ତ ଚାକିରୀ ପାଇଁ ନିହାତି ଅପରିହାର୍ଯ୍ୟ ଥିବାରୁ ଘୋଡ଼ାଚଢ଼ି ଶିଖିବା ଅଭ୍ୟାସ କରିଥିଲେ । ପରେ କଟକ ଟ୍ରେନିଂ ସ୍କୁଲର ଆଡ଼ିସନାଲ ଟିଚର ଥିବାବେଳେ ତାଳଚେର କୋଠିର ଯୁବରାଜ କିଶୋରଚନ୍ଦ୍ର ବୀରବର ହରିଚନ୍ଦନଙ୍କ ଗୃହଶିକ୍ଷକ

ଭାବରେ (୧୮୯୭-୯୮) ବର୍ଷକ ପାଇଁ ନିଯୁକ୍ତି ପାଇ ତାଙ୍କୁ ଉଭୟ ପାଠପଢ଼ା ସହିତ ଘୋଡ଼ାଚଢ଼ା ଶିକ୍ଷା ଦେଇଥିଲେ । ଯା' ଫଳରେ ଫକୀରମୋହନ ଚନ୍ଦ୍ରମୋହନଙ୍କ କଥା ମନେ ରଖି ପରେ ଏକ ଘୋଡ଼ାର ସନ୍ଧାନ ବୁଝିବାପାଇଁ ତାଙ୍କୁ ଇଂରାଜୀରେ ଏକ ବ୍ୟକ୍ତିଗତ ପତ୍ରରେ ଲେଖିଥିଲେ-

My Dear Chandramo,

You may settle about your horse with this groom.

yours

Phakir Mohan Senapati

ପୁନଶ୍ଚ ଲେଖିଛନ୍ତ-

Will you please see me after your school time, (୪)

ଉପରୋକ୍ତ ପତ୍ରଗୁଡ଼ିକୁ ଅନୁଧ୍ୟାନ କଲେ ସ୍ପଷ୍ଟ ହୁଏ ଯେ ଉଭୟଙ୍କ ବ୍ୟକ୍ତିଗତ ସମ୍ପର୍କ ଖୁବ୍ ସୌହାର୍ଦ୍ଦ୍ୟ ପୂର୍ଣ୍ଣ ଥିଲା । ଯେକୌଣସି ବିଷୟ ନେଇ ସେମାନେ ପରସ୍ପର ଅନ୍ତରଖୋଲା ଭାବ ବିନିମୟ ହୋଇ ପାରୁଥିଲେ । ବନ୍ଧୁତାରେ ପରସ୍ପର ପ୍ରତି ଯେତିକି ଅଭିମାନ ଥିଲା, ସେତିକି ଅନ୍ତରଙ୍ଗ ଆତ୍ମୀୟତା ଘନିଷ୍ଠ ହୋଇ ଉଠୁଥିଲା । ସେଭଳି ସମ୍ପର୍କ କାହିଁ ? ଆଜିର ଶିକ୍ଷିତ ଗୋଷ୍ଠୀ ମଧ୍ୟରେ ଏହାର କାଣିଚାଏ ବି ଅନୁଭବ କରାଯାଏ ନାହିଁ ।

୧୯୧୮ ଜୁନ୍ ୧୪ରେ ଫକୀରମୋହନଙ୍କର ମୃତ୍ୟୁ ସମ୍ବାଦ ଚନ୍ଦ୍ରମୋହନଙ୍କ ହୃଦୟରେ ଦାରୁଣ ଦୁଃଖ ଦେଇଥିଲା । ସେତେବେଳେ ଚନ୍ଦ୍ରମୋହନ ଥାନ୍ତି କଟକ ଟ୍ରେନିଂ ସ୍କୁଲର ପ୍ରଧାନ ଶିକ୍ଷକ । ଶୋକାର୍ତ୍ତ ହୃଦୟରେ ଚନ୍ଦ୍ରମୋହନ ଫକୀରମୋହନଙ୍କ ପ୍ରତି ସମବେଦନା ଜଣାଇ 'ଉତ୍କଳ ସାହିତ୍ୟ' ପତ୍ରିକାରେ "ଫକୀରମୋହନ" ଶୀର୍ଷକ ପ୍ରବନ୍ଧ ରଚନା କରି ତାଙ୍କ ସହିତ ବିଭିନ୍ନ ସମ୍ପର୍କ ପ୍ରସଙ୍ଗରେ ଉଲ୍ଲେଖ କରିଥିଲେ, "ରାଧାନାଥ, ଫକୀରମୋହନ ଓ ରାଜା ବୈକୁଣ୍ଠନାଥ ଦେ ଯେଉଁ ସମୟରେ ଯାଇ ରେମୁଣା ବିଦ୍ୟାଳୟ ସ୍ଥାପନ କଲେ, ସେ ସମୟ ଓ ଏ ସମୟରେ ନାନା ବିଷୟରେ ପ୍ରଭେଦ ଲକ୍ଷିତ ହୁଏ । ତେତେବେଳେ ଏହି ତିନିଜଣଙ୍କର ଜୀବନରେ ଆଦ୍ୟ ଯୌବନର ଉତ୍ସାହର ପୂର୍ଣ୍ଣିମା ଜୁଆର । ସେହି ଉତ୍ସାହ ନାନା ଉଦ୍ୟମର ଜନକ । x x x x x x । ଯାବତୀୟ ଉନ୍ନତିର ବିଘାତକ ଭେଦ ବୁଦ୍ଧି କୀଟ ବର୍ତ୍ତମାନ ଓଡ଼ିଶାକୁ

କୋରି ପକାଇଅଛି । ତେତେବେଳେ ଏ କୀଟ ଓଡ଼ିଶାରେ ପ୍ରବେଶ କରି ନଥିଲା । ତେତେବେଳେ ମୁଷ୍ଟିମେୟ ଓଡ଼ିଆ ଯୁବକ ଏକ ମନରେ ପୂର୍ଣ୍ଣ ଉତ୍ସାହରେ କାର୍ଯ୍ୟ କ୍ଷେତ୍ରରେ ପ୍ରବେଶ କରିଥିଲେ । ଫକୀରମୋହନଙ୍କ ଜୀବନର ଶେଷାଂଶରେ ମଧ୍ୟ ଉତ୍ସାହର ଅଭାବ ଦୃଷ୍ଟିଗୋଚର ହୋଇନାହିଁ ।" (୫)

ଜୟତୁ ଫକୀର ମୋହନ ।

ସହାୟକ ଦୁଷ୍ପ୍ରାପ୍ୟ ଚିଠିପତ୍ର ଓ ପତ୍ରିକା :

(୧) ଫକୀରମୋହନ ସେନାପତିଙ୍କ ପ୍ରଥମ ଚିଠି କଟକ, ତା ୧୬।୮।୧୯୦୨ ମସିହା ।

(୨) ଫକୀରମୋହନ ସେନାପତିଙ୍କ ଦ୍ୱିତୀୟ ଚିଠି ରମ୍ଭା, ତା ୨୫।୮।୧୯୦୨ ମସିହା ।

(୩) ଫକୀରମୋହନ ସେନାପତିଙ୍କ ତୃତୀୟ ଚିଠି ଚାନ୍ଦିନୀ ଚୌକ (କଟକ) ତା ୨୭।୯।୧୯୦୨ ମସିହା ।

(୪) ଫକୀରମୋହନ ସେନାପତିଙ୍କ ହାତ ଚିଠି (୪ର୍ଥ ପତ୍ର) ବାଲେଶ୍ୱର, ସମ୍ଭବତଃ ୧୯୦୨ ମସିହାର ।

(୫) 'ଫକୀରମୋହନ' ପ୍ରବନ୍ଧ- ଚନ୍ଦ୍ରମୋହନ ମହାରଣା-ଉତ୍କଳ ସାହିତ୍ୟ/ ୨୨ ଭା, ୪ର୍ଥ ସଂ ।



# ଫକୀରମୋହନ ଓ ବ୍ରାହ୍ମଧର୍ମ

ଭୂୟୋ ଅନୁସନ୍ଧାନରୁ ଜଣାଯାଏ ଫକୀରମୋହନଙ୍କ ବ୍ରାହ୍ମଧର୍ମ ସହିତ ସମ୍ପର୍କ ଅତି ନିବିଡ଼ ଥିଲା । ଯଦିଓ ସେ ଜାତିରେ ଥିଲେ ଜଣେ ଖାଣ୍ଟି ଖଣ୍ଡାୟତ ଏବଂ ସନାତନ ଧର୍ମୀ ହିନ୍ଦୁ ତଥାପି ବ୍ରାହ୍ମଧର୍ମ ପ୍ରତି ତାଙ୍କର ଆକର୍ଷଣ ବରାବର ଥିଲା । ହିନ୍ଦୁଧର୍ମରେ ପ୍ରତିମାପୂଜା ବା ପୁତ୍ତଳିକା ପୂଜାର ଗୁରୁତ୍ୱ ଆରୋପ କରାଗଲାବେଳେ, ବ୍ରାହ୍ମଧର୍ମରେ ଏକେଶ୍ୱରବାଦ ବା ସର୍ବଧର୍ମ ସମନ୍ୱୟ ଥିଲା ମୂଳ ଲକ୍ଷ୍ୟ । ହିନ୍ଦୁଧର୍ମରେ ଘଟ ବା ପ୍ରତିମା/ମୂର୍ତ୍ତି ଦେହରେ ପ୍ରାଣ ପ୍ରତିଷ୍ଠାକରି ମନ୍ତ୍ରଶକ୍ତି ଦ୍ୱାରା  ଭକ୍ତିପୂତ ପୂଜାର୍ଚ୍ଚନା ବେଳେ ବ୍ରାହ୍ମଧର୍ମରେ ଆତ୍ମା ମଧ୍ୟରେ ପରମାତ୍ମାଙ୍କୁ ପ୍ରତିଷ୍ଠାକରି ବ୍ରହ୍ମଜ୍ଞାନ ବ୍ରହ୍ମଧ୍ୟାନ, ଓ ବ୍ରହ୍ମଭଜନ (ବ୍ରହ୍ମାନନ୍ଦ ରସ ପାନ) ଦ୍ୱାରା ଭଗବାନଙ୍କର ଭକ୍ତିପୂତ ଅର୍ଚ୍ଚନା ବା ଆରାଧନା ହୁଏ ।

ସ୍ୱତଃ ମନକୁ ଏଭଳି ପ୍ରଶ୍ନ ଆସେ ବାରମ୍ବାର । ଫକୀରମୋହନ କ'ଣ ବ୍ରାହ୍ମଥିଲେ ? ସେ କ'ଣ ବ୍ରାହ୍ମଧର୍ମରେ ଦୀକ୍ଷିତ ହୋଇଥିଲେ ? ଯଦି ଦୀକ୍ଷିତ ହୋଇଥିଲେ ତାଙ୍କର ଦୀକ୍ଷା ଗୁରୁ କିଏ ଥିଲେ  ? ତାଙ୍କ ଜୀବନ ଚରିତରୁ ଏକଥା ସ୍ପଷ୍ଟ ହୁଏଯେ ସେ ବ୍ରାହ୍ମଧର୍ମ ଅବଲମ୍ବନ କରିଥିଲେ । ମାତ୍ର ଏହି ଧର୍ମରେ ଦୀକ୍ଷିତ ହେବା ବା ତାଙ୍କର ଦୀକ୍ଷାଗୁରୁ ବିଷୟରେ କିଛି ସୂଚନା ଦେଇ ନାହାନ୍ତି । ଏକଥା ସତ୍ୟଯେ ତାଙ୍କ ସମଗ୍ର ଜୀବନଧାରାକୁ ଅନୁଧ୍ୟାନ କଲେ ଜଣାଯାଏ, ସେ କାୟମନୋବାକ୍ୟରେ, ଚିନ୍ତା ଚେତନାରେ ବ୍ରାହ୍ମ ଥିଲେ, ଯାହା ତାଙ୍କ ଜୀବନଧାରାରେ ବହୁଭାବରେ ପ୍ରତିଫଳିତ ।

ବ୍ରାହ୍ମଧର୍ମର ଆଦିଭୂମି ହେଉଛି ବଂଗଦେଶ । ଇଂରେଜ ମାନଙ୍କ ଭାରତ ଭୂମିକୁ ଆଗମନ ଫଳରେ ଭାରତୀୟ ପୁରାଣ ଶାସ୍ତ୍ର ଜ୍ଞାନକୁ ସେମାନେ ତାଚ୍ଛଲ୍ୟକରି ଭାରତମାଟିରେ ଖ୍ରୀଷ୍ଟଧର୍ମର ପ୍ରଚାର ଓ ପ୍ରସାର ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ ।

ଏହି ପାଶ୍ଚାତ୍ୟ ଖ୍ରୀଷ୍ଟଧର୍ମୀ ମାନଙ୍କର ହିନ୍ଦୁପୂଜିତ ଗୋମାତାର ମାଂସ ଭକ୍ଷଣ, ମଦ୍ୟପାନ ଓ ବେଶ୍ୟାସକ୍ତି ବା ଚରିତ୍ର ଭ୍ରଷ୍ଟତା ପ୍ରତି ବିଚାର ନଥିଲା । ଫଳରେ ଭାରତବର୍ଷର ରକ୍ଷଣଶୀଳ ହିନ୍ଦୁମାନଙ୍କର ଖ୍ରୀଷ୍ଟ ସମ୍ପ୍ରଦାୟଙ୍କ ପ୍ରତି ଘୃଣାଭାବ ଥିଲା । ସେତେବେଳେ ଭାରତରୁ ଯେଉଁମାନେ ଜ୍ଞାନବିଜ୍ଞାନ ଅଧ୍ୟୟନ ବା ପରିଭ୍ରମଣ ପାଇଁ ବିଲାତ ଭୂଇଁକୁ ଯାଉଥିଲେ, ସେମାନେ ଜନ୍ମମାଟିକୁ ଫେରିବାପରେ ସେମାନଙ୍କୁ ବିଧର୍ମୀ ବା ଧର୍ମଛଡ଼ା ବୋଲି ହିନ୍ଦୁ ରକ୍ଷଣଶୀଳ ବ୍ରାହ୍ମଣମାନେ ଅଭିହିତ କରୁଥିଲେ । ଫଳରେ ପାଶ୍ଚାତ୍ୟ ଦେଶ ଫେରନ୍ତା ଅନେକ ଜ୍ଞାନୀ ଗୁଣୀ ଭାରତୀୟ ହିନ୍ଦୁଧର୍ମରେ ଭରି ରହିଥିବା ରକ୍ଷଣଶୀଳ ମନୋଭାବ, କୁସଂସ୍କାର, ଅନ୍ଧବିଶ୍ୱାସ ବିରୋଧରେ ସ୍ୱରଉତ୍ତୋଳନ କରିଥିଲେ । ବାଲ୍ୟବିବାହ, ବାଲ୍ୟବିଧବା, ସତୀଦାହ ଭଳି ସାମାଜିକ ପ୍ରଥାର କୁପରିଣତି ଯେ କେତେ ଭୟାବହ ହୋଇପାରେ, ତାହା ନିଜ ପାରିବାରିକ ଜୀବନରେ ଅନୁଭବ କରିଥିଲେ ରାଜା ରାମମୋହନ ରାୟ । ଫଳରେ ହିନ୍ଦୁଧର୍ମକୁ ତ୍ୟାଗକରି ଉଚ୍ଚ ମୂଲ୍ୟବୋଧ ଓ ଚରିତ୍ରନିଷ୍ଠ ଭାବାଦର୍ଶରେ ବିଭୁ ଆରାଧନାର ନୂତନ ପନ୍ଥା ପ୍ରତିଷ୍ଠା କଲେ ବ୍ରାହ୍ମଧର୍ମରେ । ପରବର୍ତ୍ତୀ ସମୟରେ ତାଙ୍କ ସହିତ ସାମିଲ୍ ହୋଇଥିଲେ ମହର୍ଷି ଦେବେନ୍ଦ୍ରନାଥ ଠାକୁର ଏବଂ ମହାତ୍ମା କେବଶବ ଚନ୍ଦ୍ର ସେନ୍ । ଏହି ତ୍ରିବିଧ ପ୍ରତିଭାତ୍ରୟୀଙ୍କ ବିଷୟରେ ବିପିନ୍ ଚନ୍ଦ୍ର ପାଲ୍ ମନ୍ତବ୍ୟ ଦେଇ କହିଛନ୍ତି- "ରାଜା ରାମ ମୋହନ ବ୍ରାହ୍ମଧର୍ମ ମନ୍ଦିରର ମୂଳପତ୍ତନ, ଦେବେନ୍ଦ୍ରନାଥ ଓ ଅକ୍ଷୟଚନ୍ଦ୍ର ଏହାର ଗାନ୍ଥୁନୀ ଏବଂ କେଶବଚନ୍ଦ୍ରଙ୍କର ବିରାଟ ପ୍ରତିଭା ସେହିଧର୍ମମନ୍ଦିରର ସମସ୍ତ କାରୁକାର୍ଯ୍ୟ ।" (Keshab as seen by his apponents by G.C. Banaryi - p-32, ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦). ଡ. ନଟବର ସାମନ୍ତରାୟ - ପୃ-୩୧) ରାଜା ରାମମୋହନ ରାୟ ଏକେଶ୍ୱରବାଦ ପ୍ରତିଷ୍ଠାପାଇଁ ଯେପରି ଉଦ୍ୟମ କରିଥିଲେ, ଦେବେନ୍ଦ୍ର ନାଥ ବୈଦିକ ଆର୍ଯ୍ୟଋଷି ମାନଙ୍କ ଭାବଧାରାରେ ବ୍ରାହ୍ମଧର୍ମ ଗ୍ରହଣ ପ୍ରଣାଳୀ, ବ୍ରାହ୍ମଧର୍ମ ବୀଜ ନିରୂପଣ, ଉପାସନା ପଦ୍ଧତି, ବ୍ରାହ୍ମ ସଂଗୀତ ପ୍ରସାର, ବ୍ରାହ୍ମ ସମାଜ ପ୍ରତିଷ୍ଠା, ବ୍ରାହ୍ମଧର୍ମଗ୍ରନ୍ଥ ପ୍ରଣୟନ ଦ୍ୱାରା ଏହାକୁ ଏକ ବିଶିଷ୍ଟ ଅନୁଷ୍ଠାନ ରୂପେ ଗଢ଼ିତୋଳିଥିଲେ । ମାତ୍ର କେଶବ ଚନ୍ଦ୍ର ଉଭୟ ଖ୍ରୀଷ୍ଟଧର୍ମ ଓ ବ୍ରାହ୍ମଧର୍ମ ମଧ୍ୟରେ ଏକ ସମନ୍ୱୟ ପ୍ରତିଷ୍ଠା କରିଥିଲେ । ଏଥିପାଇଁ ସେ ଏକ ସାର୍ବଜନୀନ ଆଭିମୁଖ୍ୟ ନେଇ 'ଭାରତ ସଂସ୍କାର ସଭା' (ତା ୨।୧୧।୧୮୭୦) ବା "Indian Reform Association" ମଧ୍ୟ ଗଠନ କରିଥିଲେ । ୧୮୭୦ ମସିହାପରେ ଯେତେବେଳେ

ବଙ୍ଗଳାରେ ବ୍ରାହ୍ମଧର୍ମ କେଶବଚନ୍ଦ୍ର ସେନ୍‌ଙ୍କ ଦ୍ୱାରା ସଂସ୍କାରମୁଖୀ ହୋଇ ବିଭିନ୍ନ ବାଦବିବାଦ ମଧ୍ୟରେ ଗତି କରୁଥିଲା, ସେତେବେଳେ ଓଡ଼ିଶାରେ ବ୍ରାହ୍ମଧର୍ମର ପ୍ରାଥମିକ ପ୍ରଚାର ଉଦ୍ୟମ ଆରମ୍ଭ ହୋଇଥିଲା ।

ବାଲେଶ୍ୱରରେ ବ୍ରାହ୍ମଧର୍ମର ଆଦି ପ୍ରଚାରକ ଈଶାନ୍‌ଚନ୍ଦ୍ର ବସୁ ୧୮୬୫ ଖ୍ରୀଷ୍ଟାବ୍ଦରେ ଏଠାକୁ ଆସି ବ୍ରାହ୍ମଧର୍ମ ପ୍ରଚାର ଆରମ୍ଭ କରିଥିଲେ । ଫକୀରମୋହନ ଲେଖିଛନ୍ତି, "ଏହି ସମୟରେ କଲିକତାରୁ ଜଣେ ବ୍ରାହ୍ମଧର୍ମ ପ୍ରଚାରକ ବାଲେଶ୍ୱରକୁ ଆସିଲେ-ନାମ ଈଶାନ୍ ଚନ୍ଦ୍ର ବସୁ । ତାଙ୍କ ସହିତ ସାକ୍ଷାତ୍ ହେଲା । ତାଙ୍କ ସହିତ ପ୍ରତିଦିନ ସନ୍ଧ୍ୟା ସମୟରେ ଧର୍ମ ସମ୍ବନ୍ଧରେ କଥୋପକଥନ ହୁଏ ।" (ଆତ୍ମଚରିତ - ଫ. ଗ୍ର. ୨ୟଖଣ୍ଡ (୨୦୦୨) ଗ୍ରନ୍ଥମନ୍ଦିର - ପୃ - ୮୬) ଏହାଙ୍କ ପରେ ବାଲେଶ୍ୱର ନିମକ ମାହାଲର ନବନିଯୁକ୍ତ କିରାଣୀ ପ୍ରସନ୍ନ କୁମାର ଚାଟାର୍ଯ୍ୟା ୧୮୬୬ ମସିହାରେ ପ୍ରତି ରବିବାର ରାତ୍ରୀରେ ଝାଡ଼େଶ୍ୱର ମନ୍ଦିର ପଶ୍ଚାତ୍ ଭାଗରେ ଥିବା ବସାରେ ବ୍ରହ୍ମୋପାସନା କରୁଥିଲେ । ତା'ପରେ ବାଲେଶ୍ୱର ମୋତିଗଞ୍ଜ ବଜାରର ପଶ୍ଚିମ ପାର୍ଶ୍ୱସ୍ଥ ସୁଏଲପୁର ଗ୍ରାମରେ ଥିବା ମୟୂରଭଞ୍ଜ ମହାରାଜାଙ୍କର ରାଜାକୋଠାରେ ସମ୍ଭବତଃ ୧୮୬୬-୬୮ ମସିହା ଗ୍ରୀଷ୍ମକାଳରୁ ପ୍ରକାଶ୍ୟରେ ବ୍ରାହ୍ମୋପାସନା ହୋଇଥିଲା । ଏଥିରେ ବାଲେଶ୍ୱରର ତତ୍‌କାଳୀନ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ମଧ୍ୟରୁ ଫକୀରମୋହନ, ଦାମୋଦର ପ୍ରସାଦ ଦାସ, ଗୋବିନ୍ଦ ପ୍ରସାଦ ଦାସ, ଜୟକୃଷ୍ଣ ଚୌଧୁରୀ, ଭୋଳାନାଥ ସାମନ୍ତରାୟ ଏହି ଉପାସନାରେ ନିୟମିତ ଯୋଗ ଦେଉଥିଲେ । ପରେ ଏହାର ପରିସର ଅତ୍ୟନ୍ତ ବ୍ୟାପକ ହେବା ଫଳରେ ସଂଖ୍ୟାଧିକ ବ୍ୟକ୍ତି ଏହି ଉପାସନାରେ ଯୋଗଦେଇ ପରମ୍ପରାକୁ ବହୁଦିନ ଅବ୍ୟାହତ ରଖିଥିଲେ ।

ବାଲେଶ୍ୱରର ଜମିଦାର ମଦନ ମୋହନ ଦାସଙ୍କ ପୁତ୍ର ଭଗବାନ ଚନ୍ଦ୍ର ଦାସ କଲିକତା ରେ ବ୍ରାହ୍ମଧର୍ମର ପ୍ରବର୍ତ୍ତକ କେଶବଚନ୍ଦ୍ର ସେନ୍‌ଙ୍କ ଠାରୁ ବ୍ରାହ୍ମଧର୍ମରେ ଦୀକ୍ଷିତ ହୋଇଥିଲେ । ଫଳରେ ବଙ୍ଗଳା ଆଷାଢ଼ ୨୯ ଦିନ ୧୮୬୯ ଖ୍ରୀଷ୍ଟାବ୍ଦରେ ସେ ତାଙ୍କର ଦୋକାନବାଡ଼ିର ଏକ କୋଠାଘରେ ଏହି ଉପାସନା ଆରମ୍ଭ କରିଥିଲେ । ଏହାଙ୍କର ଚାରିଜଣ ସହଯୋଗୀ ଥିଲେ । ସେମାନେ ହେଲେ ରମାନାଥ ଦାସ, ଉଦୟ ଚନ୍ଦ୍ର ଦେ, ରାଧାମୋହନ ସେନାପତି ଓ ସୁଦର୍ଶନ ଦାସ । ଏହି ବ୍ରାହ୍ମ ସମାଜର ଯୁବ ସମ୍ପ୍ରଦାୟ କ୍ରମେ ମୟୂରଭଞ୍ଜ ରାଜାଙ୍କ ରାଜାକୋଠାରେ ପ୍ରତି ଶନିବାର ବ୍ରାହ୍ମୋପାସନା

କଲେ । ଫଳରେ ୧୮୭୦ ମସିହା ଆଷାଢ଼ ୨୯ ଦିନକୁ ବର୍ଷପୂର୍ତ୍ତି ଉତ୍ସବ ଭାବରେ ଉଭୟ ବ୍ରାହ୍ମସମାଜର ସଭ୍ୟମାନଙ୍କ ଦ୍ୱାରା ମିଳିତ ଭାବରେ ରାଜାକୋଠାରେ ପାଳନ କରାଯାଇଥିଲା । ସେହି ଦିନକୁ ପ୍ରତିଷ୍ଠା ଦିବସ ଭାବରେ ଆଜି ପର୍ଯ୍ୟନ୍ତ ଏଠାରେ ପାଳନ କରାଯାଉଚି ।

ପରବର୍ତ୍ତୀ କାଳରେ ଭଗବାନ ବାବୁଙ୍କ ପ୍ରତିଷ୍ଠିତ ବ୍ରାହ୍ମସମାଜର ଯୁବଗୋଷ୍ଠୀଙ୍କ ଦ୍ୱାରା ଫକୀରମୋହନ କଲେଜର ପୂର୍ବପାର୍ଶ୍ୱ ରାସ୍ତାକୁ ଲାଗି ଗୁଡ଼ିପୋଖରୀର ଉତ୍ତରପଟ ମଦନ ମୋହନ ଦାସଙ୍କ ଜାଗାକୁ ଦାନସୂତ୍ରରେ ପାଇ ସେଠାରେ ଚାନ୍ଦାଭେଦାରେ ବ୍ରାହ୍ମସମାଜର ଗୃହ ନିର୍ମିତ ହୋଇଥିଲା । ପ୍ରଥମେ ମାଟିଘରେ ଉପାସନା କାର୍ଯ୍ୟ ଚାଲିଥିଲା । ଏଥିରେ ମଧ୍ୟ ଫକୀରମୋହନଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ଥିଲା । ଏ ନେଇ 'ଉତ୍କଳ ଦୀପିକା' ତା ୧୧।୪।୧୯୧୪ ମସିହାରେ ପ୍ରକାଶିତ ଏକ ସମ୍ବାଦରେ ଉଲ୍ଲେଖ ଅଛି, "ବାଲେଶ୍ୱର ବ୍ରାହ୍ମସମାଜର ଉପାସନା ମନ୍ଦିର ସଂସ୍କାର ନିମନ୍ତେ ତହିଁର କୋଷାଧ୍ୟକ୍ଷ ବାବୁ ଫକୀରମୋହନ ସେନାପତିଙ୍କ ଅନୁରୋଧ ମତେ ପ୍ରକାଶ କରୁଅଛି କି ସେ ନିମ୍ନ ଲିଖିତ ସାହାଯ୍ୟ ପାଇଅଛନ୍ତି । ଯଥା - ସ୍ୱର୍ଗୀୟ ମହାରାଜା ବୈକୁଣ୍ଠ ନାଥ ଦେ ଓ ବାବୁ ରମାନାଥ ଦାସ ୧୦୦ ଟଙ୍କା ଲେଖାଏଁ, ମହାରାଜା ପାରଳାଖେମଣ୍ଡି ୫୦ଟଙ୍କା, ବାବୁ ଫକୀରମୋହନ ସେନାପତି ୪୦ଟଙ୍କା, ବାବୁ କାଳିନ୍ଦୀ କମିଲା ଓ ଅନ୍ୟ ଜଣେ ୨୫ ଟଙ୍କା ଲେଖାଏଁ, ବାବୁ ନନ୍ଦକିଶୋର ବଳ ୨୦ ଟଙ୍କା, ବାବୁ ଉଦୟ ନାଥ ଦେ ୧୦ ଟଙ୍କା, ଆଉ ଦୁଇଜଣ ପାଞ୍ଚଟଙ୍କା ଲେଖାଏଁ ଏବଂ ଏକଜଣ ତିନିଟଙ୍କା ।" (ଫ. ଗ୍ର ୨ୟଖଣ୍ଡ - ସଂ - ଡ. କୃଷ୍ଣଚରଣ ବେହେରା ଓ ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ - ୧ମ ସଂ-୨୦୦୨ ମସିହା ପୃ ୨୨୯)

ଫକୀରମୋହନଙ୍କ ପରବର୍ତ୍ତୀ ଗୋବିନ୍ଦ ଚନ୍ଦ୍ର ପଣ୍ଡା (ସିନ୍ଧିଆ), ଧ୍ରୁବଚରଣ କର (ବେଲଦା ଗ୍ରାମ), ବେଳେବେଳେ ଲକ୍ଷ୍ମୀନାରାୟଣ ସାହୁ, ପ୍ରଫୁଲ୍ଲ ପଟ୍ଟନାୟକ ମଧ୍ୟ ବ୍ରହ୍ମୋପାସନାରେ ଯୋଗ ଦେଉଥିଲେ । ରବିବାର ସନ୍ଧ୍ୟାରେ ପୂର୍ବ ପରମ୍ପରା ଅନୁଯାୟୀ ବ୍ରହ୍ମୋପାସନା ହେଉଥିଲା । ବ୍ରାହ୍ମଧର୍ମର ସ୍ରୋତସ୍ୱିନୀ ଧାରା ବଂଗଭୂମିରୁ ଓଡ଼ିଶାକୁ ପ୍ରବାହିତ ହୋଇ ଏହା ଆଦି ବ୍ରାହ୍ମସମାଜ, ସାଧାରଣ ବ୍ରାହ୍ମ ସମାଜ ଓ ନବବିଧାନ ବ୍ରାହ୍ମ ସମାଜ ନାମରେ ତିନୋଟି ଶାଖାରେ ବିଭକ୍ତ ହୋଇଥିଲା । ମହର୍ଷି ଦେବେନ୍ଦ୍ର ନାଥ ଠାକୁରଙ୍କ ଓଡ଼ିଶାର ଜଗତ୍‌ସିଂହପୁର ଜିଲ୍ଲାର ପଣ୍ଡୁଆରେ ବିରାଟ

ଜମିଦାରୀ (ଅଚଳାଚଳ ଭୂ-ସମ୍ପତ୍ତି) ଥିଲା । ଏହି ଜମିଦାରୀ ଖବର ବୁଝିବାପାଇଁ ସେ ପ୍ରାୟ ଜଳପଥରେ ଓଡ଼ିଶା ଆସୁଥିଲେ । ଓଡ଼ିଶାର ଗିରିବନ, ନଦନଦୀ, ଶସ୍ୟ କେଦାର, ପଲ୍ଲୀ କାନନର ପ୍ରାକୃତିକ ଶ୍ରୀଶୋଭା ତାଙ୍କୁ ମୁଗ୍ଧ କରିଥିଲା । ଫଳରେ ତାଙ୍କ ସାରସ୍ୱତ ସୃଷ୍ଟି ସମ୍ପଦରେ ଓଡ଼ିଶା ମାଟିର ବହୁ ଉପାଦାନ ଭରପୂର ହୋଇ ରହିଛି । ମହର୍ଷି ଦେବେନ୍ଦ୍ର ନାଥ ଠାକୁରଙ୍କ ଦ୍ୱାରା ୧୮୬୪ ମସିହାରେ କଟକରେ 'ଆଦି ବ୍ରାହ୍ମ ସମାଜ'ର ଏକ ଶାଖା ପ୍ରତିଷ୍ଠା ହୋଇଥିଲା । ଏହାଙ୍କ ପ୍ରଧାନ ସହଯୋଗୀ ଥିଲେ ବାବୁ ଜଗନ୍‌ମୋହନ ରାୟ, ଗୌରୀଶଙ୍କର ରାୟ, ଜଗନ୍‌ମୋହନ ଲାଲା ଏବଂ ତ୍ରୈଲୋକ୍ୟନାଥ ମୁଖୋପାଧ୍ୟାୟ । ପରବର୍ତ୍ତୀ କାଳରେ କଟକ, କଲେଜର ଦର୍ଶନ ଅଧ୍ୟାପକ ହରନାଥ ଭଟ୍ଟାଚାର୍ଯ୍ୟଙ୍କ ପ୍ରଚେଷ୍ଟାରେ 'ଉତ୍କଳ ବ୍ରାହ୍ମ ସମାଜ' ୧୮୬୯ ଜୁଲାଇ ୧ ତାରିଖରେ ପ୍ରତିଷ୍ଠିତ ହୋଇଥିଲା । କଟକ ଚୌଧୁରୀ ବଜାରସ୍ଥ ଭୂଷଣ ଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ଗୃହରେ ପ୍ରାତଃ କାଳୀନ ଉପାସନା ଏବଂ ଗଂଗାମନ୍ଦିର ବସାରେ ଜଗନ୍‌ମୋହନ ରାୟଙ୍କ ଦ୍ୱାରା ରାତ୍ରୀ ଉପାସନା କରାଯାଉଥିଲା । ଏହି ବ୍ରାହ୍ମୋପାସନା ବେଳେ ସମସ୍ତେ ଏକନିଷ୍ଠ ଚିତ୍ତରେ ବିଭିନ୍ନ ଧର୍ମାଲୋଚନା ଶ୍ରବଣ କରୁଥିଲେ । ୧୮୭୦ ଜାନୁୟାରୀ ୨୩ ତାରିଖରେ ପାଳିତ ବାର୍ଷିକ ଉତ୍ସବରେ ବର୍ଣ୍ଣନା କରାଯାଇଛି, "ଉପାସନା କାଳରେ ଯେ ସମସ୍ତ ଭାବରେ ବକ୍ତୃତାମାନ ପାଠହେଲା ଓ ଈଶ୍ୱରଙ୍କର ଗୁଣଗାନ ହେଲା ସେଥିରେ ଯେ ଧାର୍ମିକ ମାତ୍ରକେ ଆନନ୍ଦିତ ହୋଇଥିବେ ଆମ୍ଭମାନଙ୍କର ଏକାନ୍ତ ବିଶ୍ୱାସ ହେଉଅଛି । କେବଳ କୁସଂସ୍କାରରେ ଆବଦ୍ଧଥିବା ଲୋକଙ୍କୁ ଛାଡ଼ି ଧର୍ମଚର୍ଚ୍ଚାରେ ସମସ୍ତଙ୍କର ଆନନ୍ଦ ଜନ୍ମେ ।" (ଉତ୍କଳ ଦୀପିକା ତା ୨୯।୧।୧୮୬୯) ଅଧ୍ୟାପକ ହରନାଥ ଭଟ୍ଟାଚାର୍ଯ୍ୟଙ୍କ ଉଦ୍ୟମରେ ଉତ୍କଳରେ ବ୍ରାହ୍ମସମାଜର କ୍ରମିକ ଅଗ୍ରଗତି ତଥା ସଭ୍ୟସଂଖ୍ୟାର ଅଭିବୃଦ୍ଧି ଘଟିଥିଲା । ଏହାଙ୍କ ଛାତ୍ରମାନେ ମଧ୍ୟ ଏହି ଧର୍ମରେ ଉଦ୍‌ବୁଦ୍ଧ ହୋଇଥିଲେ । ଏଫ୍.ଏ. କ୍ଲାସ୍‌ର ଛାତ୍ର ମଧୁସୂଦନ ରାଓ, ପ୍ୟାରୀ ମୋହନ ଆଚାର୍ଯ୍ୟଙ୍କ ସହିତ ଏହି ଧର୍ମରେ ଦୀକ୍ଷିତ ହୋଇଥିଲେ ଏବଂ ପରେ ଚତୁର୍ଭୁଜ ପଟ୍ଟନାୟକ ମଧ୍ୟ ଏହି ଧର୍ମ ଗ୍ରହଣ କରିଥିଲେ । ପରେ ବାଗ୍ମୀ ବିଶ୍ୱନାଥ କର ମଧ୍ୟ ଭକ୍ତକବି ମଧୁସୂଦନ ରାଓଙ୍କ ଠାରୁ ବ୍ରାହ୍ମଧର୍ମ ଦୀକ୍ଷା ଗ୍ରହଣ କରିଥିଲେ ।

ପରବର୍ତ୍ତୀ କାଳରେ ବଂଗଳା ପରି ଉତ୍କଳରେ ବ୍ରାହ୍ମସମ୍ପ୍ରଦାୟ ମଧ୍ୟରେ ମତଭେଦ ସୃଷ୍ଟିହେବା ପରିବର୍ତ୍ତେ ପରସ୍ପର ସୌହାର୍ଦ୍ଦ ଓ ଏକାତ୍ମଭାବ ପ୍ରତିଷ୍ଠା ହୋଇଥିଲା ଏବଂ ଉଭୟ ବ୍ରାହ୍ମସମାଜର ଶ୍ରେଷ୍ଠଚିନ୍ତାଧାରା ପ୍ରତିଫଳିତ ହୋଇଥିଲା । ଏଥିପାଇଁ

ଫକୀରମୋହନ, ମଧୁସୂଦନ ଓ ବିଶ୍ୱନାଥ କରଙ୍କ ରଚନାବଳୀରେ ବ୍ରାହ୍ମଧର୍ମର ପ୍ରଭାବ ବହୁଳଭାବରେ ଲକ୍ଷ୍ୟ କରାଯାଏ ।

ଭଗବାନ ଚନ୍ଦ୍ର ଦାସଙ୍କ ଉଦ୍ୟମରେ ବ୍ରାହ୍ମଧର୍ମ ପ୍ରଚାରକ ନନ୍ଦଲାଲ ବନ୍ଦୋପାଧ୍ୟାୟଙ୍କୁ କଲିକତାରୁ ଅଣାଯାଇ ବାଲେଶ୍ୱର ବ୍ରାହ୍ମଧର୍ମ ଆଚାର୍ଯ୍ୟ ଭାବରେ ନିଯୁକ୍ତି ଦିଆଯାଇଥିଲା । ତାଙ୍କ ସହିତ ମୟୂରଭଞ୍ଜ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଙ୍କର ସୁସମ୍ପର୍କ ଥିଲା । ମହାରାଜା ମଧ ବ୍ରାହ୍ମଧର୍ମରେ ଦୀକ୍ଷିତ ହୋଇ ବଂଗଳାର ବ୍ରାହ୍ମଧର୍ମ ପ୍ରବର୍ତ୍ତକ କେଶବ ଚନ୍ଦ୍ର ସେନ୍‌ଙ୍କର ଦ୍ୱିତୀୟା କନ୍ୟା ସୁଚାରୁ ଦେବୀଙ୍କୁ ବ୍ରାହ୍ମମତରେ ବିବାହ କରିଥିଲେ । ନନ୍ଦଲାଲ ମୟୂରଭଞ୍ଜ ରାଜାଙ୍କ ଠାରୁ ବାଲେଶ୍ୱର ସୁଏଲପୁର ଗ୍ରାମରେ ଥିବା 'ରାଜାକୋଠା' ଭୂ-ସମ୍ପତ୍ତିକୁ ବ୍ରାହ୍ମସମାଜ ପାଇଁ ଦାନ ସୂତ୍ରରେ ସନନ୍ଦ ଆଣିଥିଲେ । ଏଥିରେ ଥିବା ପୁରୁଣା କୋଠାକୁ ଭଙ୍ଗା ଯାଇଥିଲା । ଏହି ମହାଶୟ ସମଗ୍ର ଓଡ଼ିଶାର ଗଡ଼ଜାତ ରାଜ୍ୟ ବୁଲି ଧର୍ମ ପ୍ରଚାର କରିବା ସହିତ ମହାରାଜା ଏବଂ ବଦାନ୍ୟ ବ୍ୟକ୍ତି ମାନଙ୍କଠାରୁ ଅର୍ଥ ସଂଗ୍ରହ କରି ଆଜିର ବୃହତ୍ ଉପାସନା ମନ୍ଦିର ପ୍ରତିଷ୍ଠା କରିଥିଲେ । ଏଥିପାଇଁ ବାଲେଶ୍ୱରର ବଦାନ୍ୟ ବ୍ୟକ୍ତିମାନଙ୍କର ମଧ ଆର୍ଥିକ ସହଯୋଗ ଓ ସହାନୁଭୂତି ଥିଲା । ଭକ୍ତ କବି ମଧୁସୂଦନ ରାଓ ବାଲେଶ୍ୱର ଜିଲ୍ଲାସ୍କୁଲର ପ୍ରଧାନ ଶିକ୍ଷକ ଦାୟିତ୍ୱରେ ଦୁଇବର୍ଷ (୧୮୭୩ ରୁ ୭୫) ଏବଂ ଡେପୁଟୀ ଇନ୍‌ସ୍‌ପେକ୍ଟର ଅଫ୍‌ସ୍କୁଲସ୍ ଭାବେ ୧୮୯୩ ମସିହାରେ ଛଅମାସ କାଳ ବାଲେଶ୍ୱରରେ ଅବସ୍ଥାନ କାଳରେ ସୁଏଲପୁରସ୍ଥ ମୟୂରଭଞ୍ଜ ରାଜାକୋଠାରେ ଅନୁଷ୍ଠିତ ବ୍ରାହ୍ମସମାଜର ରବିବାସରୀୟ ବ୍ରହ୍ମୋପାସନାରେ ଯୋଗ ଦେଉଥିଲେ ।

ଫକୀରମୋହନ ହିନ୍ଦୁହେଲେ ମଧ ସବୁଧର୍ମ ପ୍ରତି ତାଙ୍କର ଶ୍ରଦ୍ଧା ଥିଲା । ବାଲ୍ୟକାଳରେ ଭୂଜାଖିଆ ପୀରଙ୍କ ପୂଜାପାଇଁ ଫକୀରବେଶରେ ମାଗଣ କରିବା, ରାଧାନାଥ ରାୟଙ୍କ ସହିତ ମିଶି ଉଭୟେ ଖ୍ରୀଷ୍ଟଧର୍ମ ଗ୍ରହଣ କରିବାର ନିଷ୍ପତ୍ତି ନେବା ଏବଂ ବ୍ରାହ୍ମସମାଜରେ ଉପାସନା ଓ ଧର୍ମାଲୋଚନା କରିବା, ତାଙ୍କ ସର୍ବଧର୍ମ ସମନ୍ୱୟ ଭାବନାର ପ୍ରତୀକ । ତଥାପି ହିନ୍ଦୁ ଦେବଦେବୀ ଓ ପୂଜାର୍ଚ୍ଚନା ବିଷୟରେ ତାଙ୍କ ମନମଧରେ ବିଭିନ୍ନ ଭାବାନ୍ତର ଦେଖାଦେଇଛି । ତାଙ୍କ ବିଶ୍ୱାସରେ ଈଶ୍ୱର ହିଁ ସର୍ବ ଶକ୍ତିମାନ । ସେ ହିଁ ଜଗତ ସୃଷ୍ଟିକର୍ତ୍ତା । ତାଙ୍କୁ ଆରାଧନା କଲେ, ସେହିଁ ଆମ୍ଭଙ୍କୁ ଉଦ୍ଧାର କରିବେ । ତେଣୁ ତାଙ୍କରି ଭାଷାରେ, "ଏସବୁ ଠାକୁର ଠାକୁରାଣୀ କିଏ ?

ପ୍ରତି ଗ୍ରାମରେ ଗ୍ରାମଦେବତା, ମନ୍ଦିର ମାନଙ୍କରେ କେତେ ଦେବତା - ଏତେଗୁଡ଼ାଏ ଦେବତାଙ୍କୁ କିପରି ପୂଜା କରିବି ? ଏମାନେତ ତ୍ରାଣ କରିପାରିବେ ନାହିଁ, ପୂଜା କଲେ ବା କଣ ହେବ ? + + + ବର୍ତ୍ତମାନ ଦେବଦେବୀ ପ୍ରତି ଆଉ ଆସ୍ଥା ନାହିଁ। ମନମଧ୍ୟରେ ଈଶ୍ୱର ଚିନ୍ତା କରୁଥାଏଁ, ମାତ୍ର ଈଶ୍ୱରଙ୍କୁ କି ପ୍ରକାର ପୂଜା କରିବାକୁ ହୁଏ ଜାଣେ ନାହିଁ।" (ଫ. ଗନ୍ଥାବଳୀ - ୨୦୦୨ ପୃ -୮୬)

କବିଙ୍କ ଶାନ୍ତିକାନନରେ ତାଙ୍କ ନିର୍ମିତ ସର୍ବଧର୍ମ ସମନ୍ୱୟ ମନ୍ଦିର ହେଉଛି ଧର୍ମୀୟ ଭାବନାର ପ୍ରତୀକ। ଯେଉଁ ମନ୍ଦିରର ଚତୁଃପାର୍ଶ୍ୱରେ ବିଭିନ୍ନ ଧର୍ମ ପ୍ରବର୍ତ୍ତକଙ୍କ ମୂର୍ତ୍ତି ଓ ସେମାନଙ୍କ ନୀତିବାଣୀ ଖୋଦିତ ହୋଇଛି। ସେମାନେ ହେଲେ ରାଜା ରାମମୋହନ ରାୟ, ଗୁରୁ ନାନକ, ବୁଦ୍ଧ, ଶଙ୍କରାଚାର୍ଯ୍ୟ, ଜଗନ୍ନାଥ ଦାସ, ଚୈତନ୍ୟ ଏବଂ ଯୀଶୁଖ୍ରୀଷ୍ଟ।

୧୮୯୮ ମସିହାରେ ଫକୀରମୋହନ ବାଲେଶ୍ୱର ନେସନାଲ୍ ସୋସାଇଟିର ପ୍ରତିନିଧି ହୋଇ ମାନ୍ଦ୍ରାଜରେ ଅନୁଷ୍ଠିତ ସର୍ବଭାରତୀୟ ଜାତୀୟ କଂଗ୍ରେସରେ ଯୋଗଦାନ କରିଥିଲେ। ସେ ମଧ୍ୟ ବାଲେଶ୍ୱର ବ୍ରାହ୍ମସମାଜର ପ୍ରତିନିଧି ଭାବରେ ମାନ୍ଦ୍ରାଜରେ ଅନୁଷ୍ଠିତ ଏକେଶ୍ୱରବାଦୀ ମହାସଭାକୁ ମନୋନୀତ ହୋଇଥିଲେ। ଫକୀର ମୋହନ ବାରଙ୍ଗରୁ ଟ୍ରେନଧରି ମାନ୍ଦ୍ରାଜ ଯାଇଥିଲେ। ସେ ଲେଖିଛନ୍ତି, "ବାଲେଶ୍ୱର ନେସନାଲ ସୋସାଇଟି ମୋତେ କଂଗ୍ରେସର ଡେଲିଗେଟ୍ ଏବଂ ବାଲେଶ୍ୱର ବ୍ରାହ୍ମସମାଜ ମୋତେ ଏକେଶ୍ୱରବାଦୀଙ୍କ ସଭାର ଡେଲିଗେଟ୍ ପଦରେ ମନୋନୀତ କରି, ମାନ୍ଦ୍ରାଜ ସଭାମାନଙ୍କୁ ପତ୍ର ଲେଖିଥିଲେ।" (ଫ. ଗ୍ରନ୍ଥାବଳୀ -ଦ୍ୱିତୀୟଖଣ୍ଡ (୨୦୦୨ ମସିହା) - ପୃ - ୨୦୪)। ପ୍ରଶ୍ନ ଉଠୁଛି, ଫକୀରମୋହନ ବ୍ରାହ୍ମ ହୋଇନଥିଲେ ବା ବ୍ରାହ୍ମଧର୍ମ ଓ ଉପାସନା ସହିତ ଜଡ଼ିତ ନଥିଲେ ତାଙ୍କୁ ଏକେଶ୍ୱରବାଦୀ ମହାସଭାକୁ ବାଲେଶ୍ୱରର ପ୍ରତିନିଧି ଭାବରେ ମନୋନୀତ କରାଯାଇଥାନ୍ତା କାହିଁକି ? ବା ଏଭଳି ପ୍ରଶ୍ନ ମଧ୍ୟ ଉଠିପାରେ, ଯେହେତୁ ସେ ବାଲେଶ୍ୱର ନେସନାଲ ସୋସାଇଟିର ପ୍ରତିନିଧି ଭାବରେ ସର୍ବ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗ ଦେବାପାଇଁ ମାନ୍ଦ୍ରାଜ ଯାଉଛନ୍ତି, ସେହି ଦୃଷ୍ଟିରୁ ଫକୀରମୋହନଙ୍କର ବ୍ରାହ୍ମଧର୍ମ ପ୍ରତି ଆସ୍ଥା ବା ବିଶ୍ୱାସ ଅତୁଟ ଥିବାରୁ ଏବଂ ବ୍ରାହ୍ମୋପାସନା ଓ ଧର୍ମ ଆଲୋଚନାରେ ଯଥେଷ୍ଟ ଜ୍ଞାନଥିବାରୁ ତଥା ତତ୍‌କାଳୀନ ସମାଜରେ ଫକୀରମୋହନ ଜଣେ ବହୁ ପରିଚିତ ବ୍ୟକ୍ତି ହୋଇଥିବାରୁ, ତାଙ୍କୁ ମଧ୍ୟ

ଏହି ଏକେଶ୍ୱରବାଦୀ ମହାସଭା ପାଇଁ ମନୋନୀତ କରାଯାଇଥିଲା । ଟ୍ରେନ୍‌ରେ ହେଲେବି ସେତେବେଳେ ଡିସେମ୍ବର ମାସ ବଡ଼ଦିନ ଗ୍ରୀଷ୍ମଛୁଟିରେ ମାନ୍ଦ୍ରାଜ ଯିବା କମ୍ କଷ୍ଟଦାୟକ କଥା ନଥିଲା ।

ଫକୀରମୋହନଙ୍କ ସାରସ୍ୱତ ଜୀବନର ପ୍ରେରଣାଦାୟିନୀ ଥିଲେ ତାଙ୍କ ପ୍ରାଣପ୍ରିୟା ଦ୍ୱିତୀୟା ପତ୍ନୀ କୃଷ୍ଣକୁମାରୀ । ଯେ'କି କୋଡ଼ିଏ ବର୍ଷ ବୈବାହିକ ଜୀବନ ଅତିବାହିତ କରି ଗୋଟିଏ ପୁତ୍ର ଏବଂ ଏକମାତ୍ର କନ୍ୟାକୁ ଛାଡ଼ି ୧୮୯୪ ମସିହାରେ ମୃତ୍ୟୁବରଣ କରିଥିଲେ । ପତ୍ନୀଙ୍କ ବିଯୋଗ କବିଙ୍କୁ ବହୁଭାବରେ ଅଘାତ ଦେଇଥିଲା । ତାଙ୍କ ନିଃସଙ୍ଗ ଜୀବନରେ ରଚିତ ବହୁ କବିତାରେ କବି ନିଜପତ୍ନୀଙ୍କ ସ୍ମୃତି ଚିତ୍ରଣ କରିଛନ୍ତି । 'ପୁଷ୍ପମାଳା' ଓ 'ଉପହାର' ପୁସ୍ତକ ଦୁଇଟି ମଧ୍ୟ ସେ ତାଙ୍କର ପ୍ରିୟତମା ପତ୍ନୀଙ୍କୁ ଉତ୍ସର୍ଗ କରିଛନ୍ତି । କବି ତାଙ୍କ ବାସଗୃହ ପଛପାଖ ରାସ୍ତାକୁ ଲାଗି ଉଦ୍ୟାନରେ ପତ୍ନୀଙ୍କ ସ୍ମୃତି ରକ୍ଷା ଉଦେଶ୍ୟରେ ଏକ ସମାଧିସ୍ତମ୍ଭ ନିର୍ମାଣ କରିଥିଲେ । ଏଥିରେ ସଂଯୁକ୍ତ ହୋଇଥିବା ଫଳକରେ କୃଷ୍ଣକୁମାରୀଙ୍କ ନାମ, ଜନ୍ମ ଓ ମୃତ୍ୟୁ ତାରିଖ ସହିତ ଯେଉଁ ସଂଗୀତ ଗାନକରି ସେ ଦେହତ୍ୟାଗ ସେ ଦେହତ୍ୟାଗ କରିଥିଲେ, ତାହା ଥିଲା :

"ହରିବୋଲ, ହରିବୋଲ, ହରିବୋଲ
ହରିହରି ହରିବୋଲ
ଭବସିନ୍ଧୁ ପାରେ ଚଲ
ଜଲେ ହରି ସ୍ଥଲେ ହରି ଚନ୍ଦ୍ରେ ହରି ସୂର୍ଯ୍ୟେ ହରି ଅନଲ ଅନିଲେ ହରି
ହରିମୟ ଏହି ଭୂମଣ୍ଡଳ ।
ପ୍ରଭୋ, ତୁମ୍ଭର ମଙ୍ଗଳମୟୀ ଇଚ୍ଛା ପୂର୍ଣ୍ଣ ହେଉ ।"

କବି ମଧ୍ୟ ପ୍ରତ୍ୟହ ସମାଧି ପୀଠରେ ବସି ଏହି ପ୍ରାର୍ଥନା ଗାନ କରୁଥିଲେ । ଏହା ବଂଗଳାର ଗୀତିକାର କୁଞ୍ଜବିହାରୀ ଦେବଙ୍କ ରଚିତ ଏକ ବ୍ରାହ୍ମସଂଗୀତ 'ମନ ଏକବାର ହରିବଲ' ସଂଗୀତର ଅଂଶ ବିଶେଷ । (ବ୍ରହ୍ମ ସଂଗୀତ ଓ ସଂକୀର୍ତ୍ତନ - ୧୪ଶ ସଂସ୍କରଣ, ୬ ଭାଦ୍ର ୧୩୮ ବଂଗାବ୍ଦ ପୃ -୩୫), ଏହାଛଡ଼ା କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ପ୍ରକାଶିତ 'ଫକୀରମୋହନ ଗ୍ରନ୍ଥାବଳୀ'ର ୨ୟ ସଂସ୍କରଣ (୧୯୬୩)

ପୁସ୍ତକରେ ଉପାସନା କରୁଥିବା ବୃଦ୍ଧ ଫକୀରମୋହନଙ୍କର ଏକ ଫଟୋଚିତ୍ର ମଧ୍ୟ ରହିଛି ।

କବି ବ୍ରାହ୍ମଧର୍ମାବଲମ୍ବୀ ନହୋଇ ଥିଲେ, ଏହି ସଙ୍ଗୀତଟିକୁ ପ୍ରତ୍ୟହ ଉପାସନା କାଳରେ ଗାନକରି ନଥାନ୍ତେ କି ପତ୍ନୀଙ୍କ ସମାଧି ଫଳକରେ ଖୋଦନ କରିନଥାନ୍ତେ । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଉଭୟ ପତି ପତ୍ନୀ ବ୍ରାହ୍ମଧର୍ମରେ ନିଷ୍ଠାପର ବିଶ୍ୱାସୀ ଥିଲେ ।

ଫକୀରମୋହନଙ୍କ ରଚିତ 'ଧୂଳି' କବିତା ପୁସ୍ତକଟି ୧୯୧୨ ମସିହାରେ ମୁକୁର ପ୍ରେସ, କଟକରୁ ପ୍ରକାଶିତ ହୋଇଥିଲା । ଏଥିରେ ପ୍ରକାଶିତ ଷଷ୍ଠକବିତାଟି ହେଉଛି 'କିଏ ମୋ ଈଶ୍ୱର' । ଏଥିରେ ସେ ହିନ୍ଦୁମାନଙ୍କ ଦାରୁ, ପାଷାଣ ଓ ମୃଣ୍ମୟ ମୂର୍ତ୍ତିକୁ ଈଶ୍ୱର ବୋଲି ଅବଜ୍ଞା କରି ବିଶ୍ୱଜଗତର ନିର୍ମାତା, ଜଗତ ଜୀବନର ଗତିଓ ମୁକ୍ତି-ଦାତା ଈଶ୍ୱରଙ୍କୁ ଏବଂ ଏକେଶ୍ୱରବାଦକୁ ସ୍ୱୀକାର କରିଛନ୍ତି । ସେ ଲେଖିଛନ୍ତି :

କୁରାଢ଼ିରେ କାଟୁରିଆ ଦେଲା ଗଛ ହାଣି,
କରତ ବାରସୀ ଧରି ଗଢ଼ିଲା ବିନ୍ଧାଣୀ,
ନାନାରଂଗ ବୋଲି ଦେଲା ଆସି ଚିତ୍ରକର,
ହେବ କି ସେ ମୋ ଆତ୍ମାର ରକ୍ଷକ ଈଶ୍ୱର ?

ପର୍ବତୁ ପାଷାଣ ଖଣ୍ଡେ ଆଣି ପଥୁରିଆ
ନିହାଣ ହାତୁଡ଼ି ମାରି ମୂର୍ତ୍ତି କଲା ଠିଆ,
ମଣ୍ଡାଇଲା ପ୍ରତିମାଟି ଦିଶିଲା ସୁନ୍ଦର,
ମୋ ଆତ୍ମା ଉଦ୍ଧାରକାରୀ ସେହି କି ଈଶ୍ୱର ?

ଚକଟି ଗୋବର ପଙ୍କ ମାଟି ଶିଳ୍ପକର,
ଗଢ଼ିଦେଲା ମୂର୍ତ୍ତିଟିଏ ଦିଶେ ମନୋହର,
ଖେଳନ୍ତୁ ପିଲାଏ ପଛେ ଘେନି ସେ ପିତୁଳୀ
ନ କରିବି ପୂଜା ତାକୁ ମୋ ଈଶ୍ୱର ବୋଲି ।

ମୋ ଈଶ୍ୱର କଲେ ବିଶ୍ୱ ଜଗତ ନିର୍ମାଣ,
ମୋ ଜୀବନ ଗତି ମୁକ୍ତିଦାତା ତାଙ୍କୁ ଜାଣ ।"
(ଧୂଳି - ଫ.ଗ୍ରନ୍ଥାବଳୀ (୨ୟଙ୍ଗ-୧୯୬୩) ପୃ -୫୫୭)

ଏଥିରୁ ତାଙ୍କର ବ୍ରାହ୍ମଧର୍ମ ପ୍ରତି ସମ୍ପୂର୍ଣ୍ଣ ଆସକ୍ତି ଭାବର ସ୍ପଷ୍ଟ ସୂଚନା ମିଳେ ।

ତା'ଛଡ଼ା ବାଲେଶ୍ୱର ବ୍ରାହ୍ମସମାଜର ୧୯୧୪ ମସିହା ରିଜିଷ୍ଟ୍ରିଭୁକ୍ତ ଟ୍ରଷ୍ଟ ଡିଡ୍‌ରେ ଫକୀରମୋହନ ହେଉଛନ୍ତି ପ୍ରଥମ ନମ୍ବର ସଭ୍ୟ । ଏଥିରେ ଥିବା ପଞ୍ଚମ ନମ୍ବରରେ ଉଲ୍ଲେଖ ଅଛି, "ପାଞ୍ଚଜଣ ଟ୍ରଷ୍ଟି ମଧ୍ୟରୁ କେହି ପରଲୋକ ଗମନ କଲେ କିମ୍ବା କାର୍ଯ୍ୟରେ ଶୈଥିଲ୍ୟ କଲେ କିମ୍ବା ବ୍ରାହ୍ମଧର୍ମ ତ୍ୟାଗକଲେ କିମ୍ବା ଅସଦଚରିତ୍ର ହେଲେ ସାଧାରଣ ସଭାର ସଭ୍ୟମାନେ ସଭାଦ୍ୱାରା ତାହାଙ୍କୁ କାର୍ଯ୍ୟଚ୍ୟୁତ କରି ତାହାଙ୍କ ପରିବର୍ତ୍ତେ ଅନ୍ୟଜଣେ ଉପଯୁକ୍ତ ବ୍ରାହ୍ମଙ୍କୁ ଟ୍ରଷ୍ଟି ନିଯୁକ୍ତି କରିବେ ।"

ଏଥିରୁ ଜଣାଯାଏ ଯେ ଫକୀରମୋହନ ପ୍ରକୃତରେ ବ୍ରାହ୍ମଥିଲେ । ବ୍ରାହ୍ମ ହୋଇନଥିଲେ ସେ ପ୍ରଥମ ନମ୍ବର ଟ୍ରଷ୍ଟି କେବେ ହୋଇ ନଥାନ୍ତେ କିମ୍ବା ପୂର୍ବସୂଚିତ ବ୍ରାହ୍ମ ସମାଜର କୋଷାଧ୍ୟକ୍ଷ ଭାବରେ ମଧ୍ୟ ରହିନଥାନ୍ତେ । ତା'ଛଡ଼ା ଉପରୋକ୍ତ ଟ୍ରଷ୍ଟଡିଡ୍‌ର ନିୟମ ଅନୁଯାୟୀ ପ୍ରଥମ ପାଞ୍ଚଜଣ ଟ୍ରଷ୍ଟି ନିଶ୍ଚିତ ଜଣେଜଣେ ଉପଯୁକ୍ତ ବ୍ରାହ୍ମ ହୋଇଥିବେ । ସେ ଦୃଷ୍ଟିରୁ ଫକୀରମୋହନ ଯେ ବ୍ରାହ୍ମ ଥିଲେ, ଏକଥା ନିଃସନ୍ଦେହରେ କୁହାଯାଇପାରେ । ବାଲେଶ୍ୱର ବ୍ରାହ୍ମ ସମାଜର ବର୍ତ୍ତମାନର ସମ୍ପାଦକ ଶୀଯୁକ୍ତ ଅମରେନ୍ଦ୍ର କରଙ୍କ ବିଚାରରେ ଫକୀରମୋହନ ଥିଲେ ବାଲେଶ୍ୱର ବ୍ରାହ୍ମସମାଜର ପ୍ରତିଷ୍ଠାତା ଏବଂ ସେ ଥିଲେ ଆଜୀବନ ନିଷ୍ଠାପର ବ୍ରାହ୍ମ ।"

(ଉକ୍ତ ପ୍ରବନ୍ଧଟି ପ୍ରସ୍ତୁତ କରିବା କ୍ଷେତ୍ରରେ ବାଲେଶ୍ୱର ବ୍ରାହ୍ମସମାଜର ସମ୍ପାଦକ ଶ୍ରୀଯୁକ୍ତ ଅମରେନ୍ଦ୍ର କର ମହାଶୟ କେତେକ ଉପାଦାନ ଯୋଗାଇଥିବାରୁ ତାଙ୍କଠାରେ କୃତଜ୍ଞତା ପ୍ରକାଶ କରୁଛି - ଲେଖକ, ସାକ୍ଷାତ୍ ସମୟ - ତା ୨୧।୬।୦୮ ତାରିଖ)



# "ଫକୀରମୋହନଙ୍କ ମହାଯାତ୍ରା"

"ପୂର୍ବ ପୁରୁଷର ପବିତ୍ର ଶ୍ମଶାନ

ଦେଶର ଜାତିର ଗୌରବ ଗାନ

x x x

ମାନବ ଜୀବନ ହୁଅଇ ସଫଳ

ଏ ମହା ଦୀକ୍ଷା କି ବୁଝିବ ଉତ୍କଳ ।"

ଦେଶପ୍ରାଣ 'ଗୋପବନ୍ଧୁ'

(ଓଡ଼ିଆ ସାହିତ୍ୟରଥୀ ବ୍ୟାସକବି ଫକୀରମୋହନ ସେନାପତିଙ୍କ ଶବଦାହ ଶ୍ମଶାନ ତୀର୍ଥ ବିଷୟରେ ଦୁଇପଦ କହି ଉତ୍କଳର ଗୌରବଗାନ କରିବା ସଙ୍ଗେସଙ୍ଗେ ସେହି ମହାନ ଅମର ଆତ୍ମା ପ୍ରତି ହୃଦୟର ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛି ।)

ଫକୀରମୋହନଙ୍କର ମୃତ୍ୟୁ ୧୯୧୮ ମସିହା ଜୁନ୍ ୧୪ ତାରିଖ । ଆଜକୁ ଅର୍ଦ୍ଧଶତାବ୍ଦୀରୁ ଉର୍ଦ୍ଧ୍ୱକାଳ (୬୨ବର୍ଷ) ହେବ ବ୍ୟାସକବି ସେନାପତି ଉତ୍କଳ ଧରାଧାମରୁ ବିଦାୟ ନେଲେଣି । ତାଙ୍କର ସାରସ୍ୱତ ସାଧନା ତାଙ୍କୁ ଉତ୍କଳବାସୀଙ୍କଠାରେ ଚିର ଅମର କରିଛି । ତାଙ୍କ ସାହିତ୍ୟର ଆଜି ବହୁ ଗବେଷଣାତ୍ମକ ପରୀକ୍ଷା ନିରୀକ୍ଷା ଚାଲିଛି, ଏହା ଖୁବ୍ ସୁଖର ବିଷୟ । ଅନେକ ଆଲୋଚନାତ୍ମକ ଗ୍ରନ୍ଥ, ପ୍ରବନ୍ଧ ଦୃଷ୍ଟିରୁ ଆସୁଛି । ବାସ୍ତବିକ ସ୍ରଷ୍ଟାର ସାଂସାରିକ ଜୀବନ ଅଳୀକ, କ୍ଷଣସ୍ଥାୟୀ ହେଲେ ବି ସାର୍ଥକ ସୃଷ୍ଟି ପ୍ରାଚୁର୍ଯ୍ୟ ଚିରଦିନ ତାଙ୍କୁ ଦେଶବାସୀଙ୍କ ଠାରେ ଅମର କରି ରଖେ । ଏହି ଦୃଷ୍ଟିରୁ ଫକୀରମୋହନ ଉତ୍କଳ ସାରସ୍ୱତ ଉଦ୍ୟାନରେ ଜଣେ ଅମର ପ୍ରତିଭା ।

ସେନାପତିଙ୍କ ସାହିତ୍ୟ ସାଧନା ବିଷୟରେ ବହୁ ଆଲୋଚନା ହୋଇଛି କିନ୍ତୁ ତାଙ୍କ ଶରୀର ଦାହ ହୋଇଥିବା ସ୍ଥାନ ବିଷୟ ଏପର୍ଯ୍ୟନ୍ତ କେହି ପାଠକଙ୍କ ଦୃଷ୍ଟିକୁ ଆଣି ନାହାନ୍ତି । ଭାବୁଛି ଏ ଦିଗରେ କେବେ ପ୍ରାଥମିକ ଉଦ୍ୟମ ହୋଇଥିବ କି ନା ସନ୍ଦେହ । ଏହି ଉଦ୍ୟମ ଯେ କେହି ଉତ୍କଳବାସୀ ଚାହିଁଲେ ବି କରିପାରିଥାନ୍ତେ । ସର୍ବାଗ୍ରେ ବାଲେଶ୍ୱରବାସୀ, ବିଶେଷ କରି କବିଙ୍କ ଜନ୍ମସ୍ଥାନ ମଲ୍ଲିକାଶପୁର ଓ ଆଖପାଖର କେହି ଚେଷ୍ଟା କରିଥିଲେ ହୁଏତ ପୁରୁଣାକାଳିଆ ପ୍ରତ୍ୟକ୍ଷଦର୍ଶୀ ବୁଢ଼ାଙ୍କ ଠାରୁ କିଛି ନିର୍ଭୁଲ ପୁଙ୍ଖାନୁପୁଙ୍ଖ ତଥ୍ୟ ବହୁ ପୂର୍ବରୁ ସଂଗ୍ରହ କରି ପାରିଥାନ୍ତେ । ଯେହେତୁ ଫକୀରମୋହନଙ୍କ ସାହିତ୍ୟର ଗଭୀର ଆଲେଚନା ଅନ୍ୱେଷଣ ଚାଲିଛି ସେଦୃଷ୍ଟିରୁ ତାଙ୍କର ପ୍ରକୃତ ଦାହସ୍ଥାନ ବିଷୟରେ ଜାଣିବା କ'ଣ କୌଣସି ଗବେଷକ, ପ୍ରାବନ୍ଧିକ କି ଉତ୍କଳବାସୀଙ୍କର କର୍ତ୍ତବ୍ୟ ନୁହେଁକି ? ଏ ବିଷୟରେ ସଂପୂର୍ଣ୍ଣ ଅଜ୍ଞ ରହି କୁହୁଡ଼ିରେ ପହଁରିବା ଅପେକ୍ଷା କିଞ୍ଚିତ ଜାଣିବା ବରଂ ଶ୍ରେୟସ୍କର । ପ୍ରକାଶିତ "ଫକୀରମୋହନ ପରିକ୍ରମା"ରେ ବହୁ ପ୍ରତ୍ୟକ୍ଷଦର୍ଶୀ, ଅଭିଜ୍ଞ ବ୍ୟକ୍ତି ଫକୀରମୋହନଙ୍କ ଜୀବନର ଅନେକ କଥା ଆଲୋଚନା କରିଛନ୍ତି ମାତ୍ର କେହି ତାଙ୍କ ଶବ ସତ୍କାର ସ୍ଥାନ ବିଷୟରେ କିଛି କହିନାହାନ୍ତି । ଆଜି ଏହା ସାଂପ୍ରତିକ, ନାବାଗତ ଯୁବମାନସ ପାଇଁ ଏକ ବିରାଟ ପ୍ରଶ୍ନବାଚୀ ହୋଇ ଉଠୁଛି । ଏ ବିଷୟରେ ନିଜେ ମଧ କେତେଥର ବହୁ ପ୍ରଶ୍ନକର୍ତ୍ତାଙ୍କ ଜିଜ୍ଞାସାର ସମ୍ମୁଖୀନ ହୋଇଛି ।

କବିଙ୍କ "ଶାନ୍ତିକାନନ"ସ୍ଥ 'ଫକୀରମୋହନ ସାହିତ୍ୟ ପରିଷଦର' ବାର୍ଷିକ ଉତ୍ସବରେ ଶ୍ରୋତା ଭାବରେ ଯୋଗ ଦେବାର ସୌଭାଗ୍ୟ ପାଇଥିଲି । ସେଠାରେ ଏକଥା ପ୍ରକାଶ୍ୟରେ ପଚାରିବାର ଇଚ୍ଛା ଥିଲେ ବି ପଚାରିବାକୁ ସୁବିଧା ମନେ କରି ନଥିଲି । ପରିଷଦର ଅନ୍ୟାନ୍ୟ ଆଲୋଚନା ଚକ୍ରରେ ଏ ବିଷୟରେ ଆଲୋଚନା କରି ମଧ୍ୟ କୌଣସି ସଠିକ ସୂଚନା ପାଇଲି ନାହିଁ । ତତ୍ପରେ ବ୍ୟକ୍ତିଗତ ଭାବେ ବାଲେଶ୍ୱରସ୍ଥ ଏକାଧିକ କବି, ଲେଖକ ଓ ବୃଦ୍ଧ ବ୍ୟକ୍ତିଙ୍କୁ ସାକ୍ଷାତ୍ କରି ଏ ବିଷୟ ପଚାରି ଭିନ୍ନ ଭିନ୍ନ ଆନୁମାନିକ ଶୁଣାକଥା କିଛି ସଂଗ୍ରହ କଲି । ଏମାନେ କେହି ପ୍ରତ୍ୟକ୍ଷଦର୍ଶୀ କି ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କଠାରୁ ଶୁଣିଥିବାର ପ୍ରମାଣ ଦେଇ ପାରି ନଥିବାରୁ ଏସବୁ କଥା ଉପରେ ସଂପୂର୍ଣ୍ଣ ଆସ୍ଥା ହରାଇଲି । ତା' ଛଡ଼ା ଏ ସମସ୍ତଙ୍କ କଥା ଅନୁଯାୟୀ ଫକୀରମୋହନଙ୍କ ଶବଦାହ ତିନୋଟି ସ୍ଥାନରେ ହୋଇଥିବାର ଶୁଣା କଥାର ସତ୍ୟତା

ମିଳିଲା । ପ୍ରଥମତଃ ଫକୀରମୋହନଙ୍କ ଉଆସ ପଛପଟେ ବଗିଚା ମଧ୍ୟରେ ଥିବା କୃଷ୍ଣାକୁମାରୀଙ୍କ ସମାଧି ନିକଟରେ ତାଙ୍କୁ ଦାହ କରାଯାଇଥିଲା । ଅନ୍ୟ କେହି ମତ ଦିଅନ୍ତି ଶାନ୍ତିକାନନର ଅଳ୍ପ ଦୂରବର୍ତ୍ତୀ ପୂର୍ବ ପାର୍ଶ୍ୱସ୍ଥ ଫକୀରମୋହନଙ୍କ ଜେଜେମାଆ 'କୋଚିଲା ଦେଈ'ଙ୍କର ସମାଧି ନିକଟରେ ତାଙ୍କୁ ଦାହ କରାଯାଇଥିଲା । ଉକ୍ତ ସ୍ଥାନରେ ଥିବା ତୁଳସୀ ଚଉରା ଲଗା ପକ୍‌କା ତୁଠ ପୋଖରୀକୁ କୋଚିଲା ଦେଈଙ୍କ ନାମାନୁସାରେ ବୁଢ଼ି ପୋଖରୀ ବୋଲି ଡକା ଯାଉଥିଲା । ଏବେ ବି କେହିକେହି ପୁରୁଣା ବୃଦ୍ଧ ବ୍ୟକ୍ତି ଏହାର ନାମ ବୁଢ଼ିପୋଖରୀ ବୋଲି ଡକାଯାଉଥିବାର ସେମାନେ ପିଲା ଦିନରୁ ଶୁଣିଛନ୍ତି ଏବଂ ଡାକନ୍ତି ବୋଲି ମତ ଦିଅନ୍ତି । ବର୍ତ୍ତମାନ ଏହି ସ୍ଥାନ ବାଉଁଶ ଓ କଣ୍ଟାବଣରେ ପୂର୍ଣ୍ଣ । ତଥାପି କୋଚିଲା ଦେଈଙ୍କ ସମାଧି, ପକ୍‌କା ତୁଠ, ଏବଂ ତୁଳସୀ ଚଉରା ଅତୀତର ମଳିନ ସ୍ମୃତିଟିକୁ ଅଧା ଜୀର୍ଣ୍ଣ ଅବସ୍ଥାରେ ଧରି ରଖି ପାରିଛି । ତୃତୀୟ ମତଟି ହେଉଛି ମଲ୍ଲିକାଶପୁର ଗ୍ରାମର ଦକ୍ଷିଣ ପାର୍ଶ୍ୱସ୍ଥ 'ଛତୁଆ' ଶ୍ମଶାନ । ଏପରି ମନ୍ତବ୍ୟ ବୋଧେ ଜଣଙ୍କଠୁ ଶୁଣିଥିଲି । ସେ'ବି ଯାହା କହିଲେ ସେ ପୁଣି ଅନ୍ୟ କାହାଠାରୁ ଶୁଣିଥିଲେ । ଯାହାଙ୍କଠୁ ଶୁଣିଥିଲେ ସେହି ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କର ନାମ କି ଠିକଣା ଦେବା ତାଙ୍କ ପକ୍ଷରେ ଅସମ୍ଭବ ଥିଲା । ତେଣୁ ଏହା ଯେ ବିଶ୍ୱାସଯୋଗ୍ୟ ତାର ପ୍ରମାଣ କଣ ଅଛି ? ପରେ ଏଇ ବିବଦମାନ ବିଷୟର ହଠାତ୍ ଦିନେ ଅଚାନକ ସମାଧାନ ହେଲା । ସେ ଦିନଟି ଆମ ପାଇଁ ଖୁବ୍ ଆନନ୍ଦ ଓ ପବିତ୍ର ଦିନ ଥିଲା ।

ଦୁଇଦିନ ପୂର୍ବରୁ କାର୍ଯ୍ୟକ୍ରମ ଅନୁଯାୟୀ ପ୍ରାବନ୍ଧିକ ଗୋଲକ ଚନ୍ଦ୍ର ମହାପାତ୍ର ମୋତେ ଯଥା ସମୟରେ ସାକ୍ଷାତ୍ କଲେ । ସାଙ୍ଗ ହୋଇ ଆମେ ବୁଢ଼ିପୋଖରୀର ବଣ ମଧରେ କୋଚିଲାଦେଈଙ୍କ ସମାଧି ଅନ୍ୱେଷଣାର୍ଥେ ବାହାରିଲୁ । ଯଥା ସ୍ଥାନରେ ପହଞ୍ଚି ଅନେକ ପୁରୁଣା ସ୍ମୃତିସବୁ ଦେଖିଲୁ । ସେ ସ୍ଥାନରୁ ଫେରି ଗୋଲକ ବାବୁଙ୍କ ବାଲେଶ୍ୱର ଜିଲ୍ଲାସ୍କୁଲର ସହାଧ୍ୟାୟୀ ବୃଦ୍ଧ ବୈଦ୍ୟନାଥ ଦାସଙ୍କୁ ସାକ୍ଷାତ୍ କଲୁ । ଦୁଇବନ୍ଧୁ ସମ୍ଭବତଃ ମୃତ୍ୟୁର ପୂର୍ବବର୍ତ୍ତୀ ପ୍ରେମାଲିଙ୍ଗନରେ ଆବଦ୍ଧ ହେଲେ । ମିଁ ଥିଲି ଉଭୟଙ୍କ ମଧ୍ୟରେ ଏକମାତ୍ର ଦ୍ରଷ୍ଟା ହିସାବରେ । ବୈଦ୍ୟନାଥ ଦାସଙ୍କୁ ଫକୀରମୋହନଙ୍କ ଦାହ ବିଷୟରେ ପଚାରିଲୁ । ଶୁଣିସାରି ସେ ବି ଯାହା କହିଲେ ତାହା ଆନୁମାନିକ । ଖୁବ୍ ନିରାଶ ହେଲୁ । ଅନ୍ୟାନ୍ୟ କଥାବାର୍ତ୍ତା ଓ ଆଳାପ ମଧ୍ୟରେ ସେ ହଠାତ୍ କହିଲେ ଅତି ପୁରୁଣା, ପୁରୁଖା ବାଲେଶ୍ୱର ମଲ୍ଲିକାଶପୁର ନିକଟସ୍ଥ ଖପରାପଦା ଗ୍ରାମ ନିବାସୀ

ଶ୍ରୀ ଚିନ୍ତାମଣି ଦାସଙ୍କୁ ଥରେ ସାକ୍ଷାତ୍ କରନ୍ତୁ । ସେ ଏଠାକାର ସବୁଠୁ ବୟୋବୃଦ୍ଧ ବ୍ୟକ୍ତି, ପୁଣି ସ୍ଥାୟୀ ବାସିନ୍ଦା, ଜାଣିଥିବେ ଯଦି ଏ ବିଷୟରେ କିଛି କହିପାରିବେ । ଚିନ୍ତାମଣି ବାବୁଙ୍କ ଜୀବିତ କଥା ଶୁଣି ଗୋଲକ ବାବୁ ହଠାତ୍ କହିପକାଇଲେ, ସେ ଏବେ ବଞ୍ଚିଛନ୍ତି ନା ? ଗୋଲକବାବୁ ଜାଣନ୍ତି ଯେ ଚିନ୍ତାମଣି ବାବୁ ଅନେକ ଦିନରୁ ଧରାଧାମରୁ ବିଦାୟ ନେଲେଣି । ସେ ମୋତେ ଆଶ୍ୱାସନା ବାଣୀ ଶୁଣାଉଥାନ୍ତି, ଯଦି ବୁଢ଼ା ସୁସ୍ଥ ଅବସ୍ଥାରେ ଥାନ୍ତି ଏବଂ କଥାବାର୍ତ୍ତା ଯଦି କରିପାରୁଥିବେ, ତା'ହେଲେ ଆମେ ନିଶ୍ଚୟ ସବୁକଥା ଜାଣି ପାରିବା ଏ ବିଶ୍ୱାସ ଅଛି । ବହୁ ଦିନର ପୁରୁଣା ବୁଢ଼ା କି ନା, ସୁସ୍ଥ ଥିବା ଅସମ୍ଭବ, ପ୍ରାୟ ଶଯ୍ୟାଶାୟୀ ଥିବେ ।

ଚିନ୍ତାମଣି ବାବୁଙ୍କ ଘରେ ପହଞ୍ଚିଲୁ । ଭିତର ଚଉବନ୍ଦୀକୁ ଯିବାର ଅନୁମତି ପାଇ ପରଦା ଉଠାଇ ଦେଖିଲୁ, ବୁଢ଼ା ଭିତର ଘର ପିଣ୍ଡାରେ ବସି ଶାଗ ବାଛୁଛନ୍ତି । ଦେଖି ଆଶ୍ଚର୍ଯ୍ୟ ହେଲୁ ଯେ ବୁଢ଼ାଙ୍କ ଦୃଷ୍ଟିଶକ୍ତି ଭଲ ଅଛି । ବୁଢ଼ାଙ୍କୁ ବର୍ତ୍ତମାନ ୮୨ବର୍ଷ । ଆମକୁ ଦେଖି ବେଶ୍ ଚାଲି ଚାଲି ଆସି ବସାଇବାର ବ୍ୟବସ୍ଥା କଲେ । ମୂଳ ପ୍ରଶ୍ନ ଶୁଣି ସେ ଖୁବ୍ ଖୁସି ହେଲେ ଏବଂ କହିଲେ ଏତେ ଦିନ ଧରି ତାଙ୍କୁ ଏକଥା କେହି ପଚାରି ନଥିଲେ । ପୁଣି ତାଙ୍କୁ ଦିନେ ଯେ ଫକୀରମୋହନଙ୍କ ଏକଥା ପଚରାଯିବ ଏହା ବି ସେ ଭାବି ନଥିଲେ । ଫକୀରମୋହନଙ୍କ ଶବଦାହର ସେ ଥିଲେ ପ୍ରତ୍ୟକ୍ଷଦର୍ଶୀ । ସେ କହିଲେ - "ଫକୀରମୋହନଙ୍କ ମୃତ୍ୟୁ ବେଳକୁ ମୋର ଯୁବକ ଅବସ୍ଥା । ତାଙ୍କ ଉଆସରେ ସେତେବେଳେ ମୋହିନୀ ବାବୁଙ୍କ ସ୍ତ୍ରୀ ହିରଣପ୍ରଭା, ଉଦ୍ୟାନ ମାଳି ଜଗମୋହନ, ଗୁମାସ୍ତା ଶ୍ରୀକଣ୍ଠ ମହାନ୍ତି, ଚାକରାଣୀ କେତକୀ ପ୍ରଭୃତି ରହୁଥିଲେ । ତାଙ୍କ ଶବକୁ ଗ୍ରାମର ଦକ୍ଷିଣ ପାର୍ଶ୍ୱରେ ଥିବା 'ଛତୁଆ' ଶ୍ମଶାନ କୁ ନିଆଯାଇଥିଲା । ଶ୍ମଶାନ ଗୋହିରୀ ମଧ୍ୟରେ ଥିବା ପଦ୍ମପୋଖରୀ ଦକ୍ଷିଣ ଆଡ଼ିର ଜଳାଠାରୁ ଅଳ୍ପ ଉପରକୁ ତାଙ୍କୁ ଦାହ କରାଯାଇଥିଲା । କିଛିବାଟ ଦୂରରେ ମୋ ଗୋସବାପ ରାଜକିଶୋର ଦାସଙ୍କର ଗୋଟିଏ ଛୋଟ ସମାଧି ମଧ୍ୟ ଥିଲା । ତାହା ଏବେ ନଷ୍ଟ ହୋଇଯାଇଛି । ଫକୀରମୋହନଙ୍କ ଶବକୁ ଘରୁ ଏକ ଖଟିଆରେ ଶ୍ମଶାନକୁ ନିଆଗଲା । ଖଟିଆକୁ କାନ୍ଧେଇ ଥିଲେ ତାଙ୍କ ମାଳି ଜଗମୋହନ, ଗୁମାସ୍ତା ଶ୍ରୀକଣ୍ଠ ମହାନ୍ତି, ପଡ଼ୋଶୀ ବଟ ଲେଙ୍କା ଓ ଅନ୍ୟ କେହି ଜଣେ । ମୁଁ ସାଙ୍ଗରେ ଯାଇଥିଲି ଏବଂ ଗଙ୍ଗାଧର ଦାସ (ନାଜରଖାନା ପିଅନ), ପ୍ରଫୁଲ୍ଲ ପଟ୍ଟନାୟକ, କିଶୋରୀ ନନ୍ଦ, ମୁକୁନ୍ଦ ନନ୍ଦ

(ହାତଫୁଲା) ପ୍ରଭୃତି ସାଙ୍ଗରେ ଥିଲେ । ଏମାନଙ୍କ ମଧ୍ୟରୁ କେବଳ ବଟ ଲେଙ୍କାକୁ ଛାଡ଼ିଦେଲେ ବର୍ତ୍ତମାନ କେହି ଜୀବିତ ନାହାନ୍ତି । ପ୍ରାୟ ୨୦/୨୫ ଜଣ ଲୋକ ଶବଦାହ ସ୍ଥାନକୁ ଯାଇଥିଲେ । ଫକୀରମୋହନଙ୍କ ପୁଅ ମୋହିନୀବାବୁ ଉପସ୍ଥିତ ନଥିବାରୁ ପଞ୍ଚମୁଖାଗ୍ନି ଦେବା କଥା ସ୍ଥିରହେଲା । ସର୍ବସମ୍ମତି କ୍ରମେ ତାଙ୍କୁ ପୂର୍ବ ଆଡ଼କୁ ମୁଣ୍ଡକରି ଶୋଇବା ଅବସ୍ଥାରେ ଶଂଖଧ୍ୱନି ସହିତ ଚନ୍ଦନକାଠ ଓ ଘିଅ ପ୍ରଦାନ କରି ପଞ୍ଚ ଅଗ୍ନିରେ ଦାହ କରାଗଲା । ସମସ୍ତଙ୍କ ଆଖିରୁ ଅଶ୍ରୁ ବହି ଯାଇଥିଲା । ଆମେ ଶବଦାହ କରି ଫେରିଲା ପରେ ଦେଖିଲୁ ମୋହିନୀବାବୁ କଟକରୁ ଆସିଛନ୍ତି ।" (୧) ଏହି କଥା କହି ସାରିଲା ବେଳକୁ ତାଙ୍କ ଆଖିରୁ ଦୁଇଟୋପା ଲୁହଗଡ଼ି ଯାଇଥିଲା । ତାଙ୍କ ଶବଦାହ ସ୍ଥାନଟି ଦେଖିବୁ ବୋଲି ବିଶେଷ ଆଗ୍ରହ ପ୍ରକାଶ କରିବାରୁ ସେ ସଙ୍ଗେସଙ୍ଗେ ଯିବାକୁ ପ୍ରସ୍ତୁତ ହେଲେ । ରିକ୍ସା ବ୍ୟବସ୍ଥା କରିବାର ଉପାୟ ନଥିଲା । ସେ ହଠାତ୍ କହିଲେ ତାଙ୍କ ବାଡ଼ି ଭିତର ଦେଇ ଏକ ସିଧା ସଟକଟ୍ ରାସ୍ତା ଅଛି, ଚାଲିଯିବା । ତଥାପି ସେଭଳି ୮୨ ବର୍ଷ ବୁଢ଼ା ଚାଲିଚାଲି ଯିବ ଏ ଭରସା ନଥିଲା । କିନ୍ତୁ ତାଙ୍କର ଚାଲିଯିବା ପାଇଁ ଖୁବ୍ ଆଗ୍ରହ ବଢ଼ିଥିଲା । ଏତେ ବଡ଼ ଖରାଟାରେ ବୁଢ଼ା ଗାମୁଛା ଖଣ୍ଡେ ପିନ୍ଧି ଛୋଟ ଛତା ଓ ବାଡ଼ିଟା ଧରି ଆଗେ ଆଗେ ପଥପ୍ରଦର୍ଶକ ହୋଇ ଚାଲୁଥାନ୍ତି । ପଛେ ପଛେ ଗୋଲକବାବୁ ଓ ମୁଁ ଗଳି ବାଟରେ ଚାଲୁଥାଉଁ । ଚିନ୍ତାମଣି ବାବୁଙ୍କର ବୟସ ସର୍ବାଧିକ ହୋଇଥିଲେ ବି ଚାଲିରେ ତାଙ୍କର ଯୁବକ ସୁଲଭ ଉଦ୍ଦାମତା ବେଶ୍ ଉପଲବ୍ଧି କଲି । ବାଟସାରା ସେ କେବଳ ଫକୀରମୋହନଙ୍କ କଥା କହୁଥାନ୍ତି । ସେଥି ମଧ୍ୟରୁ କେତୋଟି କଥା ମନକୁ ଖୁବ୍ ଛୁଇଁ ପାରିଲା । ସେ କହିଲେ ଫକୀରମୋହନ ବିଭିନ୍ନ ରାଜ୍ୟରେ ଦେବାନୀ କାର୍ଯ୍ୟ ଶେଷ କରି ଗାଁରେ ଯେତେବେଳେ ଆସି ରହିଲେ ସେତେବେଳେ ଭଲରେ ମନ୍ଦରେ ନିଜ ଗାଁ ତଥା ପାଖ ଗାଁର ପ୍ରାୟ ଅଧିକାଂଶ ଲୋକଙ୍କ ଘରକୁ ସେ ଯାଉଥିଲେ ଏବଂ ସେମାନଙ୍କର ନାନା କଥା ବୁଝୁଥିଲେ । ଲୋକେ ମଧ୍ୟ ସୁବିଧା ଅସୁବିଧାରେ ତାଙ୍କର ପରାମର୍ଶ ଲୋଡୁଥିଲେ । ବାସ୍ତବିକ୍ ଏ କଥାଟି ଅକ୍ଷରେ ଅକ୍ଷରେ ସତ୍ୟ, କାରଣ ସେନାପତି ପ୍ରତ୍ୟକ୍ଷ ଭାବରେ ବିଭିନ୍ନ କ୍ଷେତ୍ରରେ ବହୁ ଲୋକଙ୍କ ବ୍ୟକ୍ତିଗତ ଓ ପାରିବାରିକ ଜୀବନ ସହିତ ଏପରି ଜଡ଼ିତ ଥିଲେ ଯେ, ତାଙ୍କ ଉପନ୍ୟାସ ଗୁଡ଼ିକରେ ପ୍ରାୟ ସେହି ଲୋକଚରିତ୍ରର ବହୁଳ ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଅନ୍ୟ ଏକ କଥା, ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର ଚମ୍ପା ଚରିତ୍ର ସେନାପତିଙ୍କ ଘରେ ଥିବା ଚାକରାଣୀ 'କେଁତକୀ' ଚରିତ୍ରର ପ୍ରତିଛବି ଏବଂ ଏଥିରେ

ବର୍ଣ୍ଣିତ ଗାଁର ସ୍ତ୍ରୀଲୋକମାନେ ଯେଉଁ ପୋଖରୀ ତୁଠରେ ବସି ଗପସପ କରିବା ପ୍ରସଙ୍ଗ ତାହା ବାଲେଶ୍ୱରସ୍ଥ ନଣ୍ଡା ଗୋସାଇଁ "ମଠ ପୋଖରୀ" ବୋଲି କହି ବାଟରେ ଗଲାବେଳେ ଆମକୁ ତାହା ଦେଖାଇଦେଲେ । ପିଲାଦିନେ ଫକୀରମୋହନଙ୍କ ଉପନ୍ୟାସ ପଢ଼ି ବନ୍ଧୁମେଳରେ ଏ ବିଷୟରେ ନାନା କଥା ଆଲୋଚନା କରୁଥିଲେ । ପୁଣି ଫକୀରମୋହନ ଯେଉଁ "ହିଗିଡ଼ି ଦାଣ୍ଡି" ଖେଳ ପିଲାମାନଙ୍କୁ ନେଇ ଖେଳାଉଥିଲେ, ସେଥିରେ ସେ ଥିଲେ ଜଣେ ନିୟମିତ ଖେଳାଳୀ । ପିଲାମାନେ ଦଳବାନ୍ଧି ତାଙ୍କ ଉଆସରେ ପହଞ୍ଚିଗଲେ ସେନାପତି ବୁଢ଼ା ଗୁମାସ୍ତା ଶ୍ରୀକଣ୍ଠ ପଟ୍ଟନାୟକଙ୍କୁ ଡାକି ବଗିଚାର ପାଚିଲାଫଳ ପିଲାଙ୍କୁ ଖାଇବାକୁ ଦେଉଥିଲେ । ଏପରିକି ସେ ପିଲାମାନଙ୍କ ସହିତ ଅନେକ ଥର ପାଚିଲା ପଣସ, ଅମୃତଭଣ୍ଡା ଓ ଅନ୍ୟାନ୍ୟ ଫଳ ଖାଇଥିବା କଥା ମଧ୍ୟ ଉଲ୍ଲେଖ କଲେ ।

ଏ କ୍ଷେତ୍ରରେ ଅବଶ୍ୟ କାହାରି ମନରେ ପ୍ରଶ୍ନ ଉଠିପାରେ

ଫକୀରମୋହନଙ୍କ ଛ.ମା.ଆ.ଗୁ. ଉପନ୍ୟାସ କଟକ ଅବସ୍ଥାନ କାଳର ରଚନା । ଅତଏବ ଫକୀରମୋହନ ଛ.ମା.ଆ.ଗୁ ଉପନ୍ୟାସର ପୋଖରୀତୁଠ ବର୍ଣ୍ଣନା ପ୍ରସଙ୍ଗ ମଠସାହି ଗ୍ରାମର ନଣ୍ଡା ଗୋସାଇଁ ମଠ ପୋଖରୀ ନହୋଇ ଓଡ଼ିଶାର ଅନ୍ୟ କୌଣସି ପୋଖରୀତୁଠକୁ ସେନାପତି ନିଜ ଉପନ୍ୟାସର ପ୍ରତିଛବି ରୂପେ ଗ୍ରହଣ କରି ଥାଇପାରନ୍ତି । ମାତ୍ର ଫକୀରମୋହନଙ୍କ ପିଲାଦିନର ଅତି ପରିଚିତ ଓ ବହୁ ପୁରୁଣା ନଣ୍ଡା ଗୋସାଇଁ ମଠର ପୋଖରୀ ତୁଠ ହୋଇ ନଥିବ ବୋଲି କିଛି କାରଣ ନାହିଁ । ଏହି ନଣ୍ଡା ଗୋସାଇଁଙ୍କ ମଠରେ ତାଙ୍କର ଅଧିକାଂଶ ସମୟ ଚାହାଳୀ ପଢ଼ାରେ ବିତିଥିବା ନିଜେ ଆତ୍ମଜୀବନୀରେ ସ୍ୱୀକାର କରିଛନ୍ତି । ଏମିତି ଅନେକ କଥା ଚିନ୍ତାମଣିବାବୁ ତାଙ୍କ ବନ୍ଧୁ ମେଳରେ ବୁଢ଼ାଙ୍କ ମୁହଁରୁ ବି ବେଳେବେଳେ ଶୁଣିଥିଲେ । କଥାବାର୍ତ୍ତା ମଧ୍ୟରେ ଆମେ ଶ୍ମଶାନରେ ଆସି ଏକାବେଳେ ପହଞ୍ଚିଗଲୁ ।

ଚିନ୍ତାମଣିବାବୁ ଫକୀରମୋହନଙ୍କ ଦାହ କରାଯାଇଥିବା ସ୍ଥାନର ଏକ ବୃତ୍ତାକାର ଆୟତନ ଦେଖାଇଦେଲେ । ତାଙ୍କ ପୂର୍ବ କହିବା ଅନୁଯାୟୀ ଆମକୁ ସେ ସ୍ଥାନର ନମୁନା ସବୁ ବୁଝାଇ ଦେଲେ । ସେତେବେଳେ ଛତୁଆ ଶ୍ମଶାନ, ପାର୍ଶ୍ୱସ୍ଥ ଚାଷଜମି ଓ ବିରାଟ ଗୋହିରୀରେ ପୂର୍ଣ୍ଣ ଥିଲା । ପୂର୍ବର ପଦ୍ମପୋଖରୀ ଆଉ ଆଜିର ପଦ୍ମପୋଖରୀ ମଧ୍ୟରେ ବହୁ ପ୍ରଭେଦ ସୃଷ୍ଟି ହେଲାଣି । ଫକୀରମୋହନଙ୍କ ଦାହସ୍ଥାନର ୧୮ ଫୁଟ

ଦୂରରେ ପୋଖରୀ ହୁଡ଼ା ଉପର ଦେଇ ମ୍ୟୁନ୍‌ସିପାଲଟି ନାଲିଗୋଡ଼ି ରାସ୍ତା ଦୂର ଗାଁକୁ ଚାଲିଯାଇଛି । ପଦ୍ମପୋଖରୀ ଦଳ ପରିଷ୍କାର ହୋଇ ତାହା ଲୋକମାନଙ୍କ ନିତ୍ୟ ବ୍ୟବହାରରେ ଲାଗୁଛି । ପଦ୍ମପୋଖରୀ ଉତ୍ତରପଟ ହୁଡ଼ାରେ ଏବେ ନୟନାକୁମାରୀ ହାଇସ୍କୁଲ ମଧ ହେଲାଣି । ପୂର୍ବ ଓ ପଶ୍ଚିମ ହୁଡ଼ାକୁ ଲାଗି ଶ୍ମଶାନରେ ବହୁ ଆଦିବାସୀଙ୍କ କୁଡ଼ିଆ ମୁଣ୍ଡଟେକି ଉଠିଲାଣି । ଅବଶ୍ୟ ଆଜି ସେ ସ୍ଥାନର ଅନେକ ପରିବର୍ତ୍ତନ ଘଟି ଯାଇଛି । ଗତ ୨୦୦୪ ମସିହାରେ ପ୍ରାକ୍ତନ ରାଜ୍ୟସଭା ସଦସ୍ୟ ତଥା ବିଶିଷ୍ଟ ଐତିହାସିକ ଡ. ମନ୍ମଥ ନାଥ ଦାସଙ୍କ ସାଂସଦ ପାଣ୍ଠିରୁ ପ୍ରଦତ୍ତ ଅର୍ଥରାଶିରେ ଫକୀରମୋହନ ସାହିତ୍ୟ ପରିଷଦ ଆନୁକୂଲ୍ୟରେ ଏକ ସୁଦୃଶ୍ୟ ସମାଧିପୀଠ ନିର୍ମିତ ହୋଇଛି ଏବଂ ଏହାର ନାମକରଣ ଲେଖାଯାଇଛି – 'ଶାନ୍ତିଘାଟ' ।

ଫକୀରମୋହନଙ୍କ ଦାହ ସ୍ଥାନର ପ୍ରାୟ ୧୪ ଫୁଟ ଛାଡ଼ି ଉତ୍ତର ପଶ୍ଚିମକୋଣ ଗୋଡ଼ି ରାସ୍ତାର ଅତି ନିକଟକୁ ପାଖାପାଖି ଦୁଇଟି ସମାଧି ରହିଛି । ପ୍ରଥମଟି ଭାଗବତ ପ୍ରସାଦ ( )ଙ୍କର ଏବଂ ଏହା ୧୩୨୨ ସାଲରେ ସ୍ଥାପିତ । ଦ୍ୱିତୀୟଟି ଲାଲ ମୋହନ ପାଣିଙ୍କର ଏବଂ ଏହା ୧୯୪୪ ସାଲରେ ସ୍ଥାପିତ । ଫଟୋଚିତ୍ର ନେବାବେଳେ ସ୍ଥାନ ଦର୍ଶାଉଥାନ୍ତି ବୃଦ୍ଧ ଚିନ୍ତାମଣି ଦାସ । ପାଖରେ ଛିଡ଼ା ହୋଇଥାନ୍ତି ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ବୃଦ୍ଧ ଭୈରବ ଚନ୍ଦ୍ର ମହାପାତ୍ର, ପ୍ରାବନ୍ଧିକ ଗୋଲକ ମହାପାତ୍ର ଓ ଅନ୍ୟମାନେ । ଫକୀରମୋହନଙ୍କ ମୃତ୍ୟୁପରେ ଶ୍ମଶାନରେ ତାଙ୍କ ଦାହ ସ୍ଥାନରେ ସ୍ମୃତିର ସମାଧି ନହେବାର କାରଣ ଉତ୍କଳର ପାଠକବର୍ଗ ସମସ୍ତେ ପ୍ରାୟ ଜାଣନ୍ତି । ପୁତ୍ର, ମୋହିନୀବାବୁ ବି ଜାଣି-ଶୁଣି ସେଠାରେ କୌଣସି ସ୍ମୃତି ସମାଧି କରି ନଥିବା ସ୍ୱାଭାବିକ । ତା'ଛଡ଼ା ଫକୀରମୋନହଙ୍କ ସାହିତ୍ୟାନୁରାଗୀ ବାଲେଶ୍ୱରସ୍ଥ କୌଣସି ସୁହୃଦ୍ କି ତାଙ୍କ ପରିବାରବର୍ଗ ଏଦିଗରେ ସମ୍ପୂର୍ଣ୍ଣ ଉଦାସୀନ ରହିଲେ । ଫକୀରମୋହନଙ୍କ ଗୁରୁତ୍ୱ ପରବର୍ତ୍ତୀ ଉତ୍କଳୀୟ ବଂଶଧର ଉପଲବ୍ଧି କରି ହୁଏତ ଦିନେ ବହୁ ଅତୀତରେ ମିଶି ଯାଇଥିବା ତାଙ୍କ ଶରୀର ଦାହ ସ୍ଥାନ ଶ୍ମଶାନ ମଧ୍ୟରେ ଖୋଜି ବୁଲିବେ, ଏକଥା ଦୂରଦୃଷ୍ଟିର ସହିତ ସେମାନେ କେବେ ଥରେ ବି ଭାବି ନଥିଲେ ।

ଫକୀରମୋହନଙ୍କ ଘରର ପୂର୍ବପଟ ପଡ଼ୋଶୀ ଶ୍ରୀ ବଟକୃଷ୍ଣ ଲେଙ୍କା ୧୯୭୩ରୁ ବାଲେଶ୍ୱର ମହାଫିସ ଖାନାର 'ଲିଥୋ ଅପରେଟର' କାର୍ଯ୍ୟରୁ ଅବସର ନେଇ ଚାଲବୁଲ କ୍ଷମତା ହରାଇ ଥିଲେ । ସେ ସାମାନ୍ୟ ମାନସିକ ସ୍ମୃତିଶକ୍ତି ହରାଇ

ବସିଥିଲେବି ବେଶ୍ କେତୋଟି କଥା ବର୍ଣ୍ଣନା କଲେ, ଶୁଣିଲୁ । ସେ କହିଲେ "ଫକୀରମୋହନଙ୍କ ମୃତ୍ୟୁ ବେଳକୁ ମୁଁ ସାବାଳକ । ତାଙ୍କ ଶବକୁ 'ଛତୁଆ' ଶ୍ମଶାନ ନିଆଗଲା ଏବଂ ଯେଉଁ ଖଟ୍‌ରେ ନିଆଗଲା ମୁଁ ଥିଲି ତା'ର ଜଣେ ବାହକ । ଫକୀରମୋହନଙ୍କ ଜୀବତାବସ୍ଥାରେ ମୁଁ ପ୍ରତିଦିନ ତାଙ୍କ ପାଖରେ ସକାଳବେଳା ଜଳଖିଆ ଖାଉଥିଲି । ସେ ମୋତେ ଖୁବ୍ ଆଦର କରୁଥିଲେ ଏବଂ ତାଙ୍କ ଅଧିନାୟକତ୍ୱରେ ଖେଳା ଯାଉଥିବା 'ହିଗଡ଼ି ଦାଣ୍ଡି' ଖେଳର ମୁଁ ଜଣେ ନିୟମିତ ଖେଳାଳୀ ଥିଲି ।" (୨)

ଫକୀରମୋହନଙ୍କ ନିସଙ୍ଗ ଅନ୍ତିମ ଜୀବନ ବହୁ ଦୁଃଖ କଷ୍ଟ ଓ ଅଶ୍ରୁପାତ ମଧ୍ୟରେ କଟିଥିଲା । ତାଙ୍କ ପାଇଁ ବଞ୍ଚିବା ଅତି ଦୁରୂହ ହୋଇ ଉଠୁଥିଲା । ସଂସାରପଥରୁ ମହାଯାତ୍ରାର ଯାତ୍ରୀ ପାଇଁ ବହୁ ଆଗରୁ କବି ମହା ନିମନ୍ତ୍ରଣ ପାଇଥିଲେ । ୧୯୧୩ ମସିହାରେ ବାଲେଶ୍ୱରର ରାଧାଚରଣ ଦାସଙ୍କ 'ସାମନ୍ତ ପ୍ରେସ୍'ରୁ ବାହାରୁଥିବା 'ପ୍ରଚାର' ପତ୍ରିକାରେ ପ୍ରକାଶିତ 'ମହାନିମନ୍ତ୍ରଣ' କବିତା ଏହାର ସ୍ପଷ୍ଟ ନମୁନା । ଏତେ ଶାରୀରିକପୀଡ଼ା ଓ ମାନସିକ ଅଶାନ୍ତି ମଧ୍ୟରେ ଥାଇ ବି ପ୍ରତିବେଶ ବନ୍ଧୁ ମେଳରେ ଆଉ କିଛିଦିନ ଏହି ଧରାଧାମରେ ବଞ୍ଚି ରହିବାକୁ ତାଙ୍କର ଯେପରି ପ୍ରବଳ ଇଚ୍ଛାଥିଲା । ତେଣୁ ସ୍ୱରଚିତ କବିତାରେ ସେ କହିଛନ୍ତି -

"ହୃଦୟ - କପାଟେ ହାତ ମାରି ଡାକ
କେ ତୁମ୍ଭେ ହେ କାହାଦୂତ ?
ମହାନିମନ୍ତ୍ରଣ ବେଗେ ବେଗେ ହୁଅ
ମହାଯାତ୍ରାକୁ ପ୍ରସ୍ତୁତ ।" (୧)

\+ + +

"ବଡ଼ ଇଛା ପ୍ରାଣେ ପ୍ରତିବାସୀ ଗଣେ
କିପରି ଯିବି ମୁଁ ଛାଡ଼ି ?
ନାହିଁ ନାହିଁ ନାହିଁ - ତୁମ୍ଭ ପଛେ ପଛେ
ସମସ୍ତେ ଦେବେ ଯେ ଧାଡ଼ି ।' (୪)

('ପ୍ରଚାର'- ୧ମ ସଂଖ୍ୟା ୧୯୧୩ ମସିହା । ମାର୍ଫତ - ସାମନ୍ତ ପ୍ରେସ୍, ବାଲେଶ୍ୱର)

ଫକୀରମୋହନଙ୍କ 'ଗ୍ରନ୍ଥାବଳୀ'ରେ ଉକ୍ତ କବିତାଟି ସ୍ଥାନ ପାଇନାହିଁ । ବହୁ ଆଗରୁ କବି ମହାଯାତ୍ରା ପାଇଁ ମହାନିମନ୍ତ୍ରଣ ପାଇଥିବା ଉପଲବ୍ଧି କରିଥିଲେ, ଯଦିଚ ଅସୁସ୍ଥ ଶରୀରରେ ହଠାତ୍ ସେ ଦିନେ ମହାପ୍ରସ୍ଥାନ ଘେନିବେ ଏକଥା କେହି ଭାବି ନଥିଲେ ।

ଉତ୍କଳର ସେହି ଅମର ସନ୍ତାନ, କୃତୀ ସାହିତ୍ୟରଥୀ, ବ୍ୟାସକବି ଫକୀରମୋହନ ସେନାପତିଙ୍କ ସ୍ମୃତିପୀଠ ଅତୀତର ବହୁ ସ୍ମୃତିକୁ ବହନ କରି ଭବିଷ୍ୟତ ବଂଶଧରଙ୍କ ପାଇଁ ଜ୍ୱଳନ୍ତ ଦୃଷ୍ଟାନ୍ତ ହୋଇ ରହିଛି ଓ ରହିଥିବ । ଅତଏବ ସେନାପତିଙ୍କ ଜନ୍ମପୀଠର ସ୍ମୃତି ସୁରକ୍ଷା ଏ ଜାତି ପାଇଁ ଯେତିକି ଆବଶ୍ୟକ, ତାଙ୍କର ସମାଧି ପୀଠର ସୁରକ୍ଷା ଏ ଜାତି ପାଇଁ ସେତିକି ଆବଶ୍ୟକ । ଫକୀରମୋହନ ସାହିତ୍ୟ ପରିଷଦ ୧୯୪୮ ମସିହାରୁ ସ୍ଥାପିତ ହୋଇ ବହୁ ବିଳମ୍ବରେ ଫକୀରମୋନହଙ୍କ ଦାହସ୍ଥାନ ଶ୍ମଶାନରେ ଏକ ସୁନ୍ଦର ସ୍ମୃତି ସମାଧି ନିର୍ମାଣ କରି ଏହି ଅମର ସାରସ୍ୱତ ସ୍ରଷ୍ଟାଙ୍କର ସ୍ମୃତିରକ୍ଷା ଦିଗରେ ଯତ୍ନବାନ ହୋଇ ଏକ ଜାତୀୟ ଦାୟିତ୍ୱ ତୁଲାଇଥିବାରୁ ଧନ୍ୟବାଦର ପାତ୍ର ।।

(ବି.ଦ୍ର - (୧) ଶ୍ରୀ ଚିନ୍ତାମଣି ଦାସଙ୍କ ଠାରୁ ସଂଗୃହୀତ ବିବରଣୀ - (ସାକ୍ଷାତ୍‌କାର ତା ୩.୬.୮୧ରିଖ)

(୨) ଶ୍ରୀ ବଟକୃଷ୍ଣ ଲେଙ୍କାଙ୍କଠାରୁ ସଂଗୃହୀତ ବିବରଣୀ - (ସାକ୍ଷାତ୍‌କାର - ତା ୬.୬.୮୧ରିଖ)





ଜନ୍ ବିମ୍ସ



ବ୍ୟାସ କବି ଫକୀରମୋହନ



ରାଜା ବୈକୁଣ୍ଠ ନାଥ ଦେ



ମହାରାଜା
ଶ୍ରୀ ରାମଚନ୍ଦ୍ର ଭଞ୍ଜଦେବ



ଚନ୍ଦ୍ରମୋହନ ମହାରଣା



ଉପେନ୍ଦ୍ର ନାରାୟଣ ଦଳସୁପ୍ତ



କବି ଗଙ୍ଗାଧର ମେହେର



କାନ୍ତକବି
ଲକ୍ଷ୍ମୀକାନ୍ତ ମହାପାତ୍ର



ପୂର୍ଣ୍ଣଚନ୍ଦ୍ର ଦାସ ଓ ଛାୟାମୟୀ ଦାସ



ବ୍ୟାସକବି ଫକୀରମୋହନଙ୍କ ସମାଧି ସ୍ମୃତି-ଶାନ୍ତି ଘାଟ



କବି ପତ୍ନୀ କୃଷ୍ଣ କୁମାରୀଙ୍କ ସମାଧି



ଉତ୍କଳ ସାହିତ୍ୟ ସମାଜ



ବାଲେଶ୍ୱର ବ୍ରାହ୍ମ ସମାଜ



ପଣ୍ଡିତ ଦାମୋଦର ମିଶ୍ର



## ଡ଼. ଅରବିନ୍ଦ ଗିରି (୧୯୫୪)

ଜନ୍ମ : ଭଦ୍ରକ ଜିଲ୍ଲା କିଶୋର ପ୍ରସାଦ ଗ୍ରାମ

ଶିକ୍ଷା : ଓଡ଼ିଆ, ସ୍ନାତକ, ଫକୀରମୋହନ କଲେଜ, ବାଲେଶ୍ୱର
ସ୍ନାତକୋତ୍ତର, ଓଡ଼ିଆ, ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

'ସାହିତ୍ୟିକ ଚନ୍ଦ୍ରମୋହନ ମହାରଣା' ଗବେଷଣା-ନିବନ୍ଧ ପାଇଁ ୧୯୮୫ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡି. ଡିଗ୍ରୀ ଲାଭ ।

ସଂପ୍ରତି ପ୍ରାଧ୍ୟାପକ ଭାବେ ସ୍ୱର୍ଣ୍ଣଚୂଡ଼ ମହାବିଦ୍ୟାଳୟ, ମିତ୍ରପୁର, ବାଲେଶ୍ୱରରେ କାର୍ଯ୍ୟରତ । ଏପର୍ଯ୍ୟନ୍ତ ତାଙ୍କର ଦୁଇଶହରୁ ଊର୍ଦ୍ଧ୍ୱ ଗବେଷଣାତ୍ମକ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । କେତେକ ଗଳ୍ପ ଓ କବିତା ମଧ୍ୟ ରଚନା କରିଛନ୍ତି । ସାରସ୍ୱତ ସାଧନାର ସ୍ୱୀକୃତିସ୍ୱରୂପ ଅନେକ ଅନୁଷ୍ଠାନ ଦ୍ୱାରା ସମ୍ମାନିତ । ଆକାଶବାଣୀ କଟକରେ ତାଙ୍କର ବହୁ ଆଲୋଚନା ପ୍ରଚାରିତ । ଲିଖିତ ଓ ସମ୍ପାଦିତ ପୁସ୍ତକାବଳୀ : ଚନ୍ଦ୍ରମୋହନ ମହାରଣା (ଜୀବନୀ), ଚନ୍ଦ୍ରମୋହନ ପରିକ୍ରମା, ଚନ୍ଦ୍ରମୋହନ ଗ୍ରନ୍ଥାବଳୀ, ଗୋଲକ ସ୍ମୃତି ସମ୍ଭାର, ଫକୀରମୋହନଙ୍କ ଦୁର୍ଲଭ ରଚନାବଳୀ, ହରିଶ୍ଚନ୍ଦ୍ର ବଡ଼ାଲ ଗ୍ରନ୍ଥାବଳୀ (ଯନ୍ତ୍ରସ୍ଥ), ଜଗନ୍ନାଥ ପଡ଼ିହାରୀ ଗ୍ରନ୍ଥାବଳୀ (ଯନ୍ତ୍ରସ୍ଥ), ରସରାଜ ବଟବିହାରୀ ଦାସ ଗ୍ରନ୍ଥାବଳୀ (ଯନ୍ତ୍ରସ୍ଥ) ଏବଂ ରାଜା ବୈକୁଣ୍ଠନାଥ ଦେ ବାହାଦୁର (ଯନ୍ତ୍ରସ୍ଥ) ।

